## ନବୀନ କୁମାର ପରିଡ଼ାଙ୍କ

# କଲେ ଯେତେ ଯୁଦ୍ଧର

## ଓ ଅନ୍ୟାନ୍ୟ ନାଟକ

ॐ

ଜୟଗୁରୁ

# କଲେ ଯେତେ ହୁନ୍ଦର

# ଓ

# ଅନ୍ୟାନ୍ୟ ନାଟକ


ନବୀନ କୁମାର ପରିଡ଼ା

ପୂର୍ବତନ ଅଧ୍ୟକ୍ଷ, ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ

ଭୁବନେଶ୍ୱର

# କଲେ ଯେତେ ହୁନ୍ଦର ଓ ଅନ୍ୟାନ୍ୟ ନାଟକ


| | |
|---|---|
| ଲେଖକ | ନବୀନ କୁମାର ପରିଡ଼ା |
| ପ୍ରଥମ ପ୍ରକାଶନ | ଡିସେମ୍ବର ୨୫, ୨୦୧୫, |
| ପ୍ରକାଶକ | ଅନ୍ନପୂର୍ଣ୍ଣା ପରିଡ଼ା<br>ବର୍ଣ୍ଣାଳୀ ପ୍ରକାଶନ,<br>ବି-୬/୧୦ ଇନ୍ଦିରା ହାଉସିଂ କଲୋନୀ<br>ଶିଶୁପାଳଗଡ଼, ଭୁବନେଶ୍ୱର-୭୫୧୦୦୨ |
| ପ୍ରଚ୍ଛଦ | ବିଭୁ ପ୍ରସୂନ ଦାସ |
| ମୁଦ୍ରଣ | ଦିବ୍ୟ ମୁଦ୍ରଣୀ<br>ଦିବ୍ୟବିହାର, ସାମନ୍ତରାପୁର, ଭୁବନେଶ୍ୱର |
| ମୂଲ୍ୟ | ₹ 180/- |


---

# KALE JETA HUNDAR O ANYANYA NATAK


| | |
|---|---|
| writer | : **Nabin Kumar Parida** |
| First Edition | : December 25, 2015 |
| Published by | : Annpurna Parida<br>Barnali Prakashana<br>B-6/10, Indira Housing Colony,<br>Sishupalagada, Bhubaneswar-2 |
| Pinted at | : Divya Mudrani, DivyaVihar,<br>Samantarapur, Bhubaneswar-2 |
| Cover Design | : Bibhu Prasuna Das |
| Price | : ₹ 180/- |

# ସୂଚୀପତ୍ର

# ଇଚ୍ଛାପତ୍ର, ଇଚ୍ଛାମତୀର

## ଚରିତ୍ରମାନେ

| | | |
|---|---|---|
| ନୀଳଲୋହିତ | – | ଭକ୍ତିରଞ୍ଜନ ଦାସ |
| ସାଗର | – | ଦ୍ୟୁତିକୃଷ୍ଣ ପଣ୍ଡା |
| ସମୀର | – | ପ୍ରଜ୍ଞାରଞ୍ଜନ ଖଟୁଆ |
| ଆକାଶ | – | ବାପୁ |
| ପ୍ରଫେସର | – | ନବୀନ କୁମାର ପରିଡ଼ା |
| ବୌଦ୍ଧଭିକ୍ଷୁ | – | ୧.ଭକ୍ତିରଞ୍ଜନ ଦାସ |
| | | ୨.ବିଦ୍ୟାଧର |
| | | ୩.ସ୍ୱରୂପ ରଞ୍ଜନ |
| | | ୪.ଚିରଞ୍ଜୀବ ବିଶ୍ୱାଳ |
| ଇଚ୍ଛାମତୀ | – | ଅଞ୍ଜଳୀ ପଣ୍ଡା |
| ଉର୍ମିଳା | – | ଅର୍ପିତା ନନ୍ଦ |
| ନିଲିମା | – | ସୁନନ୍ଦା ପରିଡ଼ା |

| | | |
|---|---|---|
| ସଂଗୀତ | – | ଅଭିଷେକ |
| ମଞ୍ଚସଜ୍ଜା | – | ପ୍ରଜ୍ଞାରଞ୍ଜନ ଖଟୁଆ, ପ୍ରଜ୍ଞାଦତ୍ତ ସାହୁ |
| ଆଲୋକ | – | ଶୁଭ୍ରାଂଶୁ ଶେଖର ପରିଡ଼ା |
| ପୋଷାକ | – | ନବୀନ ବର୍ଣ୍ଣାଳୀ |
| ପ୍ରଯୋଜନା | – | ନବୀନ ବର୍ଣ୍ଣାଳୀ ଥିଏଟର, ଭୁବନେଶ୍ୱର |
| | | ୨୦୧୪, ନଭେମ୍ବର, ରବୀନ୍ଦ୍ର ମଣ୍ଡପ |
| ନିର୍ଦ୍ଦେଶନା | – | ନବୀନ କୁମାର ପରିଡ଼ା |

# ଇଚ୍ଛାପତ୍ର, ଇଚ୍ଛାମତୀର

## ପ୍ରଥମ ଦୃଶ୍ୟ

**(ପରଦା ଉଠିଲାବେଳକୁ ବର୍ଷା, ଘଡ଼ଘଡ଼ି, ବିଜୁଳି ଭିତରେ ସନ୍ଧ୍ୟା ନଇଁ ଆସିଲା । ଆକାଶରେ ଦୃଷ୍ଟିଗୋଚର ହେଲା ଅଷ୍ଟମୀର ଜହ୍ନ ।)**

| | |
|---|---|
| ଇଚ୍ଛା | ନିଦାଘର ବର୍ଷାର ଏଇ ଟୋପାଟୋପା ବାରିଧାରା ଏଦେହକୁ ଯେତିକି ରୋମାଞ୍ଚିତ କରେ ତା'ଠାରୁ ମୋର ମନକୁ ବେଶୀ ଉଲ୍ଲସିତ କରେ । ପ୍ରଥମ ବର୍ଷାରେ ଭିଜିଯାଉଥିବା ଭିଜାମାଟିର ବାସ୍ନା । ଆଃ... କି ରୋମାଞ୍ଚକର, କି ମନମୁଗ୍ଧକର ସେ ସ୍ମୃତି ସବୁ । ସତେ ଯେମିତି ଅତୀତ ଆସି ମତୁଆଲା କରେ ବର୍ତ୍ତମାନକୁ । ହଠାତ୍ କୈଶୋର, ଯୌବନ ଆଖି ଆଗରେ ଉଦ୍‌ଭାସିତ ହୋଇ ବର୍ତ୍ତମାନର ମନକୁ ଚିରହରିତ ଅରଣ୍ୟରେ ରୂପାନ୍ତରିତ କରିଦିଏ । ଅତୀତର ହଜିଲାଦିନ ଗୁଡ଼ାକ ଓଜାଡ଼ି ହୋଇପଡ଼େ ସ୍ମୃତିର ଝରକା ଫିଟେଇ ମୋ ମନର ଅଗଣାର । ଆଜି ସନ୍ଧ୍ୟାର ଅଦିନିଆ ବର୍ଷା ମୋତେ ସେମିତି ପାଗଳ କରିଛି, ମତୁଆଲା କରିଛି । |
| ନୀଳ | ତୁମେ ପୁଣି ଏରୁଣ୍ଡି ଡେଇଁ ଚାଲିଆସିଲ ପଦାକୁ । କାହାକୁ କିଛି ନ କହି । |
| ଇଚ୍ଛା | କାହାକୁ କିଛି ନକହି, ଏ ଅଦିନିଆ ବର୍ଷାଟା ଏମିତି ଅଚାନକ ଅସରାଏ, ଅସରାଏ ବର୍ଷା ବର୍ଷି ଦେଇଯାଏ କାହିଁକି କେଜାଣି ? |
| ନୀଳ | କାଳବୈଶାଖୀ ଏମିତି ଅସରାଏ ଅସରାଏ ଅଦିନିଆ ବର୍ଷା ମଝିରେ ମଝିରେ ଝାଡ଼ିଦେଇଯାଏ । |
| ଇଚ୍ଛା | ଯାହାକୁ ଦେଖି ସହି ହୁଏନି, କି ରହିହୁଏନି । |
| ନୀଳ | ମାନେ– |
| ଇଚ୍ଛା | ଏରୁଣ୍ଡି ଡେଇଁବାକୁ ସେ ମୋତେ ବାଧ କରାଏ । ଯୌବନକୁ ଚଞ୍ଚଳ କରାଏ, ଉଚ୍ଛନ୍ନ କରାଏ । |
| ନୀଳ | ବର୍ଷା ଛାଡ଼ି ଗଲାଣି ଏଥର ଫେରିଚାଲ । |
| ଇଚ୍ଛା | ବର୍ଷା ଛାଡ଼ି ଗଲାଣି ସତ ହେଲେ ମୋର ଭିଜିବାଟା ତ ଏବେବି ସରିନି । |
| ନୀଳ | କାହିଁକି ? |
| ଇଚ୍ଛା | ଏ ମନ ପରା ଭରିନି । ମାଟିର ଗନ୍ଧ ବି ସରିନି । ଦେହର ଉଦ୍ଦାମତା ମରିନି । |
| ନୀଳ | ମନ ପରା ସୀମାହୀନ ସାଗର ଭଳି । ନଦୀ ସେଥିରେ ଯେତେ ପାଣି ଢ଼ାଳିଲେ ବି ତାହା ପରିପୂର୍ଣ୍ଣ ହୁଏନା ଏକଥା ତ ତୁମକୁ ଅଜଣା ନୁହେଁ ? |
| ଇଚ୍ଛା | ଭିଜାମାଟିର ଏଇ ବାସ୍ନାକୁ ଆଜି ଝରାଶେଫାଳୀ ଭଳି ମୋ ଆଞ୍ଜୁଳାରେ ଗୋଟାଇ ନେବାକୁ ଚାହେଁ । |
| ନୀଳ | ତୁମେ କ'ଣ ଏବେବି ଅତୃପ୍ତ ? |
| ଇଚ୍ଛା | ମାଟିର ଏଇ ମହକ ପାଖରେ ସ୍ୱର୍ଗ ସୁଖର ଆନନ୍ଦ ବି ଫିକା ପଡ଼ିଯାଏ । ଜୀବନର ଅସୁମାରୀ ଇଚ୍ଛା ଆଉ ତୃପ୍ତି ବି ବନ୍ଧାପଡ଼ିଯାଏ । |
| ନୀଳ | ଅତୀତ କେବେବି ଫେରେନା । ଏ ଜନ୍ମରେ ନୁହେଁ । |
| ଇଚ୍ଛା | ଭବିଷ୍ୟତ ତ ଆସିବ, ଏଇ ବର୍ତ୍ତମାନର ବାଟ ଦେଇ । ତା'ରି ପାଇଁ ମୋର ଏ ପ୍ରତୀକ୍ଷା । |
| ନୀଳ | କାହିଁକି ପ୍ରତୀକ୍ଷା ? କାହାକୁ ପ୍ରତୀକ୍ଷା ? ମୁଁ ପରା ତୁମ ଅତୀତ, ବର୍ତ୍ତମାନ ଆଉ ଭବିଷ୍ୟତ । ମୁଁ ତ ଏବେ ତୁମ ସାମ୍ନାରେ । |

ଇଚ୍ଛା ମୋର ଅତୀତ ତ ମୋ ସାମ୍ନାକୁ ବାରମ୍ବାର ଆସେ, ଭିଜାମାଟିର ଗନ୍ଧରେ, କାଗଜ ଡଙ୍ଗାର ଧୀର ମନ୍ଥର ଗତିରେ, ପ୍ରଜାପତିର ଟିକି ଡେଣାରେ, ଅଷ୍ଟମୀର ଜହ୍ନରେ ଏମିତି କେତେକେତେ ଲଗ୍ନରେ । କିନ୍ତୁ ମୋ ପ୍ରତୀକ୍ଷା ସବୁ କେବଳ ଭବିଷ୍ୟତକୁ ନିରେଖି ଦେଖିବାରେ, ମୋ ସ୍ୱପ୍ନକୁ କଳ୍ପନାର ଡେଣାମେଲି ଛୁଇଁଯିବାରେ ।

ନୀଳ ଭବିଷ୍ୟତ ଆଉ ମୃତ୍ୟୁକୁ ଖାଲି ଭାବିହୁଏ କଳ୍ପନାରେ କିନ୍ତୁ କେହି ଛୁଇଁପାରେ ନା କି ଦେଖିପାରେନା ?

ଇଚ୍ଛା ମିଛକଥା-ଯୁଇର ନିଆଁକୁ ଛୁଇତ ଜହ୍ନନିଏ କୁଆଁକୁଆଁ ଡାକ, ମାଟିର ସମାଧି ଚିରି ଆକାଶକୁ ଚାହିଁ ସ୍ୱପ୍ନ ତ ଦେଖେ ପୁଣି କଅଁଳିଆ ଘାସ ଦେଖେ ତା'ର ଭବିଷ୍ୟତ ।

ନୀଳ ତୁମ ସହିତ ଯୁକ୍ତି ନିରର୍ଥକ । ସଞ୍ଜ ଗଡ଼ିଗଲାଣି ଫେରିଚାଲ ।

ଇଚ୍ଛା ଆକାଶର ଏଇ କଅଁଳିଆ ଜହ୍ନକୁ ଦେଖିଲ୍ଲ । ସେ କେମିତି ଆମ କଥା ଶୁଣି ଲାଜରେ ହସୁଛି ।

ନୀଳ ତୁମେ ପାଗଳ ହୋଇଯାଇଛ ।

ଇଚ୍ଛା ମୁଁ ଯାହାକୁ ଖୋଜି ଖୋଜି ପାଗଳ ହେବାକୁ ଚାହେଁ ତୁମେ ତାକୁ ହଜେଇ ଦେବା ପାଇଁ ପାଗଳ ହୋଇଯାଅ । କେହି କାହାକୁ କମ୍ ତ ନୁହେଁ ।

ନୀଳ ମୋ ପାଇଁ କାମିନୀ କାଞ୍ଚନ ମୂଲ୍ୟହୀନ ।

ଇଚ୍ଛା ମୋ ପାଇଁ ଏଇ ମୁଠା ମୁଠା ମାଟି ଆଉ ତା'ର ଭୁରୁଭୁରୁ ବାସ୍ନା, କାମନୀ କାଞ୍ଚନଠାରୁ ଆହୁରି ମୂଲ୍ୟବାନ୍ ।

ନୀଳ ତୁମେ ବାଚାଳ ।

ଇଚ୍ଛା ଅଥଚ ଚଳଚଞ୍ଚଳ । ଶିଶୁସୁଲଭ ବାଚାଳତା ମୁଁ ଚାହେଁ । ତୁମେ ପଥର ଭଳି ନିର୍ବାକ, ଜ୍ଞାନ ଭଳି କଠୋର, ଆଉ ନ୍ୟାୟ ଭଳି ନିଷ୍ଠୁର, ତୁମର ହୃଦୟ ନାହିଁ । ମନର ଆବେଗ ସବୁ ଜ୍ଞାନର ନିଆଁରେ ପୋଡ଼ି ପାଉଁଶ ହୋଇଯାଇଛି ତୁମର । ସେ ପୋଡ଼ା ତିଅଣର ସ୍ୱାଦ ବା କ'ଣ ?

ନୀଳ ସେଇ ରାସ୍ତାରେ ନିର୍ବାଣ ଆସେ ।

ଇଚ୍ଛା ଆଉ ଭବିଷ୍ୟତର ସବୁପଥ ରୁଦ୍ଧ କରିଦେଇ ନିଜେ ଆବଦ୍ଧ ହୋଇଯାଏ । ତା'ପରେ ଶୂନ୍ୟ, ସବୁ ଶୂନ୍ୟ, ମହାଶୂନ୍ୟ ।

ନୀଳ ଶୂନ୍ୟ ଭଳି ମଣ୍ଡଳାକାର କିନ୍ତୁ ଶୂନ୍ୟ ନୁହେଁ ବରଂ ସେ ପୂର୍ଣ୍ଣ ପରିପୂର୍ଣ୍ଣ, ଜ୍ୟୋତିର୍ମୟ ପରଂବ୍ରହ୍ମ । ଯାହାର ଆଦି ନାହିଁ କି ଅନ୍ତ ନାହିଁ । ତା'ର ଉଜ୍ଜ୍ୱଳତା ଅଛି ଯାହା ଜ୍ୱଳନ ଦିଏନା କିନ୍ତୁ ପ୍ରଜ୍ୱଳିତ କରାଏ । ସେ ଆଲୋକମୟ ଅଥଚ ଉତ୍ତାପ ଦିଏନା, ଉତ୍ତେଜନା ଦିଏନା ବରଂ ପ୍ରଶାନ୍ତି ଆଣେ ।

ଇଚ୍ଛା ଯାହାର ପ୍ରବେଶ ପଥ ଅଛି କିନ୍ତୁ ପ୍ରସ୍ଥାନର ବାଟ ସଭିଙ୍କୁ ଦେଖାଯାଏ ନାହିଁ । ସେ ସତ୍ତାରେ ପ୍ରବେଶ କଲେ ଆତ୍ମସତ୍ତା ବିଲୁପ୍ତ ହୁଏ । ଆତ୍ମ କର୍ତ୍ତୃତ୍ୱର ପରିସମାପ୍ତି ହୁଏ । ସେ ନିଜେ ମହାଶୂନ୍ୟ ତେଣୁ ସମସ୍ତ ସତ୍ତାକୁ ସେ ଶୂନ୍ୟ କରିଦିଏ । ତା'ପରେ ଆରମ୍ଭ ହୁଏ ପୁଣି ଏକ ପ୍ରତୀକ୍ଷା । ପୁଣି ଏକ ମହାପ୍ରତୀକ୍ଷା, ପ୍ରଳୟକୁ । ଏଠି କିନ୍ତୁ ମୃତ୍ୟୁ ଆସେ କୁଆଁ କୁଆଁ ଡାକର ସ୍ୱପ୍ନ ଆଉ ସମ୍ଭାବନା ନେଇ ରୂପରୁ ରୂପାନ୍ତର ହୁଏ । ଭାଷାରୁ ଭାଷାନ୍ତର ବି' ଘଟିପାରେ । ଭାବ କିନ୍ତୁ ଜୀଇଁଥାଏ ପାଉଁଶ ତଳର ନିଆଁ ଭଳି, ଏଠି, ସେଠି, ସବୁଠି ।

ନୀଳ ତୁମେ ଭାରି ଜିଦ୍‌ଖୋର ଅଥଚ ମୁଁ...

ଇଚ୍ଛା ଚାଲୁଣୀ ଯେବେ ଛୁଞ୍ଚିକୁ କହେ...(ହସିଲା) ଚାଲ ଯିବା ସେମାନେ ଆସିଗଲେଣି ।

ନୀଳ ସେମାନେ କିଏ ?

ଇଚ୍ଛା ମୋର ଭବିଷ୍ୟତ । ହୁଏତ ତୁମର ପ୍ରତିଦ୍ୱନ୍ଦ୍ୱୀ (ହସିଛି) ଚାଲ ଚାଲ...(ଦୂରରେ ଏକ କୁଡ଼ିଆ । ଭିନ୍ନ ଦିଗରେ ଏକ ଗଛ ।)

| | |
|---|---|
| ସାଗର | : (ପ୍ରବେଶ କଲା) ଆହା... କି ସୁନ୍ଦର ଏ ଦୃଶ୍ୟ । ଆମ ଗାଁ ନଈପଠାର ସଞ୍ଜଠାରୁ ଇଏ ଆହୁରି ସୁନ୍ଦର ଦିଶୁଛି । ନିଜ ଗାଁଠାରୁ ଶହଶହ ମାଇଲ ଦୂରରେ ପ୍ରକୃତି କେତେ ଆପଣାର ଲାଗୁଛି । ଏବେ ଭାବୁଛି ଏଇଠି ଆମ ବସ୍‌ଟା ଖରାପ ହୋଇ ଭାରି ଭଲ ହେଲା । ଏ ଦୃଶ୍ୟ ସବୁକୁ ଆଖିପୁରାଇ ଦେଖିବାର ସୁଯୋଗ ତ ଟିକିଏ ମିଳିଲା । ବସ୍‌ରୁ ଓହ୍ଲେଇ ଏ ଆଡ଼କୁ ଆସିଲାବେଳେ ମୋ ସାଂଗରେ ଯଦି ଉର୍ମିଳାକୁ ଡାକି ଆଣିଥାନ୍ତି ତା'ହେଲେ ଏଇଠି ବସି ଦୁହେଁ କେତେ ଗପସପ ହୋଇଥାନ୍ତୁ । ଏକ୍ସକରସନ୍‌ର ମଜା ଉଠି ଯାଇଥାନ୍ତା । ଆଉ ଦୁଇମାସ ପରେ ଆମ ଛାତ୍ର ଜୀବନ ସରିଯିବ । ତା'ପରେ ଆରମ୍ଭ ହେବ ଆମ କର୍ମମୟ ଜୀବନ । ସେତେବେଳେ ଉର୍ମିଳା କ'ଣ ମୋ ହାତଧରି ଆଗକୁ ଚାଲିବାର ସିଦ୍ଧାନ୍ତ ନେଇପାରିବ ? ସେ ବିଷୟରେ ଆଜି ତାକୁ ପଚାରି ଦେଇଥିଲେ ଭଲ ହୋଇଥାନ୍ତା । କିନ୍ତୁ ଉର୍ମିଳା ତ ଏବେ ମୋ ପାଖରେ ନାହିଁ । ତାକୁ ବରଂ ଫୋନ୍ କରି ଏଇଠିକି ଡକେଇ ଦେଲେ ଭଲ ହେବ । (ଟେଲିଫୋନ ଖୋଜିଲା, ପାଇଲା ନାହିଁ) ଫୋନ୍‌ଟା ବୋଧହୁଏ ବସ୍ ଭିତରେ ଛାଡ଼ିଦେଇ ଆସିଲି । (ଦୂରରୁ ଉର୍ମିଳାର ହସ ଶୁଭିଲା ।) |
| ଉର୍ମିଳା | (ହସିଲା) |
| ସାଗର | କିଏ ସେଠି ? କିଏ ଏମିତି ହସୁଛି ? |
| ଉର୍ମିଳା | ଡରିଗଲ ନୁହେଁ ? ଏଇନେ ତ ମୋତେ ଖୋଜୁଥିଲ ଅଥଚ ଏଇନେ ପୁଣି ଚିହ୍ନିପାରୁନ ? ଚିହ୍ନିବ କେମିତି ? ପ୍ରକୃତି ପରା ତୁମ ମନକୁ ହଜେଇ ଦେଇଛି । |
| ସାଗର | କିଏ ଉର୍ମିଳା ! ଏଇ ଝାପ୍‌ସା ମୁହଁ ଅନ୍ଧାରରେ ତୁମକୁ ମୁଁ ଚିହ୍ନିପାରିଲି ନାହିଁ । ଆସ ଆସ ପାଖକୁ ଆସ । |
| ଉର୍ମିଳା | ଅନ୍ଧାର କାହିଁ ? ଏଇ ତୋଫା ଜହ୍ନ ଆଲୁଅରେ ବି ତୁମେ ମୋତେ କ'ଣ ସତରେ ଚିହ୍ନିପାରିଲ ନାହିଁ, ନା ମିଛ କହୁଛ ? |
| ସାଗର | ସତ କଥା ହେଲା, ପ୍ରକୃତରେ ମୁଁ ଟିକିଏ ଅନ୍ୟମନସ୍କ ହୋଇପଡ଼ିଥିଲି । ତୁମେ ଏହା ଭିତରେ କେତେବେଳେ ଏଠାକୁ ଆସିଗଲଣି । ଅଥଚ ମୁଁ ମନେମନେ ତୁମରି କଥା ହିଁ ଭାବୁଛି । |
| ଉର୍ମିଳା | ସତେନା କ'ଣ ? ଦେଖ ତୁମେ ଭାବୁ ଭାବୁ ମୁଁ ଆସି ହାଜର । ସେଇଥିପାଇଁ ସାଂଗମାନେ ପରା ମୋତେ ଚିଡ଼େଇ ଚିଡ଼େଇ କହନ୍ତି... |
| ସାଗର | ସାଗର ଆଉ ଉର୍ମିଳା... |
| ଉର୍ମିଳା | ମଜନୁ ସାଂଗେ ଲୈଲା...(ଦୁହେଁ ହସିଲେ) |
| ସାଗର | ଏ କଥା ଆଉ କେତେଥର ମୋତେ କହିବ ? |
| ଉର୍ମିଳା | ଥରେ ନୁହଁ କି ଦି'ଥର ନୁହେଁ, ଆହୁରି ହଜାରେ ଥର କହିବି, ଲକ୍ଷେଥର କହିବି । କିଏ ମୋର କ'ଣ କରିବ ଦେଖିବି ? |
| ସାଗର | ଠିକ୍‌ଠିକ୍, ତୁମର ଯେତେଥର ଇଚ୍ଛା କୁହ । ମୁଁ ତୁମ ସାଂଗରେ ଅଛି । ଆଚ୍ଛା ଉର୍ମି କହିଲ ଦେଖି, ମୁଁ ଏ ଆଡ଼େ ବୁଲି ଆସୁଛି ବୋଲି ତୁମେ ଜାଣିଲ କେମିତି ? |
| ଉର୍ମିଳା | ତୁମ ମନ କଥା ମୋର ଆଉ ଜାଣିବାକୁ କ'ଣ ବାକି ଅଛି ? ପରୀକ୍ଷା କରିବାକୁ ଚାହିଁବ ଯଦି... ମୁଁ ଏଇନେ କହିଦେଇପାରିବି ଯେ ତୁମେ ଏଠି ଆସି କ'ଣ ସବୁ ଭାବୁଥିଲ । |
| ସାଗର | ସତେ ? କହିଲ ଦେଖି କୁହ । |
| ଉର୍ମିଳା | ତୁମେ ଭାବୁଥିଲ...ଏଇ ଆକାଶ, ଏଇ ଜହ୍ନ, ଆଉ ଏଇ ବର୍ଷା ପରର ଶୀତୁଆ ସୁଲୁସୁଲୁ ପବନ ସାଂଗକୁ ଭିଜାମାଟିର ଭୁରୁଭୁରୁ ବାସ୍ନା...ଆଃ... ମୋ ପାଖରେ ଉର୍ମିଳା ଥାଆନ୍ତା କି ? ମନଭରି ଗପସପ ହୁଅନ୍ତେ । ଆଗାମୀ ଦିନର ସ୍ୱପ୍ନ ସବୁ ଏଇ ଲାଜୁଆ ଜହ୍ନକୁ ସାକ୍ଷୀରଖି ଆକାଶ ଛାତିରେ |

ଲେଖିଦିଅନ୍ତେ । ଏଇଆ ନା ?

ସାଗର — ବାଃ ! ହଁ ଠିକ୍ ସେଇଆ ତ ।

ଊର୍ମିଳା — ଜୀବନର ସ୍ୱପ୍ନ ସବୁ ଦେଖିବାକୁ ରାତି ଆହୁରି ଅନେକ ବାକି ଅଛି । ଏବେ ଆସ ଆଜି ସନ୍ଧ୍ୟାର ପ୍ରକୃତିକୁ ଏକାନ୍ତ ଭାବେ ଉପଭୋଗ କରିବା । ଦେଖୁଛ ଆକାଶ କେମିତି ତୁହାକୁ ତୁହା ରଙ୍ଗ ବଦଳାଇ ଚାଲିଛି ?

ସାଗର — ପ୍ରକୃତି ତ ସବୁବେଳେ ଏମିତି ରଙ୍ଗ ବଦଳାଏ । କେତେବେଳେ ବର୍ଷାର ରିମ୍‌ଝିମ୍ ନୃତ୍ୟରେ ତ କେତେବେଳେ ନିଦାଘ ରାତିର ଝିଁ ଝିଁ ଝିଙ୍କାରି ଡାକରେ...

ଊର୍ମିଳା — ପୁଣି କେତେବେଳେ ବସନ୍ତରେ କୋଇଲିର କୁହୁକୁହୁ ଡାକରେ ତ ଆଉ କେବେ ଫଗୁଣର ଫଗୁ ଦୋଳିରେ ଝୁଲିଝୁଲି ଆମକୁ ସେ ଡାକେ । ନିଜେ ମଜ୍ଜିଯାଏ, ଆମକୁ ବି' ମଜେଇ ଦିଏ ତା' ସାଂଗରେ ।

ସାଗର — ସେମିତି ଆଜି ସନ୍ଧ୍ୟାର ବର୍ଷା, ସମସ୍ତଙ୍କୁ ଭିଜେଇ ଦେଇଛି, ଆକାଶ, ପୃଥିବୀ, ମୋତେ ଆଉ ତୁମର ଏ କବରୀକୁ ।

ଊର୍ମିଳା — ହେଲେ ଏ ବର୍ଷା କିନ୍ତୁ ଭିଜେଇ ପାରିନି ମୋ ମନକୁ ।

ସାଗର — କାହିଁକି ?

ଊର୍ମିଳା — ଏଠି ଅନେକ ଜିଜ୍ଞାସା, ଅନେକ ଯନ୍ତ୍ରଣା, ଅନେକ ତାତି । ବର୍ଷା କ'ଣ ତାକୁ କେବେ ଭିଜେଇ ଦେଇପାରିବ ?

ସାଗର — ଊର୍ମି ! ତୁମେ ଏ କ'ଣ କହୁଛ ? ମୁଁ କିଛି ବୁଝିପାରୁନି । ମୁଁ ପରା ତୁମ ପାଖେ ପାଖେ ଅଛି । ଏକାନ୍ତଭାବେ ତୁମ ଶରୀରକୁ ଛୁଇଁ ।

ଊର୍ମିଳା — ସେଇ ତ ମୋ ଯନ୍ତ୍ରଣାର କାରଣ । ତୁମେ ଅଛ ଅଥଚ ନଥିଲା ପରି ।

ସାଗର — ମାନେ ।

ଊର୍ମିଳା — ସବୁବେଳେ ତୃଷ୍ଣା କୂଅ ନିକଟକୁ ଧାଏଁ । ଆଜି କିନ୍ତୁ କୂଅ ଆସିଛି ତୃଷ୍ଣା ନିକଟକୁ । ଅଥଚ ତୃଷ୍ଣା...ଖାଲି ଆଁଟା କରି ଅନେଇ ରହିଛି ।

ସାଗର — ଖୋଲି କୁହ । କ'ଣ କହିବାକୁ ଚାହଁ ।

ଊର୍ମିଳା — ତୁମର କ'ଣ କିଛି ମନେପଡୁନି ସାଗର ? ଏମିତି ଏକ ସନ୍ଧ୍ୟା, ବର୍ଷା ଆଉ ଜହ୍ନ ?

ସାଗର — କାହିଁ ନା' ତ ? କେବେ କେଉଁଠି ?

ଊର୍ମିଳା — ସତେ ନା କ'ଣ ? ଅତୀତକୁ ଟିକିଏ ଫେରିଚାହଁ ।

ସାଗର — ନା, ମନେପଡୁନି । ତୁମେ ଟିକିଏ ମନେପକେଇ ଦିଅନା ?

ଊର୍ମିଳା — ଆମ ପ୍ରଥମ ପ୍ରେମର ପ୍ରଥମ ଚାହାଁଣୀ ।

ସାଗର — ଅହୋ, ମନେପଡ଼ିଲା କିନ୍ତୁ ସେତେବେଳେ ସେଠି ନଥିଲା ପ୍ରକୃତି, ନଥିଲା ନିର୍ଜନତା । ରାତି, ଜହ୍ନ, ବର୍ଷା କେହି ବି' ନଥିଲେ । ଆମେ ସେଦିନ ଦୁହେଁ ଦୁହିଁଙ୍କୁ ଭେଟିଥିଲୁ ଓଡ଼ିଆ କ୍ଲାସ୍‌ର ଶ୍ରେଣୀ କୋଠରୀ ଭିତରେ ।

ଊର୍ମିଳା — ଠିକ୍ ମନେପକେଇଛ । ସେଦିନ ଆମେ ଦୁହେଁ ଦୁହିଁଙ୍କୁ ଦେଖିଥିଲୁ ।

ସାଗର — କିନ୍ତୁ ତା' ପୂର୍ବରୁ ଆମେ ତ ଏକବର୍ଷ ଧରି କ୍ଲାସ୍‌ମେଟ୍ ଭାବେ, ବଂଧୁ ଭାବେ ପରସ୍ପରକୁ ଅନେକଥର ଭେଟିଥିଲୁ ।

ଊର୍ମିଳା — ଭେଟିଥିଲୁ କିନ୍ତୁ ଚିହ୍ନି ନଥିଲୁ । ସେଦିନ ଆମର ଏକ ନୂତନ ପରିଚୟ ହୋଇଥିଲା । ଆଖିରେ ଆଖିରେ ।

ସାଗର — ତା' ଆଗରୁ ଆମେ ଅନେକଥର କଥା ହୋଇଥିଲେ ।

ଉର୍ମିଳା ସେଦିନ ଆମେ ପ୍ରଥମ କଥା ହୋଇଥିଲୁ, ହାତର ଛୁଆଁରେ, ମନର ଭାଷାରେ ।
ସାଗର ସେଦିନ ନାଟକର କ୍ଲାସ୍ ଥିଲା ।
ଉର୍ମିଳା ସାର୍ ପଢ଼ାଉଥିଲେ ଓଡ଼ିଆ ନାଟକ ।
ସାଗର ତଟ ନିରଞ୍ଜନା ।
ଉର୍ମିଳା ତୁମେ ହୋଇଥିଲ ନୀଳ ଲୋହିତ ।
ସାଗର ଆଉ ତୁମେ ଇଚ୍ଛାମତୀ ।
ଉର୍ମିଳା ସେଦିନ ତୁମର ସେଇ ସ୍ପର୍ଶରେ ମୋ ଶରୀର ଘର୍ମାକ୍ତ ହୋଇଉଠିଥିଲା । ଯୌବନରେ ପ୍ରଥମ ବସନ୍ତର ସ୍ପର୍ଶ ପରି ମନ ମୋର ରୋମାଞ୍ଚିତ ହୋଇଉଠିଥିଲା ।
ସାଗର ଆଜି କିନ୍ତୁ ତୁମର ଏଇ ବର୍ଷାସିକ୍ତ କବରୀର ଗନ୍ଧ ମୋତେ ରୋମାଞ୍ଚିତ କରୁଛି ।
ଉର୍ମିଳା ସେଦିନ ତୁମ ଆଖିର ଭାଷାରେ ଥିଲା ଦୁଷ୍ଟାମୀର ଆମନ୍ତ୍ରଣ ।
ସାଗର ସେଦିନ କିନ୍ତୁ ଆମ ଚାରିପଟେ ଘେରି ରହିଥିଲେ ଅନେକ ସହପାଠୀ ।
ଉର୍ମିଳା ମୋ ପାଇଁ ସେମାନେ ଥିଲେ ନିର୍ଜନ ବର୍ଷାସିକ୍ତ ଚାନ୍ଦିନୀ ରାତିରେ ଜହ୍ନକୁ ଘେରି ରହିଥିବା ଖଣ୍ଡ ଖଣ୍ଡ ମେଘମାଳା ସବୁ । ଠିକ୍ ଆଜିଭଳି ।
ସାଗର ସେଇଦିନଠାରୁ ଅନେକ ପୁନେଇଁ ରାତି ମୋ' ଆଖିରୁ ନିଦ ହଜେଇ ଦେଇଛି । ମୋର ସ୍ୱପ୍ନସବୁ କଡ଼ ଲେଉଟାଣି ଦେଇ ରାତି ବଦଳରେ ଛପିଛପି ଆସି ଦିନରେ ବି' ମୋତେ ଅନ୍ୟମନସ୍କ କରିଛନ୍ତି । ଟମରି ପ୍ରେମରେ ପାଗଳ କରିଛନ୍ତି ।
ଉର୍ମିଳା (ହସି) ସାଗରରେ ଜୁଆର ଆସିଛି । ପୂର୍ଣ୍ଣମୀର ଜୁଆର । ଆଉ ସେଇ ଜୁଆରରେ ଉତଳା ହୋଇଛି ତା'ର ଉର୍ମିମାଳା, ଆଉ ଏ ଉର୍ମିଳା । (ହସିଛି)
ସାଗର ଏଇ ବର୍ଷା, ଏଇ ଜହ୍ନ, ଆଉ ଏଇ ପରିବେଶ, ତା' ସାଂଗକୁ ତୁମର ଏଇ ମିଠାମିଠା ଖିଲି ଖିଲି ହସ, ମୋତେ ବି ଉନ୍ମାଦ କରୁଛି ।
ଉର୍ମିଳା ତା'ହେଲେ ଆସ ।
ସାଗର କୁଆଡ଼େ ?
ଉର୍ମିଳା ସେଦିନ ଭଳି ଆମେ ଆଜି ଆଉଥରେ ଖେଳିବା ଯୌବନର ଖେଳ । ଦେହ ଆଉ ମନର ଖେଳ । ଶରୀର ଆଉ କାମନାର ଲୁଚକାଳି ଖେଳ ।
ସାଗର ଏଇଟା ତ' ମୋ ମନର ଭାଷା । ହେଲେ ଖେଳିବା କେମିତି ?
ଉର୍ମିଳା କିଛି ସମୟ ପାଇଁ ତୁମେ ହୋଇଯିବ ନୀଳଲୋହିତ ଆଉ ମୁଁ ଇଚ୍ଛାମତି । ଆଜରି ପରିବେଶ ତ ଅନେକ ଆଗରୁ ନିଜକୁ ସଜେଇ ନେଇଛି । ଆସ ଆଉ ବିଳମ୍ବ କାହିଁକି ?
ସାଗର କିନ୍ତୁ କେମିତି କହିବି ନୀଳଲୋହିତର ଭାଷା । ତା'ର ସଂଳାପ ତ ମୋର କିଛି ମନେନାହିଁ । ଇଚ୍ଛାମତୀର କଥାସବୁ କ'ଣ ତୁମର ମନେଅଛି ଉର୍ମିଳା ?
ଉର୍ମିଳା ଯୌବନର ଭାଷାକୁ ପ୍ରେମର କଥାରେ ଅନୁବାଦ କରିବାକୁ ସାହିତ୍ୟର ପ୍ରୟୋଜନ ପଡ଼େନି ସାଗର । ତା' ଛଡ଼ା ତୁମେ ତ ଓଡ଼ିଆ ସାହିତ୍ୟର ଶେଷବର୍ଷର ଛାତ୍ର । ତୁମ ପାଇଁ ଶବ୍ଦର ଅଭାବ ପଡ଼ିବ ବୋଲି ମୋର ମନେହେଉ ନାହିଁ ।
ସାଗର ତଥାପି ମୁଁ ଜଣେ ଉତ୍ତମ ବକ୍ତା ନୁହେଁ କି ତୁମ ପରି ବାକ୍‌ପଟୁ ମଣିଷ ବି ନୁହେଁ ।
ଉର୍ମିଳା ମନର ଭାଷା, ମନର ମଣିଷକୁ କହିବାକୁ ବକ୍ତୃତା ଦେବାର ଆବଶ୍ୟକତା ପଡ଼େନି ସାଗର । ଖାଲି ନିଜ ଅନ୍ତରର କୋଠରୀକୁ ନିଃସଂକୋଚରେ ଖୋଲିଦେବାକୁ ପଡ଼େ । ଶବ୍ଦରେ କମ୍, ଇସାରାରେ

| | |
|---|---|
| | ବେଶୀ। (ହସି) ଏଥର ପାରିବ ତ ? |
| ସାଗର | (ହସି) ଠିକ୍ ଅଛି । ଆସ... । ହେଲେ ଏଠି ନୀଳ ଲୋହିତର ପୋଷାକ କାହିଁ ? |
| ଉର୍ମିଳା | (କୁଡ଼ିଆଆଡ଼କୁ ଅନେଇ) ସେଇଠି ଗୋଟିଏ କୁଡ଼ିଆ ଦିଶୁଛି । ହୁଏତ କେଉଁ କୃଷକର ଜଗୁଆଳି ଭାରାଟିଏ । ଚାଲ । ତା'ରି ଭିତରକୁ ଯିବା । ଯଦି କିଛି ଲୁଗାପଟା ମିଳିଯାଏ, ତାହାହିଁ ହେବ ଆମ ପୋଷାକ । (ଦୁହେଁ କୁଡ଼ିଆ ଭିତରକୁ ଚାଲିଗଲେ । (ଦୃଶ୍ୟ ବଦଳିଗଲା ଦେଖାଗଲା ୪ ଜଣ ବୌଦ୍ଧଭିକ୍ଷୁ ହାତରେ ଦୀପ ଧରି ପ୍ରବେଶ କଲେ ।) |
| ଭିକ୍ଷୁ | ବୁଦ୍ଧଂ ଶରଣଂ ଗଚ୍ଛାମି, ଧମ୍ମଂ ଶରଣଂ ଗଛାମି,ସଂଘଂ ଶରଣଂ ଗଛାମି । (ଦୀପରଖି ପ୍ରସ୍ଥାନ) (ପ୍ରବେଶ କଲେ ସାଗର, ଉର୍ମିଳା, ନୀଳ ଲୋହିତ ଓ ଇଚ୍ଛାମତୀର ବେଶରେ) |
| ଉର୍ମିଳା | ଆସ ନୀଳଲୋହିତ । ଏଇଠି ବସ । |
| ନୀଳ | ଆଉ ମୁଁ ବସିବି କେଉଁଠି ? ଏତେଦିନ ଧରି ମୋତେ ବସାଇଥିବା ଜାଗାଟାକୁ କ'ଣ ତୁମ ହୃଦୟରୁ ପୁରା ଲିଭାଇ ଦେଇଛି ? (ଦୀପ ଲିଭାଇବା ଆରମ୍ଭ କଲେ) |
| ସାଗର | ଦୀପ ଲିଭାଇ ଦେଉଛ କାହିଁକି ? |
| ଉର୍ମିଳା | ତୁମେ ବସି ଏଇଠି ଧ୍ୟାନ କରିବ ପରା । |
| ସାଗର | ଆଲୁଅ ନଥିଲେ ତୁମ ମୁହଁ ଦେଖିବି କିମିତି ? |
| ଉର୍ମିଳା | ଆଲୁଅରେ ମଣିଷର ମୁହଁ ଦେଖିହୁଏ କିନ୍ତୁ ତାକୁ ଚିହ୍ନି ହୁଏନା । |
| ସାଗର | ଅନ୍ଧାରରେ କ'ଣ ମଣିଷକୁ ଚିହ୍ନିହୁଏ ? |
| ଉର୍ମିଳା | ଅନ୍ଧାର ଭିତରୁ ମଣିଷର ଅସଲି ଚେହେରାଟା ବାରିହୋଇପଡ଼େ । |
| ନୀଳ | ଅନ୍ଧାର ଭିତରେ ମଣିଷର କାମନାଦିପ୍ତ ଚେହେରାଟା କିମ୍ଭୁତ କିମାକାର ହୋଇଉଠେ । ସେଇ ଚେହେରାକୁ ପୁଣିଥରେ ପ୍ରଜ୍ଜ୍ୱଳିତ କରିବାକୁ ଚାହଁ ? |
| ସାଗର | ଅନ୍ୟକୁ ଚିହ୍ନିବା ଆଗରୁ ନିଜକୁ ଚିହ୍ନିବାର ପ୍ରୟୋଜନ ଅଛି । |
| ଉର୍ମିଳା | ସେଥିପାଇଁ ମଧ୍ୟ ଅନ୍ଧାରର ଆବଶ୍ୟକତା ପଡ଼େ । |
| ସାଗର | କିନ୍ତୁ ମୁଁ ଏବେ ମୋ ଭିତରେ ତୁମକୁ ଆଉ ତୁମ ଭିତରେ ମୋତେ ଦେଖିବାକୁ ଚାହେଁ । |
| ଉର୍ମିଳା | (ହସି) ହେଲା ବାବା ହେଲା, ମୁଁ ଯାହା କହୁଛି ଆଗେ ସେଇଆ କର । ଏଇଠି ବସ ଆଉ ଆଖି ବନ୍ଦ କର । |
| ନୀଳ | ବିଲେଇ ଆଖିବୁଜି କ୍ଷୀର ପିଇଲା ପରି କେବଳ ଆଖି ବନ୍ଦ୍ କରିଦେଲେ ମାନସପଟରେ ଅଙ୍କିତ କୁତ୍ସିତ ଦୃଶ୍ୟପଟରେ କିଛି ବି ପରିବର୍ତ୍ତନ ଘଟେନି । |
| ସାଗର | (ବସିଲା) ଠିକ୍ ଅଛି ବସିଲି ଆଉ ଆଖି ବନ୍ଦ କଲି । ଏଥର କ'ଣ କରିବି ? |
| ଉର୍ମିଳା | ମୋତେ ଦେଖ । |
| ସାଗର | କେମିତି ଦେଖିବି ? ଆଖି ପରା ବନ୍ଦ ଅଛି ? |
| ଉର୍ମିଳା | ମନେମନେ ଆଉ କଳ୍ପନାରେ ମୋତେ ଦେଖିବାକୁ ଚେଷ୍ଟା କର । |
| ସାଗର | ମନେମନେ ଦେଖିବି ? କଳ୍ପନାରେ ଦେଖିବି ? କି ଆଶ୍ଚର୍ଯ୍ୟ । ତୁମକୁ ଦେଖିବା ପାଇଁ ଏତେ କଷ୍ଟ କରିବି କାହିଁକି ? ତୁମେ ପରା ମୋ ପାଖରେ ଅଛ । (ତାକୁ ଧରିଆଣି ବସେଇବା) ବରଂ ତୁମେ ଆସ ମୋ ସାମ୍ନାରେ ଏଇଠି ବସ । ଆଖିରେ ଆଖିକୁ ମିଶାଇ ଦୁହେଁ ଦୁହିଁଙ୍କୁ ଦେଖିବା, ଚିହ୍ନିବା, ଆଖିରେ ଆଖିରେ କଥା ହେବା, ଆଉ ଏକାକାର ହୋଇଯିବା । |
| ଉର୍ମିଳା | ନାଟକରେ ପରା ସେଇକଥା ଲେଖା ଅଛି । ତୁମେ ଧ୍ୟାନରତ ଥିବ ଆଉ ମୋ କାମନା ଜର୍ଜରିତ ଦେହର କାମନାକୁ ନିର୍ବାପିତ କରିବା ପାଇଁ ମୁଁ ତୁମକୁ ଆହ୍ୱାନ କରିବି । |

| | |
|---|---|
| ନୀଳ | ଛି ଛି... ଆପଣାମନର ଉଶୃଙ୍ଖଳତାକୁ ଏକ ସଠିକ ପ୍ରୟାସ ବୋଲି ପ୍ରମାଣିତ କରିବା ପାଇଁ ନାଟକ ଭଳି ଏକ ରସାଳ ସାହିତ୍ୟକୁ ଅକାରଣରେ କାଠଗଡ଼ାକୁ ଟାଣି ଆଣୁଛ କାହିଁକି ? ସତ୍ୟକୁ ସ୍ୱୀକାର କରି କହୁନ ଯେ ନାଟକର ବାହାନାରେ କିଛିକ୍ଷଣ ପାଇଁ ନର୍କର ଆନନ୍ଦକୁ ତୁମେ ଲୁଟି ନେବାକୁ ଚାହଁ । |
| ସାଗର | ସେ ସବୁକଥା ନାଟକରେ ଲେଖାଅଛି, ମୁଁ ଜାଣେ । କିନ୍ତୁ ଅସଲ କଥା ହେଲା ଏମିତି ଏକ ନିର୍ଜନ ପରିବେଶରେ ନିଜର ଅପରୂପା ପ୍ରିୟତମାକୁ ଏକାନ୍ତରେ ପାଇବା ପରେ ମୁଁ ଆଉ ନୀଳଲୋହିତ ଭୂମିକାରେ ଅଭିନୟ କରିବାକୁ ଚାହୁଁନାହିଁ । ବରଂ ତୁମେ ନୀଳଲୋହିତ ହୋଇଯାଅ ମୁଁ ଇଚ୍ଛାମତି ହୋଇ ତୁମକୁ ଆହ୍ୱାନ କରୁଛି । |
| ଊର୍ମିଳା | ତୁମେ ପରା ନୀଳ ଲୋହିତର ପୋଷାକ ପିନ୍ଧିଛ ? |
| ନୀଳ | କେବଳ ପୋଷାକ ବଦଳାଇ ଦେଲେ ଚରିତ୍ର ବଦଳି ଯାଏନା । ତା' ସାଂଗକୁ ଅନ୍ତରାତ୍ମାର ସ୍ୱର ବି' ବଦଳାଇବାକୁ ପଡ଼େ । |
| ସାଗର | ନୀଳଲୋହିତର ଏଇ ପୋଷାକ ତଳେ ଯେ ମୋର ଆଉ ଏକ ପରିଚୟ ଅଛି । ଅନ୍ତରାତ୍ମାର ସେଇ ସତ୍ତା ଆଉ ସ୍ୱରକୁ ମୁଁ କିମିତି ପ୍ରତ୍ୟାଖ୍ୟାନ କରିପାରିବି ଊର୍ମିଳା ? |
| ଊର୍ମିଳା | ମୁଁ ଊର୍ମିଳା ନୁହେଁ । ଇଚ୍ଛାମତୀ । |
| ସାଗର | ନାନା... ଆଜି ରାତିଟା ପାଇଁ ମୋତେ ଇଚ୍ଛାମତି ହେବାର ସୁଯୋଗଟା ଦିଅନା ଊର୍ମିଳା । |
| ଊର୍ମିଳା | ତା'ହେଲେ ତ ଏ ନାଟକର ଖେଳ ଆଗକୁ ବଢ଼ିପାରିବ ନାହିଁ । |
| ନୀଳ | ଏମିତି ଗୋଟିଏ ନାଟକର ଖେଳ ତ ଆଉ ଆଗକୁ ବଢ଼ିବା ଏକାନ୍ତ ଜରୁରୀ ନୁହେଁ । |
| ସାଗର | କାହିଁକି ? |
| ଊର୍ମିଳା | ଗୋଟିଏ ନାଟକରେ ଦୁଇଟି ଚରିତ୍ର ଇଚ୍ଛାମତୀ ଭଳି, ଦୁହେଁ ଦୁହିଁଙ୍କୁ ଆଲିଙ୍ଗନ କରିବାକୁ ଆହ୍ୱାନ କରୁଛନ୍ତି । ବାସ୍ କଥା ସରିଲା । ନାଟକର ଆରମ୍ଭ ହେବା ଆଗରୁ ଯବନିକା ପଡ଼ିଯିବା ଭଳି କଥା ହେଲାନା । ନାଟକର ଇଣ୍ଟ୍ରୋଡକ୍ସନ୍ ପରେ ଯଦି କାଟାସ୍ଟ୍ରୋଫି ଆସିଯାଏ ତା'ହେଲେ ରାଇଜିଂ ଆକ୍ସନ୍, କ୍ଲାଇମାକ୍ସ ଆଉ ଫଲିଙ୍ଗ୍ ଆକ୍ସନ୍ ରହିବ ନାଇଁ ନାଟକର କାହାଣୀ ଆଗକୁ ବଢ଼ିବ କେମିତି ? |
| ସାଗର | ଏତେ କଥା ମୁଁ ଜାଣେନି । ବାସ୍ ମୁଁ ଖାଲି ତୁମକୁ ଚାହେଁ । |
| ଊର୍ମିଳା | ମୁଁ ବି ସେଇଆ ଚାହେଁ । କିନ୍ତୁ ଖେଳରେ ଖେଳରେ । |
| ସାଗର | ଖେଳରେ ଖେଳରେ...ମାନେ ? |
| ନୀଳ | ଯେମିତି, ଅନ୍ଧାରୀ ବନଶୀରେ ଗୁନ୍ଥାଯାଇଥିବା କେରାଣ୍ଡି ପୋଖରୀରେ ଖେଳୁଥାଏ । ଆଉ ତାକୁ ଶୀକାର କରିବାକୁ ଆସି ବିଚରା ବାଳିଆ ମାଛ ନିଜେ ଶୀକାର ପାଲଟିଯାଏ । ଠିକ୍ ସେମିତି । |
| ଊର୍ମିଳା | ଯେମିତି ବାଘ ତା' ଶିକାରକୁ ଖେଳେଇ, ଖେଳେଇ ଶିକାର କରିବାକୁ ଚାହେଁ, ଠିକ୍ ସେମିତି । |
| ସାଗର | ନାରୀ ମନର କଥା ନାରାୟଣଙ୍କୁ ମଧ୍ୟ ଅଗୋଚର, ଏ କଥା କବି କହିଛନ୍ତି । ହେଲେ ପ୍ରେମିକାମାନଙ୍କ କଥା ପ୍ରେମିକମାନଙ୍କୁ ଯେ କେତେ ଦୁର୍ବୋଧ ସେ କଥା ମୋ ପରି ଅନୁଭବି ହିଁ ଅନୁଭବ କରିପାରିବ । |
| ଊର୍ମିଳା | ଏଥିରେ ଦୁର୍ବୋଧ ହେଲାଭଳି କଥା କେଉଁଠି ରହିଲା ? |
| ସାଗର | ଆଉ ଟିକିଏ ଆଗରୁ ନାଟକର ଖେଳକଥା କହୁଥିଲ ? ଏଇନେ ପୁଣି ଶିକାରୀ ଶିକାରର ଖେଳ କଥା କହିଲଣି । |
| ଊର୍ମିଳା | ଖେଳ ଯାହାବି ହେଉନା କାହିଁକି । ଶକ୍ତିଶାଳୀ ପ୍ରତିପକ୍ଷ ନଥାଇ ଖେଳିବାର ମାନେ କିଛି ନାହିଁ । ପ୍ରତିପକ୍ଷକୁ ହରାଇବାକୁ ହେଲେ ନିଜକୁ ସଂଘର୍ଷ କରିବାକୁ ପଡ଼େ । ସେଇ ସଂଘର୍ଷ ହିଁ ନାଟକରେ ଆଣେ ଦ୍ୱନ୍ଦ୍ୱ । ପୁଣି ଦ୍ୱନ୍ଦ୍ୱରୁ ସୃଷ୍ଟି ହୁଏ ଉତ୍କଣ୍ଠା । ଦର୍ଶକ ମନ ଉତ୍କଣ୍ଠିତ ହୁଏ । ଅନୁସନ୍ଧିତ୍ସୁ ହୋଇଉଠେ । କିନ୍ତୁ ତୁମକଥା |

ଅନୁସାରେ ଏ ଖେଳରେ ଯଦି ଦୁଇଟି ଇଚ୍ଛାମତି ଆସିବେ ତା'ହେଲେ ସଂଘର୍ଷ ଆସିବ କେମିତି ? ଆଉ ସଂଘର୍ଷ ନଥିଲେ ଦ୍ୱନ୍ଦ୍ୱ ନଥିବ କି ଉତ୍କଣ୍ଠା ବି ନଥିବ । ତା'ହେଲେ ଦର୍ଶକ ଏହାକୁ ଦେଖିବେ କାହିଁକି ?

ସାଗର ସେଇଟା ନାଟକର ସମସ୍ୟା । ମାନେ ନାଟ୍ୟକାର, ନିର୍ଦ୍ଦେଶକ କିମ୍ବା ଦର୍ଶକଙ୍କର ସମସ୍ୟା । ସେଥିରେ ମୋର କିଛି ଯାଏ ଆସେ ନାହିଁ । କାରଣ ଏଇଟା ନାଟକ ନୁହେଁ କି । ଏଠି ଦର୍ଶକ ନାହାନ୍ତି । ଏଇଟା ତୁମର ମୋର ପ୍ରେମର କଥା । ଜୀବନର କାହାଣୀ । ଏଠି ସଂଘର୍ଷ, ଦ୍ୱନ୍ଦ୍ୱ, ଉତ୍କଣ୍ଠା ଏକାନ୍ତ ଅପରିହାର୍ଯ୍ୟ ନୁହେଁ ।

ଉର୍ମିଳା (ହସି) ଭୁଲ ପୂରାପୂରି ଭୁଲ । ଜୀବନ ମାନେ ତ ସଂଘର୍ଷ, ସଂଘର୍ଷ ନଥିଲେ ଜୀବନର ସ୍ୱାଦ ବାରି ହୁଏ ନାହିଁ ।

ନୀଳ ସେ ସଂଘର୍ଷ କାହାର ? ଦେହ ଆଉ କାମନାର ? ଜୀବନ ଆଉ ମୃତ୍ୟୁର ? ସମାଜ ଆଉ ଅଧିକାରର ନା ଦର୍ଶନ ଆଉ ସିଦ୍ଧାନ୍ତର ? କେଉଁ ସଂଘର୍ଷର କଥା ତୁମେ ଏବେ କହିବାକୁ ଚାହୁଁଛ ?

ଉର୍ମିଳା ଏକଥା ମୁଁ କହୁନି କବି କହିଛନ୍ତି–ଏଇ ଜୀବନଟା ଏକ ନାଟକ...ଜୀବନଟା ଏକ ନାଟକ, ମୁଁ ପରାଜିତ ତା'ର ନାୟକ ।

ସାଗର ନା ନା ମୁଁ କିନ୍ତୁ ତା'ର କଳଙ୍କିତ ନାୟକ ହେବାକୁ ଚାହେଁନା ।

ଉର୍ମିଳା ସେଇଥିପାଇଁ ତ ସଂଘର୍ଷର ଆବଶ୍ୟକତା ଅଛି । ତୁମ ପ୍ରତିପକ୍ଷ ସହିତ ସଂଗ୍ରାମର ପ୍ରୟୋଜନ ଅଛି ।

ସାଗର ମୋ ପ୍ରତିପକ୍ଷ ? ତୁମକୁ ପାଇବା ପାଇଁ ମୋ ପ୍ରତିପକ୍ଷ ପୁଣି କିଏ ? କିଏ ମୋର ପ୍ରତିଦ୍ୱନ୍ଦ୍ୱୀ ଉର୍ମିଳା...କୁହ କିଏ ସିଏ ।

ଉର୍ମିଳା (ହସିଛି) କିଏ ଜାଣିନ ?

ସାଗର ନା... କୁହ କ'ଣ ତା'ର ନାଁ । ସିଏ କେଉଁଠି ଅଛି ?

ଉର୍ମିଳା ନା କହିବି ନାହିଁ । (ହସିଛି । ସାଗର ତାକୁ ଗୋଡ଼େଇ ଧରିଛି ଓ ବାଧ୍ୟ କରିଛି)

ସାଗର କୁହ ସେ କେଉଁଠି ?

ଉର୍ମିଳା ଏଇଠି ଲୁଚି ରହିଛି ।

ସାଗର କେଉଁଠି ଶୀଘ୍ର କୁହ ? କେଉଁଠି ସିଏ ?

ଉର୍ମିଳା (ସାଗର ଛାତିର ଆଙ୍ଗୁଳି ଲଗେଇ) ଏଇଠି ଲୁଚିଛି ସିଏ ।

ନୀଳ (ହସି) ମୁଁ ଜାଣିଥିଲି ତୁମେ ସେଇକଥା ହିଁ କହିବ । କଥାରେ କହନ୍ତି ପରା–
"କହି ଦେଉଥାଏଁ ପରକୁ, ବୁଦ୍ଧି ନ ଦିଶଇ ଘରକୁ ।"

ସାଗର ଏଇଠି... ମୋରି ଭିତରେ...କିଏ ସିଏ...

ଉର୍ମିଳା ସନ୍ଦେହ । ଅବିଶ୍ୱାସ । ଅନିଶ୍ଚିତ ଭାବନା... ।

ନୀଳ ଖାଲି କ'ଣ ତା'ରି ଭିତରେ ଲୁଚିଛି । ତୁମ ଭିତରେ ସେମାନେ କ'ଣ ନାହାନ୍ତି ? ତୁମେ ତାକୁ କ'ଣ କେବେ ଖୋଜି ପାଇଛ ? ନା ତୁମେ ତାକୁ କେବେ ଖୋଜିବାର ପ୍ରୟାସ କରିଛ? ଅଥବା ତା'ର ପରିଚୟ ଜାଣି ମଧ୍ୟ ତୁମେ ନଜାଣିବାର ଛଳନା କରୁଛ ?

ସାଗର ଆଃ... । ତୁମେ କ୍ରମେ ଜଣେ ଦାର୍ଶନିକ ନଚେତ୍ ଦିଗ୍‌ଦର୍ଶକ ହୋଇଯାଉଛ ଉର୍ମିଳା । ଅଥଚ ମୁଁ ତୁମକୁ ଏବେ ଭିନ୍ନ ରୂପରେ ଦେଖିବାକୁ ପ୍ରୟାସ କରୁଛି ।

ଉର୍ମିଳା ତୁମେ ତା'ହେଲେ ମୋତେ ଏବେ କେଉଁ ଭୂମିକାରେ ଦେଖିବାକୁ ଅଧିକ ପସନ୍ଦ କରୁଛ ନୀଳ... ତୁମ ପ୍ରେମିକା ନା ପତ୍ନୀ... ।

| | |
|---|---|
| ନୀଳ | ସେ ସବୁତ ସେଇ ଗୋଟିଏ ନୀଳ ଆକାଶ ତଳେ ବହୁରଂଗୀ ରଂଗର ପ୍ରଜାପତି ଭଳି । କେବେ ପ୍ରେମିକା, ପତ୍ନୀ ତ ପୁଣି କେବେ ଭଗିନୀ, କନ୍ୟା ଆଉ ଜନନୀ । |
| ସାଗର | ପ୍ରେମିକା ଭୂମିକାରେ ତ ତୁମେ ବେଶ୍ କିଛିଦିନ ଧରି ଅଭିନୟ କରିଆସିଛ । ଏଣିକି ପତ୍ନୀ ଭୂମିକାରେ ତୁମକୁ ଅଭିନୟ କରିବାକୁ ପଡ଼ିବ । ତୁମେ ପ୍ରସ୍ତୁତ ଅଛ ତ ? |
| ଊର୍ମିଳା | ହଠାତ୍ ଏ ପ୍ରଶ୍ନ ? |
| ସାଗର | ଆହୁରି ଅନେକ ପ୍ରଶ୍ନ ଆଜି ପଚାରିବାକୁ ଚାହେଁ । |
| ଊର୍ମିଳା | କ'ଣ ପତ୍ନୀ ହେବା ପାଇଁ ସାକ୍ଷାତକାର ? |
| ସାଗର | ନା–ବରଂ ମୁଁ ତୁମର ଇଚ୍ଛା ଜାଣିବାକୁ ଚାହେଁ । |
| ଊର୍ମିଳା | (ହସି) ଇଚ୍ଛାମତିର ଇଚ୍ଛାକୁ ପୁଣି ତୁମେ ଜାଣିବାକୁ ଚାହଁ ? |
| ନୀଳ | (ଘୃଣାରେ) ସେଇଟା ଇଚ୍ଛା ନୁହେଁ । ଏକ ଅଦମ୍ୟ ଆକାଂକ୍ଷା । ଏକ ବିକୃତ ଚେତନାର, ନିରବଚ୍ଛିନ୍ନ କାମନାର, ଅସଂଗତ ଉଦ୍‌ବେଳନର ଉଦ୍‌ଗୀରଣ ସବୁ । ତାକୁ ହିଁ ତୁମେ ତୁମର ଇଚ୍ଛା ବୋଲି କହିବାକୁ ଚାହଁ ? ନୁହେଁ କି ? |
| ସାଗର | ଇଚ୍ଛାମତୀର ଇଚ୍ଛା ନୁହେଁ ? |
| ଊର୍ମିଳା | ଠିକ୍ ଅଛି । ପଚାର । |
| ସାଗର | ତୁମେ ମୋତେ କେତେ ଭଲ ପାଅ । |
| ଊର୍ମିଳା | ତୁମେ ମୋତେ ଯେତିକି ଭଲପାଅ । |
| ନୀଳ | ପ୍ରଶ୍ନ ଅନୁରୂପ ଉତ୍ତର । ନିମ୍ବ ପତ୍ରକୁ କଞ୍ଚା ଖାଇଲେ ଯାହା ରାନ୍ଧି ଖାଇଲେ ବି ସେଇଆ । |
| ସାଗର | ମୋ ପ୍ରତି ତୁମର ଏ ପ୍ରେମ ଅତୁଟ ରହିବ ତ ? |
| ଊର୍ମିଳା | ତୁମ ପ୍ରେମ ଅକ୍ଷୟ ଥିବା ପର୍ଯ୍ୟନ୍ତ ମୋ ପ୍ରେମ ଅତୁଟ ରହିବ । |
| ସାଗର | ମାନେ... |
| ନୀଳ | ବର୍ଷାର ବର୍ଷଣ ଶେଷ ହେଲେ କଦମ୍ବ ଯେମିତି ମଉଳିଯାଏ, ମଳୟ ବୋହିବା ଶେଷ ହୋଇଗଲେ କୋଇଲିର କଣ୍ଠ ଯେମିତି ରୁଦ୍ଧ ହୋଇଯାଏ ସେମିତି ଯୌବନର ଉଦ୍ଦାମତା ମଳିନ ପଡ଼ିଗଲେ, ଶରୀରରେ ଫଗୁଣ ନଇଁ ଆସେ ଆଉ ମସ୍ତକର ଘନକେଶରେ କାଶତଣ୍ଡୀ ଫୁଲର ଚମକ ଲାଗିଯାଏ, ସେଇଆ ନୁହେଁ କି ? |
| ଊର୍ମିଳା | ତୁମ ପ୍ରେମ, ଋତୁ ବଦଳେଇ ଦେଲେ ମୋ ପ୍ରେମ ବି କଡ଼ ଲେଉଟାଣି ଦେଇପାରେ । ଅବଶ୍ୟ ସେଥିପାଇଁ ମୋତେ ବିଶ୍ୱାସ ଘାତକ ହେବାକୁ ପଡ଼ିବ ନୀଳ । ତୁମ ପାଖରେ ନ ହେଲେ ବି' ନିଜ ପାଖରେ । |
| ନୀଳ | ଗୋଟିଏ ଦେହରୁ ଅନ୍ୟ ଦେହକୁ । ଗୋଟିଏ ରୂପରୁ ଅନ୍ୟ ରୂପକୁ ନାଁ ବଦଳାଇ ତୁମେ ପ୍ୟୁପାରୁ ପ୍ରଜାପତି ହେବାର ପ୍ରୟାସ କରିଚାଲିଛ । ସେଇଥିପାଇଁ କେତେବେଳେ ସାଗରକୁ ନୀଳଲୋହିତ ତ ଆଉ କେତେବେଳେ ନୀଳଲୋହିତକୁ ସାଗରରେ ରୂପାନ୍ତରିତ କରି ଦେହରୁ ଦେହକୁ ଡେଇଁ ଜୋକଭଳି କେବଳ ରକ୍ତ ଶୋଷିବାର ଉଦ୍ୟମ କରୁଛ । |
| ଊର୍ମିଳା | ମୁଁ ଠିକ୍ କରିଛି । ଜୀବନକୁ ନିଜ ଭଳି ଜୀଇଁବାର ପ୍ରୟାସ କରି ମୁଁ ଠିକ୍ କରିଛି । ମୁଁ ଯଦି ଭୁଲ୍ କରିଛି ବୋଲି କେହି ଭାବୁଥାଏ, ସେଇଟା ତା'ର ସମସ୍ୟା । ମୋ ପାଇଁ ଅନ୍ୟର ସିଦ୍ଧାନ୍ତର ମାନେ କିଛି ନାହିଁ । ଯଦି ତାହା ମୋତେ ଜୀଇଁବାର ପ୍ରେରଣା ଦେଇନ ପାରିଲା (ନିଜକୁ ନିଜେ) ବିଶ୍ୱାସ କର ନୀଳ ଏବେବି ମୁଁ ତୁମକୁ ବହୁତ ଭଲ ପାଏ । |
| ସାଗର | ମୋ ପ୍ରେମ ଉପରେ ତୁମର ବିଶ୍ୱାସ ନାହିଁ । |
| ଊର୍ମିଳା | ଟିକିଏ ଆଗରୁ କହୁଥିଲି ନା । ଏଇ ଅବିଶ୍ୱାସ ହିଁ ତୁମର ପ୍ରତିଦ୍ୱନ୍ଦ୍ୱୀ ନୀଳ... |

ସାଗର ଏଇଟା ମୋ ପ୍ରଶ୍ନର ଉତ୍ତର ନୁହେଁ ।
ଉର୍ମିଳା ତୁମ ପ୍ରଶ୍ନର ଉତ୍ତର ତ ତୁମରି ପାଖରେ ଅଛି ।
ସାଗର ତୁମେ ମୋତେ ବିବାହ କରିବ ତ ?
ଉର୍ମିଳା ଏମିତି ଗୋଟିଏ ପ୍ରଶ୍ନ ଯଦି ମୁଁ ତୁମକୁ ପଚାରେ ।
ସାଗର ମାନେ... ।
ଉର୍ମିଳା ବିବାହ ପରେ ମୋ ପ୍ରତି ତୁମର ଏ ପ୍ରେମ, ମୃତ୍ୟୁ ପର୍ଯ୍ୟନ୍ତ ଅତୁଟ ରହିବ ତ ?
ସାଗର ଆଶଙ୍କାର କାରଣ ?
ଉର୍ମିଳା ପ୍ରେମ ଆଉ ସଂସାର ଭିତରେ ଆଶା ଆଉ ଆଶଙ୍କାକୁ ନେଇ ଅସରନ୍ତି ଦୂରତ୍ୱ । ଅତୀତ ଆଉ ଭବିଷ୍ୟତ ତ ସେଇ ନଈର ଦୁଇକୂଳ ଭଳି ।
ସାଗର ପ୍ରେମିକା କ'ଣ କେବେ ପତ୍ନୀ ହୋଇପାରେନା ?
ଉର୍ମିଳା କାହିଁକି ନୁହେଁ ? ତେବେ ଜୀବନ ନଦୀର ସ୍ରୋତ ଯେ ଭାରୀ ତୀକ୍ଷ୍ଣ । ଖରସ୍ରୋତା ନଦୀର ନିର୍ଝର ଭଳି ଦନ୍ତୁରିତ ପୁଣି ବନ୍ଧୁର ଶୀଳାଶଯ୍ୟା । ସେଥିରେ ପାରିହେବା ପାଇଁ ନାବ ଆଉ ନାବିକ ଦୁହିଁଙ୍କୁ ମଜବୁତ୍ ହେବାକୁ ପଡ଼ିବ । ଶାରିରୀକ ଆଉ ମାନସିକ ଦୁଇ ରୂପରେ ।
ସାଗର କାହିଁକି ?
ଉର୍ମିଳା ନହେଲେ ସ୍ୱପ୍ନ ଆଉ ସତ୍ୟ, କଳ୍ପନା ଆଉ ବାସ୍ତବତା ଉଭୟଙ୍କୁ ଦୁଇହାତରେ ଧରି ଏକାସାଂଗରେ ବାଟ ଚାଲିବ କେମିତି ନୀଳ ?
ସାଗର ସ୍ୱପ୍ନ ଆଉ କଳ୍ପନା କଥା ଛାଡ଼ । ଆମେ ଦୁହେଁ ତ ସତ୍ୟ ଆଉ ବାସ୍ତବତାର ପୂଜାରୀ ।
ଉର୍ମିଳା ଆମ ଆଖି ଦେଖିଥିବା ସ୍ୱପ୍ନମାନଙ୍କୁ ଯଦି କେହି ଇଚ୍ଛାମତିର ଇଚ୍ଛା ଭଳି ଦିବାସ୍ୱପ୍ନ ଆଖ୍ୟା ଦେଇଦିଅନ୍ତି କେଦାର ଗୌରୀର ନିଷ୍ଫଳ ପ୍ରେମ ଭଳି–
ସାଗର ନା...ନା... ସେକଥା କୁହନା, ସାଗର ବିନା ଢେଉର ଅସ୍ତିତ୍ୱ ଭଳି ତୁମ ବିନା ଏବେ ମୋ ଅସ୍ତିତ୍ୱ ଯେ ଅସମ୍ଭବ ।
ଉର୍ମିଳା ସାଗର ବି ଢେଉରେ ଅନେକ ସ୍ୱପ୍ନର ଉର୍ମିମାଳା ସୃଷ୍ଟି କରେ । ହେଲେ କୂଳରେ ଆସି ଥରେ ବାଡ଼େଇ ହୋଇଗଲା ପରେ ସେଇ ଉର୍ମିମାଳା, ସ୍ୱପ୍ନ ପରି ବାଲିରେ ମିଳେଇଯାଏ । ବେଳାଭୂମିରେ ଛାଡ଼ିଯାଏ ଖାଲି ସ୍ମୃତିର ଶାମୁକା ସବୁ ।
ସାଗର ତା'ହେଲେ ଆମର ସମ୍ପର୍କ କ'ଣ ଖାଲି ସ୍ମୃତିର ଶାମୁକା ହୋଇ ରହିଯିବ ଉର୍ମିଳା ?
ଉର୍ମିଳା ଆମରି ଭଳି ଅନେକ କେଦାରଗୌରୀ ଆଉ ଲୈଲା ମଜନୁମାନଙ୍କୁ ତୁମେ ଇତିହାସ ପୃଷ୍ଠାରେ ଭେଟିଥିବ ।
ସାଗର ଆମ ପାଇଁ ଅତୀତର ଇତିହାସ ନିରର୍ଥକ ହୋଇପାରେ ।
ଉର୍ମିଳା ସମାର୍ଥବୋଧକ ବି ହୋଇପାରେ । ଭବିଷ୍ୟତ କିଏ ଦେଖିଛି ?
ସାଗର ତା'ହେଲେ ତୁମେ କ'ଣ ଚାହଁ ?
ଉର୍ମିଳା ଇଚ୍ଛାମତିର କଣ ବା ଆଉ ଇଚ୍ଛା ହୋଇପାରେ ? ଅନ୍ୟର ଉପଲବ୍ଧି ଉପରେ ନିର୍ଭରଶୀଳ ହୋଇ ଆଗକୁ ପାଦ ବଢ଼ାଇବା ଅପେକ୍ଷା ନିଜର ଉପଲବ୍ଧିମାନଙ୍କୁ ନେଇ ନିଜର ଭବିଷ୍ୟତ ମୁଁ ଗଢ଼ିବାକୁ ଚାହେଁ ।
ସାଗର ଏତେଦିନର ସମ୍ପର୍କ ଭିତରେ କ'ଣ ତୁମର ମୋ ଉପରେ ବିଶ୍ୱାସ ହୋଇନି ?
ଉର୍ମିଳା ମୋ ବିଶ୍ୱାସ କଥା ଛାଡ଼ । ତୁମ ମନକୁ ପଚାରିଦେଖ । ଦେଖିବା ତୁମ ହୃଦୟର ସ୍ପନ୍ଦନ କ'ଣ କହୁଛି । (ସାଗର ଛାତିରେ କାନରଖି) ସିଏ କହୁଛି ନାନା...ନାନା...(ହସି) ନିଜ ଉପରେ ତୁମର ଭରସା ନାହିଁ ତେଣୁ ତୁମେ ମୋତେ ବିଶ୍ୱାସ କରିପାରୁନ ।

| | |
|---|---|
| ସାଗର | ଏ କଥା ତୁମେ କହିପାରୁଛ ? |
| ଉର୍ମିଳା | ଅନେକଙ୍କର ବିଶ୍ୱାସ ଯେ ଇଛାମତି କାମନା ସର୍ବସ୍ୱ ମଣିଷଟିଏ । |
| ସାଗର | ଅନ୍ୟର ବିଶ୍ୱାସ ମୋର ବିଶ୍ୱାସ ହୋଇ ନପାରେ । |
| ଉର୍ମିଳା | ତୁମେ ବି' ତ ଅନେକଥର କହିଛ ଏ ଦେହ ଦିନେ ହଜିଯିବ । କାମନାକୁ ଆୟତ୍ତ କର । |
| ସାଗର | ମିଛ କଥା । ଏ କଥା ତୁମକୁ କେବେ ମୁଁ କହି ନପାରେ । କାରଣ ମୁଁ ନିଜେ କାମନା ରହିତ ନୁହେଁ । କହିଥିଲେ ନୀଳଲୋହିତ କହିଥିବ । |
| ନୀଳ | ହଁ ମୁଁ କହିଥିଲି । ମୁଁ କ'ଣ ଭୁଲ୍ କହିଥିଲି ? ଏ ଦେହ କ'ଣ ସତରେ ଦିନେ ହଜିଯିବ ନାହିଁ ? କାମନା କ'ଣ କେବେ ଚିରହରିତ ଅରଣ୍ୟ ହୋଇପାରେ ? |
| ଉର୍ମିଳା | (ହସି) ତୁମେ ପରା ନୀଳଲୋହିତ ? |
| ସାଗର | ନା ! ମୁଁ ସାଗର । |
| ଉର୍ମିଳା | ତୁମ ଭିତରେ ସଂଶୟ ଅଦ୍ୟାବଧି ବିଦ୍ୟମାନ । |
| ସାଗର | ନା–ମୁଁ ତୁମକୁ ଚାହେଁ । |
| ଉର୍ମିଳା | ତା'ହେଲେ ତୁମ ଅଧ୍ୟାପକ ଯେତେବେଳେ ଶ୍ରେଣୀରେ ଘୋଷଣା କଲେ ଯେ ଇଛାମତୀ ଏକ କାମନାଲୋଭୀ ମଣିଷଟିଏ । ତୁମେ ତ କାହିଁ ତାଙ୍କୁ ପ୍ରତିବାଦ କଲ ନାହିଁ ? |
| ସାଗର | ତାଙ୍କ କଥାକୁ ବିଶ୍ୱାସ କରିଗଲି ବୋଲି ତୁମେ କେମିତି ଭାବୁଛ ? |
| ଉର୍ମିଳା | ତା'ହେଲେ ସତକୁହ ତୁମେ ମୋ ବିଷୟରେ କ'ଣ ଭାବୁଛ ? |
| ସାଗର | ସତ କହିଲେ ତୁମେ ବିଶ୍ୱାସ କରିବ ତ ? |
| ଉର୍ମିଳା | କୁହ । |
| ସାଗର | ତୁମ ପାଇଁ ମୁଁ ଇଛାମତି ହେବାକୁ ଚାହେଁ । ତୁମକୁ ଚାହେଁ । |
| ନୀଳ | ପୁଣି ଆଉ ଏକ ଦୁର୍ବଳତା । ଆଉ ଏକ ଅନ୍ଧପ୍ରେମର ପ୍ରହସନ । |
| ଉର୍ମିଳା | (ଲମ୍ବାହସ) ସତେ ନା କ'ଣ ? କିନ୍ତୁ ତୁମ ପରିବାର, ବନ୍ଧୁବାନ୍ଧବ, ତୁମକୁ ଅନୁମତି ଦେଇ ନପାରନ୍ତି । |
| ସାଗର | ତୁମକୁ ପାଇବା ପାଇଁ ମୁଁ ସମସ୍ତଙ୍କୁ ଉପେକ୍ଷା କରିପାରେ । |
| ଉର୍ମିଳା | ଏଇଟା କେବଳ ଯୌବନର ଭାଷା । ଶାରିରୀକ କ୍ଷୁଧାର ସ୍ୱର । |
| ସାଗର | ଯୌବନ ଏକ ଶାରିରୀକ ଅବସ୍ଥା । ସଂସାର ପାଇଁ ସେ ଅବସ୍ଥାର ଆବଶ୍ୟକତା ଅଛି । ଏହା ସୃଷ୍ଟିର ନିୟମ । |
| ଉର୍ମିଳା | (ପୁଣି ଲମ୍ବା ହସ) ବାଃ...ଏତେଶୀଘ୍ର ସୃଷ୍ଟିର ନିୟମ ସବୁ ତୁମେ ଜାଣିଗଲ ନୁହେଁ ? ଅଥଚ ଦାର୍ଶନିକମାନେ ତ କହନ୍ତି ସୃଷ୍ଟିର ନିୟମ ସବୁ ଏବେ ବି ରହସ୍ୟମୟ, ବିସ୍ମୟକର । ସେମାନେ କହନ୍ତି ସୃଷ୍ଟି ଏକ ପ୍ରହେଳିକା । ଯାହାର ସତ୍ୟ, ଯାହାର ଆଦି ଆଉ ଅନ୍ତ ଏବେବି ଅନାବିଷ୍କୃତ । |
| ନୀଳ | ତାକୁ ଆବିଷ୍କାର କରିବା ପାଇଁ କାମନା ନୁହେଁ ଚେତନାର ଉତ୍ତରଣ କରିବାକୁ ପଡ଼ିବ । ଆତ୍ମସତ୍ତାକୁ, ଆତ୍ମଚେତନାକୁ ନିର୍ବିକଳ୍ପ ସମାଧିରେ ସମାଧିସ୍ଥ କରିବାକୁ ପଡ଼ିବ । |
| ସାଗର | କିନ୍ତୁ ଜୀବନ ସତ୍ୟତ ସେଇ କଥା ହିଁ କହେ । ପ୍ରକୃତି ଆଉ ପୁରୁଷର ମିଳନ ଭଳି । ନାରୀ ଆଉ ପୁରୁଷର ସହାବସ୍ଥାନ ସୃଷ୍ଟି ପାଇଁ ଏକାନ୍ତ ଆବଶ୍ୟକ । |
| ଉର୍ମିଳା | ହୁଏତ ବା ସତ୍ୟ । କିନ୍ତୁ ସେ ଆବଶ୍ୟକତାର ପୂର୍ବାପର ପ୍ରସଙ୍ଗ ସବୁକୁ ତୁମେ କେବେ ଅନୁଧ୍ୟାନ କରିଛ ? ଅନୁଭବ କରିଛ ତା'ର ପାରିପାର୍ଶ୍ୱିକ ଆବଶ୍ୟକତା ସବୁକୁ ? ଜୀବନର ଭାଷାକୋଷ ଖୋଲି ଦେଖିଛ ଏ ସଂସାରରେ ସମ୍ପର୍କ ସବୁର ଅର୍ଥ କ'ଣ ? ବାପା, ମା', ବଂଧୁ, ପରିବାର ? |

| | |
|---|---|
| | ସେସବୁ ସମ୍ପର୍କର ସୀମାରେଖାକୁ ଟପିଯାଇ ମଣିଷ କ'ଣ କେବଳ ଶାରିରୀକ ସମ୍ପର୍କରେ ସୀମିତ ହୋଇଯାଇପାରେ ? |
| ସାଗର | କିନ୍ତୁ ଏକଥା ତ ତୁମେ ହିଁ ଦିନେ କହିଥିଲ । |
| ଊର୍ମିଳା | (ହସିଛି) ଅନ୍ୟ ଅନେକଙ୍କ ଭଳି ମୋ ଭାଷାକୁ ତୁମେ ସେମିତି ବୁଝିଛ । ମୁଁ କିନ୍ତୁ ଶରୀର ସର୍ବସ୍ୱର କଥା କେବେବି କହି ନଥିଲି । ବରଂ ଶରୀରକୁ ମାଧ୍ୟମ କରି ନିଜସ୍ୱ ଉପଲବ୍ଧିର ଚେତନାକୁ ପରିବ୍ୟାପ୍ତ କରି ସାଧାରଣ ମାନବକୁ ବିଶ୍ୱମାନବରେ ପରିଣତ କରିବାକୁ ଚାହିଁଥିଲି । |
| ସାଗର | ତଥାପି ତୁମେ ସେଦିନ କାମନାରେ ଜଳୁଥିଲ । |
| ଊର୍ମିଳା | ଆଜି ବି' ଜଳୁଛି । କିନ୍ତୁ ଏ ଜ୍ୱଳନ ଏକ ସହଜ ସରଳ ଆହ୍ୱାନ । ପ୍ରେମର ଆହ୍ୱାନ । ତୁମ ଭଳି ଅଥବା ପଳାୟନପନ୍ଥୀ ନୀଳଲୋହିତମାନଙ୍କୁ ସୃଜନଶୀଳ କରି ଗଢ଼ିତୋଳିବାର ଏହାଏକ ନିଛକ ପ୍ରୟାସ ମାତ୍ର । |
| ନୀଳ | ଏଇ ଦେହର ଆକର୍ଷଣ ଦେଇ ? |
| ଊର୍ମିଳା | ପ୍ରେମର ଅନୁଭୂତିକୁ ପରିବ୍ୟାପ୍ତ କରି ଚେତନାକୁ ଚରମ ଉପଲବ୍ଧିର ପହଂଚାଇବା ପାଇଁ ଇନ୍ଦ୍ରିୟ ତ ଅନ୍ୟତମ ସହଜ, ସୁଲଭ ମାଧ୍ୟମ । ଇନ୍ଦ୍ରିୟରୁ ଇନ୍ଦ୍ରିୟାତୀତ ହେବା ଅଧିକ ସହଜ ଯେମିତି ସାକାରରୁ ନିରାକାରର ଉପଲବ୍ଧି ଏକ ସହଜ ଆଉ ସରଳତମ ମାଧ୍ୟମ । |
| ନୀଳ | ଆଶ୍ଚର୍ଯ୍ୟ, ଏତ ତୁମର ଭାଷା ନୁହେଁ । ଏ ଶବ୍ଦ ସବୁ ତୁମକୁ ଶିଖାଇଲା କିଏ ? ଏଇଟା କ'ଣ ସତରେ ତୁମର ଅନ୍ତରର କଥା ନା ମୁଁ କିଛି ଭୁଲ୍ ଶୁଣୁଛି । |
| ସାଗର | ତୁମର ଏ ଭାଷା ଏକାନ୍ତ ପୋଥିଗତ । ମୋ ମତରେ ଆଜି ବି' ପ୍ରେମର ଭାଷା ତୁମକୁ ଅଜଣା । |
| ଊର୍ମିଳା | (ହସିଲା ତାଚ୍ଛଲ୍ୟର ହସ) ଆଚ୍ଛା... ତୁମକୁ ଜଣାଅଛି ତ ? ତା'ହେଲେ ମୋତେ ଏବେ ବତେଇଦିଅ ତୁମର ସେ ପ୍ରେମର ପରିଭାଷା । |
| ସାଗର | ନିଶ୍ଚୟ ବତେଇ ଦେବି । କିନ୍ତୁ ଆଗେ ଉତ୍ତର ଦେଇସାର । |
| ଊର୍ମିଳା | ମୁଁ ଆଉ କ'ଣ କହିବି ? ତୁମେ ପରା ସବୁ ଜାଣ ? |
| ସାଗର | ହଁ ଜାଣେ । ଏକରେ ଏକ ଗୁଣନ କଲେ ଗୁଣଫଳ ସେଇ ଏକ ହିଁ ରହେ । |
| ଊର୍ମିଳା | (ହସି) ପୁଣି ସେଇ ଏକରୁ ଏକ ଫେଡ଼ାଣ କଲେ ଫଳ ଶୂନ୍ୟ ହୋଇଯାଏ । ଶୂନ୍ୟ...ଶୂନ୍ୟ...ମହାଶୂନ୍ୟ । |
| ସାଗର | ପ୍ରେମ ଫେଡ଼ାଣ ନୁହେଁ ଗୁଣନ । |
| ଊର୍ମିଳା | ପ୍ରେମ ଫେଡ଼ାଣ ନୁହେଁ କି ଗୁଣନ ମଧ୍ୟ ନୁହେଁ । ତାହା ଏକ ଅପରୂପ ଅନୁଭୂତିର ରୋମାଞ୍ଚକର ପରିପ୍ରକାଶ । ଯାହାର ସ୍ପର୍ଶରେ ଜୀବନରେ ପରିପୂର୍ଣ୍ଣତା ଆସେ । ଆତ୍ମସତ୍ତା ବିକଶିତ ହୁଏ । ଚିନ୍ତା ଆଉ ଚେତନାର ଉତ୍ତରଣ ହୁଏ । ସେଇ ପ୍ରେମ ଆଉ ବିରହରେ ଲେଖନୀ କଥା କହେ । ତୁଳୀ ଚଞ୍ଚଳ ହୋଇଉଠେ । କଥାକାର ପ୍ରଗଳ୍ଭ ହୁଏ । |
| ନୀଳ | ତୁମେ ଠିକ୍ କହିଛ । ମୁଁ ବି' ଦିନେ ସେଇ ପ୍ରେମର ସ୍ପର୍ଶରେ ବିମୁଗ୍ଧ ହୋଇ ଉଠିଥିଲି । ଆଉ ତା'ରି ସାଧନାରେ ନିମଗ୍ନ ହୋଇଯାଇଥିଲି । |
| ସାଗର | ଏମିତି ସାହିତ୍ୟର ଛଟାରେ କିମ୍ବା ଛଳନାର ଭାଷାରେ ନୁହେଁ । ନିଛକ ପ୍ରାଞ୍ଜଳ ସତ୍ୟକଥାରେ ମୋତେ ବୁଝେଇଦିଅ । |
| ଊର୍ମିଳା | ସତ୍ୟ ସବୁବେଳେ କଠୋର, ନିଷ୍ଠୁର, ନୀଳ । |
| ସାଗର | ତଥାପି ମୁଁ ଶୁଣିବାକୁ ଚାହେଁ । |
| ଊର୍ମିଳା | ଆଗେ କୁହ ତୁମେ କାହାକୁ ଭଲପାଅ । |
| ସାଗର | ମାନେ... |

| | |
|---|---|
| ଉର୍ମିଳା | ମୋ ଦେହକୁ, ମନକୁ, ନା ମୋତେ ? |
| ସାଗର | ଅବାନ୍ତର ଏ ପ୍ରଶ୍ନ । କାରଣ ତୁମେ କଣ ତୁମ ଦେହ, ମନଠାରୁ ଅଲଗା । |
| ଉର୍ମିଳା | ତା' ହେଲେ କୁହ ମୁଁ କିଏ ? |
| ସାଗର | ଉର୍ମିଳା ! |
| ଉର୍ମିଳା | ଯେତେ କହିଲେ ଭାଗବତ ତୋଷ ନ ହେଲା ମୋର ଚିତ୍ତ । |
| ସାଗର | ନ ହେଲେ ଇଚ୍ଛାମତି । |
| ଉର୍ମିଳା | (ପୁଣି ହସି) ଉହୁଁ-ସଠିକ୍ ଉତ୍ତର ନୁହେଁ । |
| ସାଗର | ତା'ହେଲେ ତୁମେ କିଏ ? |
| ଉର୍ମିଳା | ବାସାଂସି ଜୀର୍ଣ୍ଣାନୀ ଯଥା ବିହାୟ । ନବାନୀ ଗୃହ୍ନାତି ନରୋପରାଣି । ତଥାଂ ଶରୀରାଣି ବିହାୟ ଜୀର୍ଣ୍ଣା । ନନ୍ୟାନି ସଂଯାତି ନବାନୀ ଦେହୀ । |
| ସାଗର | ଆହୁରି କହୁନ-ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି, ନୈନଂ ଦହତି ପାବକଃ , ନ ଚୈନଂ କ୍ଲେଦୟନ୍ତ୍ୟାପାଃ, ନ ଶୋଷୟତି ମାରୁତଃ...(ହସି), ତା'ହେଲେ ତୁମେ କ'ଣ ସ୍ୱୟଂ ଶ୍ରୀକୃଷ୍ଣ ? |
| ଉର୍ମିଳା | ନା ନୁହେଁ... । ମୁଁ ସାକାର ପୁଣି ନିରାକାର । ମୁଁ ରୂପ ପୁଣି ଅରୂପ । ମୁଁ ନିରାନନ୍ଦ ପୁଣି ସଚ୍ଚିଦାନନ୍ଦ ସ୍ୱରୂପ । |
| ନୀଳ | ଆହା କି ଅପରୂପ ବର୍ଣ୍ଣନା ସତେ ଅବା ତୁମ ଭିତରେ କିଏ ଯେମିତି ଚେତନାର ସେଇ କାଉଁରୀ କାଠିକୁ ଏବେଏବେ ଛୁଇଁଦେଇ ଯାଇଛି । ଇଚ୍ଛାମତୀର ଇଚ୍ଛା ଆଜି ଯେମିତି ଜ୍ୟୋତିର୍ମୟ ରୂପ ଧାରଣ କରୁଛି । |
| ସାଗର | ପ୍ରହେଳିକା ବନ୍ଦ କର । କୁହ, ତୁମେ ମୋତେ ଚାହଁ କି ନା ? |
| ଉର୍ମିଳା | ନ ଚାହିଁବି କେମିତି ? ଜୀବନ ବଂଚିବାର ଅନ୍ୟନାମ ପରା ଆଶା । ପୁଣି କାମନାର ଭିନ୍ନ ନାମ ମଧ୍ୟ ଆଶା । ଠିକ୍ ଅଛି । ମୁଁ ମୋର ସମସ୍ତ ଆଶା ଆଉ ସମସ୍ତ କାମନାକୁ ଆଜି ଏଇ ମୁହୂର୍ତ୍ତରେ ସମର୍ପଣ କରୁଛି । |
| ସାଗର | କାହା ପାଖରେ ? |
| ଉର୍ମିଳା | ମୋର ପ୍ରଭୁଙ୍କ ପାଖରେ । ମୋର ଭଗବାନଙ୍କ ନିକଟରେ । |
| ସାଗର | ତୁମର ଭଗବାନ ? କାହିଁ କେଉଁଠି ? |
| ଉର୍ମିଳା | ତୁମେଇଁ ତ ମୋର ଭଗବାନ, ମୋର ପ୍ରଭୁ । ତବ ଇଚ୍ଛା ପୂର୍ଣ୍ଣ ସଦା ହେଉ ଭଗବାନ । |
| ସାଗର | ନା ମୁଁ ଭଗବାନ ନୁହେଁ । |
| ଉର୍ମିଳା | ତୁମେ ତାହେଲେ ନୀଳଲୋହିତ ଆଉ ମୁଁ ଇଚ୍ଛାମତୀ । |
| ସାଗର | ମୋ ଭାଷାରେ ତୁମେ ଉର୍ମିଳା ଆଉ ମୁଁ ସାଗର । |
| ଉର୍ମିଳା | ସେଇ ସାଗର ବକ୍ଷରୁ ମୋର ସୃଷ୍ଟି ଆଉ ତା'ରି ବେଳାଭୂମିରେ ହିଁ ମୋର ପରିସମାପ୍ତି । |
| ସାଗର | ଏଇଟା ତା'ହେଲେ କ'ଣ ସମର୍ପଣ ? |
| ଉର୍ମିଳା | ନା-ସମର୍ପଣ ତ ସରିଛି ପ୍ରଥମ ସ୍ପର୍ଶରୁ । ଖାଲି ବାକି ଅଛି ଅଧିଗ୍ରହଣ । ଏବେ ସେତକ ବି ହୋଇଯାଉ । |
| ନୀଳ | ଇସ...ଛି...ଅପରୂପା, ଅରୁପାରୁ ଫେରିଆସି ତୁମେ ଆଜି ପୁଣି କୁରୁପା ହେବାକୁ କ'ଣ ଉଚିତ ମନେକରୁଛ ଇଚ୍ଛାମତୀ ? ସଂଜତ ହୁଅ, ନହେଲେ ରସାତଳଗାମୀ ହେବାକୁ ପଡ଼ିବ... |
| ସାଗର | ଠିକ୍ ଅଛି ? ଏବେ ମୋ ସାଂଗରେ ଆସ... |
| ନୀଳ | ଛି...ଛି...ଛି... (ମୁହଁ ତଳକୁ କରି ବସିଛି) |
| ଉର୍ମିଳା | କୁଆଡ଼େ ? |

ସାଗର — ସେଇ କୁଡ଼ିଆ ଭିତରକୁ ।

ଉର୍ମିଳା — ନା ନା ନା–ସେଠି ପରା ନିଆଁ ଜଳୁଛି । ଆମେ ତା'ରି ଭିତରକୁ ଯିବା ?

ସାଗର — ଆମେ ପତଙ୍ଗ ହୋଇ ସେଥିରେ ଗାଧୋଇବା । ଶୀତଳ କରିବା ଆମ କାମନା ଜର୍ଜରିତ ଦେହକୁ ।

ଉର୍ମିଳା — ନିଆଁରେ ନିଆଁକୁ ଢାଳିଲେ ନିଆଁ ଶୀତଳ ହୁଏନି । ଆହୁରି ପ୍ରଜ୍ୱଳିତ ହୁଏ ।

ସାଗର — ଏବଂ ମୁଁ ଜଳିବାକୁ ଚାହେଁ । ତୁମକୁ ଆଲିଙ୍ଗନ କରି ଜଳିଯିବାକୁ ଚାହେଁ । ଜହ୍ନର ନିଆଁରେ, କାମନାର ଉତ୍ତାପରେ ଆଉ ଶରୀରର ଉତ୍ତେଜନାରେ । ...ଆସ...ଆସ । (ଦୁହେଁ ଚାଲିବାକୁ ଆରମ୍ଭ କଲେ ।)

ନୀଳ — ଇଚ୍ଛାମତୀ...ଇଚ୍ଛାମତୀ (ଅନୁକରଣ କରି ଚାଲିଲେ)

ଇଚ୍ଛାମତୀ — (ହସିଛି ଦୁଷ୍ଟାମିର ହସ) ଏତେଦିନ ପରେ ଆଜି ମୋ ଇଚ୍ଛା ତୁମ ଇଚ୍ଛାରେ ରୂପାନ୍ତରିତ ହୋଇଛି । ଦେଖ ନୀଳ... ଇଚ୍ଛାମତିର ଇଚ୍ଛା ଆଜି ଇଚ୍ଛାମୟଙ୍କ ଇଚ୍ଛାରେ ସମାହିତ ହେବାକୁ ଯାଉଛି । ମୁଁ ଚାହୁଁ ଥିଲି ଏମାନେ ମୋ କୁଡ଼ିଆକୁ ଆସନ୍ତୁ ତା'ହେଲେ ତାଙ୍କ ଇଚ୍ଛା ପୂରଣ ହେଉ ବା ନହେଉ ଅନ୍ତତଃ ମୋ ଦୀର୍ଘଦିନର ପ୍ରତୀକ୍ଷାର ଅନ୍ତ ହୋଇ ଇଚ୍ଛାମତୀର ଇଚ୍ଛା ପୂରଣ ହେବ ।

ନୀଳ — ତୁମର ଭାଷା ଆଉ ବ୍ୟବହାର, ତୁମର କ୍ରିୟା ଆଉ ପ୍ରତିକ୍ରିୟା ମୋତେ କ୍ରମଶଃ ସନ୍ଧିହାନ କରି ତୋଳୁଛି ? ଏ ଯେମିତି ସେ ଇଚ୍ଛାମତୀ ନୁହେଁ, ଭିନ୍ନ ଏକ ଆତ୍ମା ଭିନ୍ନ ଏକ ଶରୀର, ଅଥବା ଏବେ ମୁଁ ଯେଉଁ ଇଚ୍ଛାମତୀକୁ ଦେଖୁଛି ସେ ଅବା ମୋ ଇଚ୍ଛାମତୀର ଅନ୍ୟଏକ ସ୍ୱରୂପ । (ଭିତରୁ ଶୁଭିଲା ଅନ୍ୟମାନଙ୍କର ଡାକ)

ଆକାଶ — (ଭିତରୁ) ସାଗର...ସାଗର... ।

ଉର୍ମିଳା — ଆଃ–ପୁଣି ବିଡ଼ମ୍ବନା–

ସାଗର — ଆମକୁ ଖୋଜି ଖୋଜି ଅନ୍ୟମାନେ ଏଆଡ଼କୁ ଆସୁଛନ୍ତି ।

ଉର୍ମିଳା — ଚାଲ ଲୁଚିଯିବା ।

ସାଗର — କାହିଁକି ?

ଉର୍ମିଳା — ପିଲାଦିନର ଲୁଚକାଳି ଖେଳିବାର ମଜା କ'ଣ ତୁମେ ଭୁଲିଗଲଣି ?

ସାଗର — ଏବେ ତ ଆମେ ଆଉ ପିଲା ନୁହେଁ । ଆମେ ଏବେ ଯୁବକ ।

ଉର୍ମିଳା — ଯୌବନରେ ଲୁଚକାଳି ଖେଳର ମଜା ଆହୁରି ନିଆରା । ପୁଣି ଖେଳ ପରେ ତା' ପରିଣତିର ବ୍ୟଥା, ସବୁଠୁ ନିଆରା । ଯିଏ ଥରେ ମାତ୍ର ଖେଳିଛି ସିଏ ହିଁ ଜାଣିଛି ତା'ର ଦହନ କେତେ କୋମଳ, ଜ୍ୱଳନ କେତେ ମଧୁର ।

ସାଗର — ମୋତେ କିଛି କହିଲ ?

ଉର୍ମିଳା — ନା କିଛି ନୁହେଁ । ତୁମେ ସେଇ ଗଛମୂଳରେ ଲୁଚିଯାଅ । ଆଉ ମୁଁ ସେଇ କୁଡ଼ିଆ ଭିତରେ ଲୁଚିଯାଉଛି । ଚଞ୍ଚଳ ଚାଲ....ସେମାନେ ଆସିଯିବେ ଯେ (ଦୁଇଟି ସ୍ଥାନରେ ଦୁହେଁ ଲୁଚିଗଲେ । କୁଡ଼ିଆ ସହ ଉର୍ମିଳା ଅନ୍ତର୍ଦ୍ଧାନ ହୋଇଗଲା । ପ୍ରବେଶ କଲେ ଅନ୍ୟମାନେ)

ଆକାଶ — ସାଗର–ସାଗର... (ପ୍ରକୃତିକୁ ଦେଖି) ଦେଖିଲ ନିଳୀମା କି ସୁନ୍ଦର ଏ ପ୍ରକୃତି ଆଉ ଏ ଜହ୍ନରାତି । ଏଇ ତୋଫାଜହ୍ନ ଆଲୁଅରେ ତୁମ କବରୀଟା ଗୋଟିଏ ପାହାଡ଼ୀ ଝରଣା ପରି ଚିକ୍‌ଚିକ୍ କରୁଛି ।

ନିଳୀମା — (ଅଭିମାନ କରି) ପାହାଡ଼ୀ ଝରଣା ନୁହେଁମ, କହନ୍ତୁ କାଳ ନାଗୁଣୀ ହୋଇଥିବ ।

ଆକାଶ — ରାଗିଲ ?

ସାଗର — ମୋ କବରୀଟା ତୁମକୁ ଖାଲି ଝରଣା ଭଳି ଦିଶିଲା । ଆଉ ମୁଁ ? ମୋ କଥା ତ କିଛି କହିଲ ନି ।

ସମୀର — କି ସୁନ୍ଦର ରୂପକାନ୍ତି ଅପରୂପ ଛଟା        ଜହ୍ନ ଖେଳେ ଲୁଚକାଳି ତାରା ହଟହଟା

| | |
|---|---|
| | ମେଘର ପଣତ ତଳୁ କିରିକିରି ହସେ ତା' ସାଥେ ହସେ ନିଳୀମା ଆକାଶ ବୁକୁରେ, |
| | ଉଛନ୍ନ ଉର୍ମିଳା ମନ ସାଗର ପାଇଁରେ, ସାଗର ପାଇଁରେ... । |
| | କେମିତି ଲାଗିଲା ମୋ କବିତା ?(ସମସ୍ତେ ହସିଲେ) |
| ଆକାଶ | ଆମ ଆଶୁକବିଙ୍କର ଫାଷ୍ଟଫୁଡ୍ କବିତା, ଚାଓମିନ୍ ଭଳି ଭାରି ମଜାଦାର । ଆମକୁ ହସେଇଦେଲୁ ବନ୍ଧୁ । |
| ସମୀର | କିନ୍ତୁ ଉର୍ମିଳା ତ ହସିଲା ନାହିଁ । ସେ ଆଜି ଭୀଷଣ ଗମ୍ଭୀର ନିରବ । |
| ନୀଳିମା | ସେ ରାଗିଛି । |
| ଆକାଶ | ଝଡ଼ ପୂର୍ବର ନିରବତା । |
| ସମୀର | ତା'ହେଲେ ଆଜି ସାଗରରେ ବାଡ଼ବାଗ୍ନି ଜଳିବ । |
| ଉର୍ମିଳା | ବାଡ଼ବାଗ୍ନି ଜଳୁକି, ଘୂର୍ଣ୍ଣିଝଡ଼ ଆସୁ । ମୁଁ ଆଜି ତାଙ୍କୁ ଛାଡ଼ିବି ନାହିଁ । |
| ନୀଳିମା | କ'ଣ କରିବୁ ? |
| ସମୀର | କାଳୀ କପାଳୀ ନରମୁଣ୍ଡମାଳୀ ମୁଁ ବାସୁଳୀ, ଖାଇବି ଖାଇବି ତା' ମୁଣ୍ଡ ମୋଡ଼ି । |
| ଉର୍ମିଳା | ଓଃ–ତୁମେ ଚୁପ୍‌କର । |
| ନିଳୀମା | ତୁ ତାକୁ ଛାଡ଼ିଲୁ କାହିଁକି ? |
| ଉର୍ମିଳା | ବସ୍‌ଟା ରହୁଁରହୁଁ ତ ତୁମେ ସବୁ ଓହ୍ଲେଇ ପଡ଼ିଲ । ମୁଁ ପର୍ସଟା ଭିତରୁ ଫୋନ୍‌ଟା ଧରି ଆସୁ ଆସୁ ସେ ଗାଏବ । ଫୋନ୍ କଲାବେଳକୁ ଫୋନ୍‌ଟାବି ବାବୁ ସିଟ୍ ଉପରେ ଛାଡ଼ିଦେଇ ଚାଲିଆସିଛନ୍ତି । |
| ସାଗର | (ଗଛର ପଛରୁ ବାହାରି) ତୁମେ ମିଛ କହୁଛ ଉର୍ମିଳା । ତୁମେ ବି' ତ ମୋ ସାଂଗରେ ଆସିଥିଲ । |
| ଉର୍ମିଳା | ହଁ ।...ମୁଁ ଆସିଥିଲି ତୁମ ସାଙ୍ଗରେ ? ଏଠିକି ? କ'ଣ ତୁମ ହାତ ଧରାଧରି ହୋଇ । |
| ସାଗର | (ଥ ଥ ମ ମ ହୋଇ) ନାଇଁମାନେ ମୋ ସାଂଗରେ ନହେଲେ ବି, ମୋ ପଛେ ପଛେ ଆସିଥିଲ । |
| ଉର୍ମିଳା | ଆଉ ମିଛ ଗପ କୁହନି । |
| ସାଗର | ସତ କହୁଛି । ତୁମେ ଏଇଠି ବସିଥିଲ ମୁଁ ଡାକିଲି । ତୁମେ ହସିଉଠିଲ । (ସମସ୍ତେ ହସି ଉଠିଲେ) |
| ଉର୍ମିଳା | ଷ୍ଟପ୍ ଇଟ୍ । ତୁମକୁ ସବୁ ମଜାଲାଗିଛି ନୁହେଁ । |
| ଆକାଶ | ଆମେ କ'ଣ କରିବୁ । ଏଇଟା ତୁମର ପର୍ସନାଲ ମାଟର, ଏଥିରେ ଆମର ମୁଣ୍ଡ ପୂରାଇବା ଠିକ୍ ହେବନି । |
| ଉର୍ମିଳା | ସନ୍ଧ୍ୟାବେଳ ସାରା ତ ମୁଁ ତୁମମାନଙ୍କ ସହିତ ଥିଲି, (ନିଳୀମାକୁ) ତୁ କହୁନୁ । |
| ନିଳୀମା | ଆମେ ସମସ୍ତେ ତ ସାକ୍ଷୀ ଅଛୁ । ସେ ଏଠିକି ଆସିଲା କେତେବେଳେ । |
| ସାଗର | ମୋତେ ବିଶ୍ୱାସ କର, ତୁମେ ଆସି କହିଲ ଚାଲ ସେଦିନର ସେଇ ତଟନିରଞ୍ଜନାର ଖେଳ ଖେଳିବା । ତୁମେ ହେବ ଇଚ୍ଛାମତୀ ଆଉ ମୁଁ ନୀଳଲୋହିତ । |
| ଉର୍ମିଳା | ସେଇଠୁ ତୁମେ ଖେଳଖେଳିବା ଆରମ୍ଭ କରିଦେଲ ନୁହେଁ ? |
| ସାଗର | ନା ପ୍ରଥମେ ମୁଁ ମନାକଲି । କହିଲି ପୋଷାକ କେଉଁଠୁ ପାଇବା ? ତୁମେ କହିଲ ଚାଲ ସେଇ କୁଡ଼ିଆ ଭିତରକୁ ଯିବା ସେଇଠୁ ପୋଷାକ ସଂଗ୍ରହ କରିବା । |
| ନିଳୀମା | ସେଠି କୁଡ଼ିଆ କାହିଁ ? |
| ଉର୍ମିଳା | ଏଇ ନିର୍ଜନ ପ୍ରାନ୍ତରରେ କୁଡ଼ିଆଟିଏ ଆସିବ କାହିଁକି ? କୁଆଡୁ ଆସିବ ? ତୁମେ ମିଛ କହୁଛ । |
| ସମୀର | ଅତୀତର ସ୍ମୃତି ଯଦି କେବେକେବେ, ଦୃଶ୍ୟମାନ ହୁଏ ଆଖି ସାମ୍ନାରେ, ସେତେବେଳେ ଭାବିନିଅ–ତୁମେ ଜଣେ ପ୍ରବୀଣ ଭାବୁକ, ନତୋବା ଜଣେ ବଦ୍ଧ ପାଗଳପ୍ରେମିକ,–ଏଇ ଜୀବନ ଯାତ୍ରାର... । ଆହା... । ତୁମ ପ୍ରେମ ଏକାନ୍ତ ଦୁର୍ଲଭ, ଦୁଷ୍ମନ୍ତ ଓ ଶକୁନ୍ତଳା, ରୋମିଓ ଓ ଜୁଲିଏଟ ପ୍ରେମ ପରି କାଳଜୟୀ ସ୍ମୃତି ବିଜଡ଼ିତ । |

ଉର୍ମିଳା — ତୁମେ ଟିକିଏ ଚୁପ୍ କରିବ ସମୀର... ।

ନିଳୀମା — ଏଇଟା ତ୍ରିବେଣୀ ଛକ ନୁହେଁ ଯେ ଏଠି ବସି ତୁମେ କବିତା ପଢ଼ିଲେ ଫାଷ୍ଟ ଇୟର ଜାଆଁଳା ଗୁଡ଼ାକ ସବୁ ଆସି ତୁମ ପ୍ରେମ ଜାଲରେ ଫସିଯିବେ ।

ଆକାଶ — ତ୍ରିବେଣୀ ଛକ ପୁଣି କେଉଁଟା କି ନିଳୀମା ?

ସମୀର — ଯେଉଁଠାରେ, ତୁମ ଦୁହିଁଙ୍କର-ପାଦ ଦିନେ ଖସିଥିଲା, ପହିଲି ବର୍ଷାରେ । ଅମାନିଆ ଶ୍ରାବଣ ବି, ରିମ୍‌ଝିମ୍ ଗୀତ ଗାଇ ନାଚିଥିଲା କେତେ । ତୁମ ସାଥେ ମିଠା ମିଠା ଶୀତୁଆ ସଞ୍ଜରେ, ହାତକୁ ହାତରେ ଥୋଇ ସେଇ ଛକ ଚାରିପଟେ, ତୁମେ କେତେ ଚକର କାଟିଛ । ଆଉ ଆଜି ବିଦାୟ ବେଳାରେ, ସେ ଛକର ନାଆଁକୁ ବି ଭୁଲି ପକାଇଛ ।

ନିଳୀମା — ଏଥର ବୁଝିଲ ତ ?

ଆକାଶ — ହଁ ବୁଝିଗଲି । ଲେଡ଼ିଜ୍ ହଷ୍ଟେଲ୍ ଆଉ ଜେଣ୍ଟସ୍ ହସ୍‌ଟେଲ୍‌ର ରାସ୍ତା ମିଶି ଯେଉଁଟା କାଣ୍ଟିନ୍‌କୁ ଯାଇଛି । ସେଇ ଛକର ନାଁ ତା'ହେଲେ ତ୍ରିବେଣୀ ଛକ (ହସି) ବାଃ ଚମତ୍କାର । ହେଲେ ଯାର ନାମକରଣ କରିଛି କିଏ ?

ନିଳୀମା — କରିବ ଆଉ କିଏ । ଏଇ ନିଷ୍ଫଳ ପ୍ରେମିକ ।

ସମୀର — ନା ନା...ଯଦିଓ ମୁଁ ଅଦ୍ୟାବଧି ନିଷ୍ଫଳ ପ୍ରେମିକ, ତଥାପି ହତାଶା ନାହିଁ ମନେ, ପ୍ରତୀକ୍ଷା ସରିନି ମୋର । ଏବେ ବି ମୋ ଆଶାର ଇଗଲ ଡେଣାମେଲି ଉଡୁଅଛି, ଛୁଇଁବାକୁ ସେଇ-ଦୂରଦିଗ୍‌ବଳୟ ତଳେ ଲୁଚି ରହିଥିବା, କେଉଁ ଏକ ଅଚିହ୍ନା ଜହ୍ନକୁ ।

ଉର୍ମିଳା — ସମୀର ତୁମେ ଚୁପ୍ କରିବ ନା ଦେଖିବ । ସାଗର ସତ କୁହ ତୁମ କୁଡ଼ିଆ କାହିଁ ? କାହିଁ ତୁମ ପୋଷାକ ? ଏସବୁର ରହସ୍ୟ କ'ଣ ?

ସାଗର — ମୁଁ ବି ଭାବୁଛି । ଏ ସବୁର ରହସ୍ୟ କ'ଣ ? କୁଡ଼ିଆ କ'ଣ ସତରେ ହଜିଗଲା ?.. ଠିକ୍ ଅଛି-ତା'ହେଲେ ପୋଷାକ ? ମୋ ପୋଷାକ ମୁଁ ସେଇ ଗଛମୂଳେ ଉହ୍ଲେଇ ଦେଇଛି । ବିଶ୍ୱାସ ନ ହେଲେ ନିଜେ ଯାଇ ଦେଖ । (ନିଳିମା, ଆକାଶ ଓ ଉର୍ମିଳା ଧାଇଁଗଲେ)

ଉର୍ମିଳା — ଏଠି ତ କିଛି ବି ନାହିଁ । (ସାଗର ଧାଇଁଗଲା)

ସାଗର — ଆଃ...ଏତେ ଅସମ୍ଭବ...

ନିଳୀମା — କୁହ ସାଗର କୁଡ଼ିଆ ସିନା ହଜିଗଲା, ଆଉ ନୀଳଲୋହିତର ପୋଷାକ କ'ଣ ଇଛାମତୀ ନେଇଗଲା ?

ସାଗର — ମୁଁ କିଛି ବୁଝିପାରୁନି । ସବୁ ଯେମିତି କୁହୁଡ଼ି ଭଳି ମିଳେଇ ଯାଇଛି ।

ଉର୍ମିଳା — ଆଉ ମୁଁ । ମୁଁ ପରା ଏଇଠି ଥିଲି ? ଇଛାମତୀ ବେଶରେ ତୁମ ବାହୁ ବନ୍ଧନରେ ।

ସାଗର — ହଁ ଥିଲ । ଆଉ ମୋର ଦୁଇହାତ ଧରି ଟାଣିନେଉଥିଲ ସେଇ କୁଡ଼ିଆ ଭିତରକୁ ।

ଉର୍ମିଳା — ଛି...ଛି... ବନ୍ଦ କର-ପ୍ଲିଜ୍... ।

ସାଗର — ସେତିକିବେଳେ ଦୂରରୁ ଆକାଶର ଡାକ ଶୁଭିଲା । ତୁମେ ମୋତେ କହିଲ ସେଇଗଛ ଆଡୁଆଳରେ ଲୁଚିଯିବାକୁ ଆଉ ନିଜେ ଲୁଚିଗଲ କୁଡ଼ିଆ ଭିତରେ ।

ନିଳୀମା — କିନ୍ତୁ ଲୁଚିଯିବାକୁ କହିଲି କାହିଁକି ?

ସାଗର — ଆମେ ଲୁଚିଗଲେ ତୁମେମାନେ ଆମକୁ ଖୋଜିବେ । ଆଉ ପାଇଗଲା ପରେ ଖୁବ୍ ମଜା ହେବ ।

ଉର୍ମିଳା — ଅଥଚ ଆମେ ଆସି ପହଞ୍ଚିଗଲାବେଳକୁ କେବଳ ତୁମେ ଅଛ । ଆଉ ତୁମର ସବୁ ସ୍ୱପ୍ନ ହଜିଯାଇଛି ।

ସମୀର — ହଜିଗଲ ତୁମେ ସ୍ୱପ୍ନରାଇଜର କୁହୁକିନୀ କନ୍ୟା, ବାର ହାତ କେଶ ତୁମ, ଇନ୍ଦ୍ରନୀଳ ଆଖି, କପାଳେ ଉଦିଆ ଜହ୍ନ କସ୍ତୁରୀ କୁମକୁମ । ଓଠେ ଖିଲିଖିଲି ହସ ମୋନାଲିସା ସମ । ମୋ ବନ୍ଧୁର ସୁନେଲୀ

ସ୍ୱପ୍ନକୁ ଭାଙ୍ଗିଦେଇ, ହଜିଗଲ ତୁମେ । ଅସୁରୁଣୀ ବୁଢ଼ୀର ସେ କୁହୁକ କୁଡ଼ିଆ ବି' ହଜିଗଲା, ସାତତାଳ ପଙ୍କ ତଳେ ଲୁଚିଥିବା ସୁନାରୂପା ତାରକସି ଫରୁଆ ଭିତରେ । ପୁଣିଥରେ ଦେଖାଦିଅ ପ୍ରିୟେ । ଇଚ୍ଛାମତୀ ନ ହେଲେ ବି' ଉର୍ମିଳା ବା ନିଳୀମା ରୂପରେ ।

ଉର୍ମିଳା — ତୁମ ମୁଣ୍ଡ ଆଉ ଗଣ୍ଡିର ରୂପରେ । ଚୁପ୍‌କର ନହେଲେ ପାଟିଟାକୁ ସିଲେଇ କରିଦେବି । (ସାଗରକୁ) ସତ କୁହ କିଏ ସେ...ନହେଲେ...

ଆକାଶ — ତୁମେ ଟିକିଏ ଶାନ୍ତ ହୁଅ ଉର୍ମିଳା !

ଉର୍ମିଳା — କାହିଁକି ଶାନ୍ତ ହେବି ?

ନିଳୀମା — ନ ହେଲେ କ'ଣ କରିବୁ ?

ଉର୍ମିଳା — ତୁ କହ ଏବେ ମୋର କ'ଣ କରିବା ଉଚିତ ? ଏତେ ମିଛ ମୁଁ ବରଦାସ୍ତ କରିବି କିପରି ?

ସାଗର — ମୁଁ ମିଥ୍ୟାବାଦୀ ନୁହେଁ ।

ନିଳୀମା — ତୁମେ ଟିକିଏ ଚୁପ୍‌କର ସାଗର । ତୁମର ସବୁ ମିଛ ଧରାପଡ଼ି ଯାଇଛି ।

ଆକାଶ — ଏବେବି ସମୟ ଅଛି ତୁ ସବୁ ସତ କହିଦେ । ନ ହେଲେ କହିଦେ ଯେ ମୁଁ ତୁମମାନଙ୍କ ସହିତ ଜୋକ୍ କରୁଥିଲି ।

ସାଗର — ନା ଏଇଟା ମଜା ନୁହେଁ ।

ଆକାଶ — ତା'ହେଲେ ତୋର ଏବେ ନୀରବ ରହିବା ଉଚିତ ।

ସାଗର — ମୁଁ ନୀରବ ରହିଲେ, ସମସ୍ତ ସତ୍ୟ ଯେ ଅପ୍ରକାଶିତ ରହିଯିବ ।

ଉର୍ମିଳା — ଆଉ ତୁମର ପ୍ରକାଶିତ ସତ୍ୟ ସବୁ । ଅସତ୍ୟ ସହରର ଅନାବିଷ୍କୃତ ଗଳିମାନଙ୍କ ଭଳି ଅନ୍ତଃସାର ଶୂନ୍ୟ ମନେହେଉଛି ।

ସାଗର — ମୋତେ ବିଶ୍ୱାସ କର ଉର୍ମି...ମୁଁ...

ଉର୍ମିଳା — (କାନ୍ଦି) ଜଣେ ପ୍ରତାରକ ।

ସାଗର — (ଚମକି) କ'ଣ କହିଲ ପ୍ରତାରକ ? କିଏ ପ୍ରତାରକ ? ମୁଁ ନା ମୋର ଏଇ ଦୁଇଆଖି । ଏଇ ଦୁଇ ବାହୁ, ମୋର ସ୍ପର୍ଶ, ମୋର ଶ୍ରବଣ, ଏମାନେ ସମସ୍ତେ କ'ଣ ମୋତେ ପ୍ରତାରିତ କରିଛନ୍ତି ? ନା...ନା... ଅସମ୍ଭବ ।

ନୀଳିମା — ତା'ହେଲେ ସେ ବହୁରୂପୀ କାହିଁ ?

ସାଗର — କେମିତି ତୁମକୁ ବୁଝେଇବି ଯେ ସେ ବହୁରୂପୀ ନଥିଲା । ସେ ଥିଲା ଉର୍ମିଳା । ରୂପରେ, କଥାରେ, ବ୍ୟବହାରରେ ସେଥିଲା ସମ୍ପୂର୍ଣ୍ଣ ଉର୍ମିଳା । କିନ୍ତୁ ତୁମେମାନେ ଯଦି ଏକଥା ଅସ୍ୱୀକାର କରୁଛ, ତାହେଲେ ମୁଁ କହିବି, ହୁଏତ ବା ସେ ଥିଲା ଇଚ୍ଛାମତୀ । ଉର୍ମିଳାର ରୂପନେଇ ଆସିଥିଲା । ଆପଣା ଇଚ୍ଛାରେ ଘରଟିଏ ତୋଳି, ଆମନ୍ତ୍ରଣ କରିଥିଲା ମୋତେ । ନିଜେ ପୁଣି ଫେରିଗଲା ଆପଣା ଇଚ୍ଛାରେ । ବିଶ୍ୱାସ କର ! ମୋର ଏ କଥା ସବୁ ଅକ୍ଷରେ ଅକ୍ଷରେ ସତ୍ୟ ଠିକ୍ ତୁମରିମାନଙ୍କ ଉପସ୍ଥିତି ଭଳି । ହୁଏତ ବା ତୁମମାନଙ୍କ ପାଇଁ ଏକଥା ସବୁ ମିଛ । ମିଛ ଠିକ୍ ମୋର ଏଇ କାହାଣୀ ଭଳି । (କାନ୍ଦିଲା)

ନିଳୀମା — ଉର୍ମିଳା, ହୁଏତ ସାଗର ଠିକ୍ କହୁଥାଇପାରନ୍ତି ।

ଆକାଶ — ହୁଏତ ବା ଇଚ୍ଛାମତୀ ତୁମରି ରୂପ ନେଇ ଆସିଥାଇପାରେ ।

ଉର୍ମିଳା — ଏକଥାକୁ ତୁମେମାନେ ବିଶ୍ୱାସ କରିପାରୁଛ ? ଅଶରୀରି, ପ୍ରେତାତ୍ମା, ଭୂତ, ନାନା...ଅସମ୍ଭବ । ସବୁ ମିଛ କଥା ।

ସମୀର — ମିଛ ଏଠି, ସବୁ ମିଛ । ମିଛେ ଯେବେ ଭରା ମୋ ଅନ୍ତର । ମିଛ ଏଠି ଜୀବନ, ଯୌବନ, ମିଛ ଏଣୁ

ପ୍ରେମ ଓ ସପନ । ମିଛ ପୁଣି ସଂସାର, ସମ୍ପର୍କ । ପିତା, ମାତା, ପତ୍ନୀ, ପୁତ୍ର ସବୁ ଖାଲି ମିଛ, ମିଛମରୁ-ମରୀଚିକା ସମ । ତଥାପି ଅନ୍ତରତକୁ କିଏ ଧିରେ କହେ, ସତ୍ୟ ଏଠି ସବୁ ସତ୍ୟ...ବିଶ୍ୱାସରେ ଯେବେ ଭରା ମୋ ଅନ୍ତର, ସତ୍ୟ ଏଠି ଗଉଡୁଣି ପାଇଥିବା ମୁଦିର କାହାଣୀ । ସତ୍ୟ ଏଠି ଧର୍ମପଦ, ଦାସିଆ ଜୀବନୀ, ସତ୍ୟ ଏଠି ଗାନ୍ଧୀ ଆଉ ଗୋପବଂଧୁ ଗାଥା, ସତ୍ୟ ପୁଣି କେତେ ତ୍ୟାଗ, ବଳୀଦାନ କଥା, କେଦାରଗୌରୀର ପ୍ରେମ, ବାଇମୁଣ୍ଡି ଦାନ, ସବୁ ସତ୍ୟ, ସବୁ ସତ୍ୟ, ଧନ୍ୟ ଧନ୍ୟ ଏ ଜୀବନ...।।

ସାଗର — ଯାହା ହେଉ କେହି ଜଣେ ତ ମୋ କଥାକୁ ବିଶ୍ୱାସ କରିପାରିଲା ।

ଊର୍ମିଳା — ସେଇଟା ପାଗଳ, କବିତା ପାଗଳ, ପ୍ରେମ ପାଗଳ ବି ।

ପ୍ରଫେସର — (ଭିତରୁ ଡାକିଲେ) ଆକାଶ...ସାଗର...

ଆକାଶ — ଚାଲ ଫେରିଯିବା । ସାର୍‌ଙ୍କ ଡାକ ଶୁଭିଲାଣି ।

ସମୀର — ତୁମେମାନେ ସବୁ ଯାଅ । ଆମେ ଆଉ ଟିକିଏ ଖୋଜା ଖୋଜି କରିଯିବା । ଆସ ଆକାଶ ।

ନିଳୀମା — (ଆକାଶକୁ ଟାଣିନେଇ) କାହାକୁ ଖୋଜିବ ? ଇଚ୍ଛାମତୀକୁ ? ଆଗ ଏ ଇଚ୍ଛାମତୀର ଇଚ୍ଛାସବୁ ପୂର୍ଣ୍ଣ କରିସାର । ଆସ। (ସମସ୍ତେ ପ୍ରସ୍ଥାନ କଲେ । ସମୀର କିନ୍ତୁ ଖୋଜିଚାଲିଥିଲା)

ସମୀର — ଘୁରିଘୂରିକା ନାରୀ, ଯିଏ ପାଇବ ତାହାରି... ଚକାଚକା ଭଉଁରୀ, କାଚକେନ୍ଦୁ ପୋଖରୀ, ପୋଖରୀ ଭିତରେ କଇଁ, ହସୁଥାଏ କିରିକିରି, ତାକୁ ତୋଳିବାକୁ ହାତ ବଢ଼ାଇଲେ, ଘୁଞ୍ଚିଯାଏ ଥିରିଥିରି... । ଘୁରିଘୂରିକା ନାରୀ ଯିଏ ପାଇବ ତାହାରି ।

ପ୍ରଫେସର — (ପ୍ରବେଶୀ) କ'ଣ ଖୋଜୁଛ ସମୀର...?

ସମୀର — ନାଲି ଟୁକୁଟୁକୁ ସାଧବବୋହୂ ଖୋଜୁଛି ସାର୍ ।

ପ୍ରଫେସର — ରାତି ଅଧରେ ?

ସମୀର — ଏଇ ରାତିଅଧରେ ଆପଣ ବି' ତ କାହାକୁ ଖୋଜି ବାହାରିଛନ୍ତି ବୋଲି ମନେହେଉଛି ।

ପ୍ରଫେସର — ନିଜକୁ ଖୋଜୁଥିବା ମଣିଷମାନଙ୍କ ପାଇଁ ରାତିଦିନ ସବୁ ସମାନ ହୋଇଯାଏ ସମୀର... ।

ସମୀର — ତଥାପି ଖୋଜିବା ସରେନି ।

ପ୍ରଫେସର — କେଉଁଠି କାହାକୁ ସବୁ ଖୋଜିଛ ଯେ ତୁମ ଖୋଜିବା ସରିନି ।

ସମୀର — ଖୋଜିଛି ମୁଁ ଉପନ୍ୟାସର ପ୍ରତିଟି ପୃଷ୍ଠାରେ, କାହାଣୀର ପ୍ରତିଟି ଛତ୍ରରେ । କାବ୍ୟ କବିତାର ପ୍ରତିଟି ଶବ୍ଦରେ...

ପ୍ରଫେସର — ତା'ହେଲେ ତ ନିଶ୍ଚୟ ପାଇଥିବ କିଛି ?

ସମୀର — ପାଇଛି ମୁଁ, ଅନେକ ପାଇଛି,...ପୁଣି ପାଇନି ମୁଁ, କିଛି ବି ପାଇନି । ପାଉଛି ମୁଁ ଯାହାସବୁ ଏଇ ମୁହୂର୍ତ୍ତରେ, ହଜେଇ ଦେଉଛି ସବୁ ପର ମୁହୂର୍ତ୍ତରେ, ସାଇତି ରଖିପାରୁନି କିଛି ବି ସଯତ୍ନେ । ହୃଦୟ ମୋ ଶୂନ୍ୟ, ତେଣୁ ଅନ୍ତର ବି' ଖୋଲା ପଡ଼ିଅଛି । ଅଥଚ ଖୋଜିବା ସରିନି ମୋର, ଖୋଜୁଛି ମୁଁ ଖୋଜୁଥିବି ଚିରକାଳ, ପ୍ରତିଟି ଶ୍ୱାସରେ ଅଥବା ମୋ ଦୃଷ୍ଟିର ପ୍ରତି ପଲକରେ ।

ପ୍ରଫେସର — ପାଇଗଲେ କରିବ କ'ଣ ?

ସମୀର — (କବିତା) ତାହାରି ଆଖିରେ ମାପିବି ମୁଁ ସାଗରର ଗଭୀରତା କେତେ । ତା'ରି କବରୀ ନେଇ ବାନ୍ଧିବି ମୁଁ ଆକାଶର ସମସ୍ତ ନିଳୀମା । ଓଠର ପିଆଲା ତା'ର ଚାହିଁ ପିଇଯିବି ସୁଖର ଅମୃତ । ମତୁଆଲା ଅନୁଭୂତି ସବୁ ବୁଣିଦେବି ଫୁଲ ପାଖୁଡ଼ାରେ । ହୃଦୟକୁ ଖୋଲିଦେଇ-ମୃତ୍ୟୁରେ ବି ଗାଉଥିବି ପ୍ରେମର କବିତା ।

ପ୍ରଫେସର — ସାଗର ଖୋଜିଲା ପରି ତୁମେ ଆଉ ଇଚ୍ଛାମତୀକୁ ଖୋଜୁନ ତ ?

ସମୀର — (ହସି) ମୁଁ କ'ଣ ଏକା ଖୋଜୁଛି ସାର୍... ଯୌବନ ଆସିଲେ ଆପଣ, ମୁଁ, ଆମେ ସମସ୍ତେ ଲୁଚି

ଲୁଚି କେବଳ ତ ଇଚ୍ଛାମତୀକୁ ହିଁ ଖୋଜିଥାଉଁ ।

ପ୍ରଫେସର — (ଦୀର୍ଘଶ୍ୱାସ) ଅଥଚ ଇଚ୍ଛାମତୀର ପ୍ରେମ କେବଳ ନୀଳଲୋହିତମାନଙ୍କ ଭାଗ୍ୟରେ ହିଁ ଲେଖାଥାଏ ।

ସମୀର — ତଥାପି ଅନେକ ବ୍ୟକ୍ତି କେବଳ ଇଚ୍ଛାମତୀକୁ ଖୋଜି ଖୋଜି ଜୀବନ ବିତେଇ ଦେବାକୁ ଭଲ ପାଆନ୍ତି । ଠିକ୍ ଆପଣଙ୍କ ଭଳି ।

ପ୍ରଫେସର — (ହସି) ତୁମେ ବି' ତ ସେଇ ଭାଡ଼ିର ପାରା । ସେଇ ଲାଉର ମଞ୍ଜି ।

ସମୀର — ଆପଣ ଏବେ ଏକା ଏକା ଖୋଜିବା ଜାରି ରଖନ୍ତୁ ସାର୍, ମୁଁ ଚାଲିଲି ।

ପ୍ରଫେସର — କାହିଁକି ତୁମ ଖୋଜିବା କ'ଣ ସରିଗଲା ?

ସମୀର — ନା... କିଏ କହିଲା ସରିଗଲା ବୋଲି । ମୁଁ ଖୋଜିବି କିନ୍ତୁ ଏଠି ନୁହେଁ, ଭିନ୍ନ ଏକ ଗଳିର ଅନ୍ୟଏକ ଠିକଣାରେ । କାରଣ ଏ ଠିକଣାକୁ ବାଟ ତ ଆଉ ଅମଡ଼ା ବାଟ ହୋଇ ରହିଲା ନାହିଁ । ମୋତେ କିନ୍ତୁ ଅମଡ଼ାବାଟର ଠିକଣା ଖୋଜିବାର ଅଛି । (ପ୍ରସ୍ଥାନ)

ପ୍ରଫେସର — ଅମଡ଼ାବାଟର ଠିକଣା । (ହସି) ଚିହ୍ନାବାଟରେ ଚାଲୁଚାଲୁ ମଣିଷ କେତେଥର ଝୁଣ୍ଟି ପଡୁଛି ତା'ର ଠିକଣା ନାହିଁ । ସାମର୍ଥ୍ୟ ଥିଲେ ଝାଡ଼ିଝୁଡ଼ି ହୋଇ ଆଗକୁ ଚାଲୁଛି, ନହେଲେ ମାଟି ହାମୁଡ଼େଇ ସେଇ ଠିକଣାକୁ ଜାବୁଡ଼ି ସେଇଠି ଶୋଇପଡୁଛି । ମାଟି ହୋଇଯାଉଛି, (ଦୀର୍ଘଶ୍ୱାସ) (ଇଚ୍ଛାମତୀକୁ ଖୋଜିଲେ ଓ ଡାକିଲେ) ଇଚ୍ଛାମତି ! ମୁଁ ତୁମକୁ ଖୋଜୁଛି ଇଚ୍ଛାମତି ! ମୋ ମନରେ ଅନେକ ଜିଜ୍ଞାସା । ଅନେକ ଅସମାହିତ ପ୍ରଶ୍ନ ସବୁ । ଥରେ ଆସି ତା'ର ଉତ୍ତର ଦେଇଯାଅ । କ'ଣ ହେଲା ନୀଳ ଲୋହିତର ଭବିଷ୍ୟତ ? ତୁମ ଦୁହିଁଙ୍କର ସ୍ୱପ୍ନ କ'ଣ ସାକାର ହେଲା ? ତୁମମାନଙ୍କର ସମ୍ପର୍କ କ'ଣ ସାଂସାରିକ ସମ୍ପର୍କରେ ରୂପାନ୍ତରିତ ହେଲା ନା ନାହିଁ ? ଥରେ ମାତ୍ର ଆସି ତା'ର ଉତ୍ତର ଦେଇଯାଅ ଇଚ୍ଛାମତୀ।

ନିଳୀମା — (ପ୍ରବେଶୀ, ହସିଲେ) ସାର୍ : ଆପଣ ବି ପାଗଳଙ୍କ ଭଳି ଇଚ୍ଛାମତିକୁ ଖୋଜି ଖୋଜି ଏଠାକୁ ଚାଲିଆସିଛନ୍ତି ନୁହେଁ ?

ପ୍ରଫେସର — ତୁମେ କେମିତି ଜାଣିଲ ?

ନିଳୀମା — ଆପଣ ପରା ଏଇନେ ଇଚ୍ଛାମତୀକୁ ଡାକୁଥିଲେ ।

ପ୍ରଫେସର — ତୁମେ ଏଠାକୁ କାହିଁକି ଆସିଲ ?

ନିଳୀମା — ଆପଣଙ୍କୁ ଡାକିବାକୁ । ଖାଇବେ ଚାଲନ୍ତୁ ।

ପ୍ରଫେସର — ଆଉ କାହାକୁ ପଠେଇପାରିଥାନ୍ତ ? ତୁମେ ଝିଅପିଲାଟା ଏତେ ରାତିରେ ଏକା ଏକା ମୋ ପାଖକୁ ଆସିବାଟା ଠିକ୍ ହେଲାନି ।

ନିଳୀମା — ରାତିରେ ଏକା ଏକା ଝିଅପିଲାଟାଏ ଦେଖିଲେ ଆପଣଙ୍କୁ କ'ଣ ପାଦ ଖସିଯିବାର ଡର ଲାଗେ ? ନା ଆଉ କିଛି ?

ପ୍ରଫେସର — ମାନେ ତୁମେ କ'ଣ କହିବାକୁ ଚାହଁ ?

ନିଳୀମା — ନା କିଛି ନୁହେଁ । ଖାଇବେ ଚାଲନ୍ତୁ ।

ପ୍ରଫେସର — ତୁମେ ଯାଅ । ମୁଁ ଯାଉଛି ।

ନିଳୀମା — ଠିକ୍ କଥା । ଆପଣ ମୋ ସାଂଗରେ ଏକାଏକା ଏତେ ରାତିରେ ଯିବେ କେମିତି ? କାଳେ କିଏ ଦେଖିବ ? କ'ଣ ନାଇଁ କ'ଣ ଭାବିବ ? କମେଣ୍ଟ କରିବ । ଆପଣଙ୍କ ଚରିତ୍ର ଉପରେ ତା'ର କୁପ୍ରଭାବ ପଡ଼ିବ । ଠିକ୍ ଅଛି ମୁଁ ଯାଉଛି । ଆପଣ ବରଂ ଏଠି ବସି କବର ଖୋଳି କଙ୍କାଳମାନଙ୍କୁ ଖୋଜନ୍ତୁ ଆଉ ତା' ସାଂଗରେ କଥା ହୁଅନ୍ତୁ । ଓଡ଼ିଆ ଅଧ୍ୟାପକରୁ ପ୍ରତ୍ନତତ୍ତ୍ୱବିତ୍ ପାଲଟିଯିବେ ।

ପ୍ରଫେସର — ତୁମେ କାହିଁକି ଏମିତି ଭାବୁଛ ? ମୁଁ ଖୋଜୁଛି କବର । କାହାର ?

| | |
|---|---|
| ନିଳୀମା | ଇଚ୍ଛାମତିର । |
| ପ୍ରଫେସର | ମିଛ କଥା । ଏହା ତୁମର ଅନୁମାନ । |
| ନିଳୀମା | ତା'ହେଲେ ତାକୁ ଖୋଜୁଛନ୍ତି କାହିଁକି ? |
| ପ୍ରଫେସର | ତା' ବିଷୟରେ ଆହୁରି ଅନେକ କିଛି ଜାଣିବାର ଇଚ୍ଛା ଅଛି । |
| ନିଳୀମା | ଅଧିକ ଆଉ କ'ଣ ଜାଣିବେ ? ସବୁତ ନାଟ୍ୟକାର ଲେଖିଦେଇ ଯାଇଛନ୍ତି । |
| ପ୍ରଫେସର | ସାହିତ୍ୟର ଅଧ୍ୟାପକ ଭାବରେ ଯେତେଥର ସେ ନାଟକକୁ ମୁଁ ପଢ଼ିଛି । ଇଚ୍ଛାମତିର ଚରିତ୍ର ମୋତେ ସେତେ ଆକର୍ଷିତ କରୁଛି । ମୁଁ ତାକୁ ଯେତେ ଅନ୍ୱେଷଣ କରିବାର ପ୍ରୟାସ କରିଛି, ଉନ୍ମୋଚନ କରିବାର ପ୍ରୟାସ କରିଛି । ସେତେ ସେତେ ଭିନ୍ନ ରୂପ। ହୋଇଉଠୁଛି ଇଚ୍ଛାମତିର ରୂପ । |
| ନିଳୀମା | ତେଣୁ ତାକୁ ଦେଖିବାର  ଇଚ୍ଛାରେ ପାଗଳ ହୋଇ ଉଠିଛନ୍ତି ଆପଣ । |
| ପ୍ରଫେସର | ନା-ଦେଖିବାର ଇଚ୍ଛାଠାରୁ ତାକୁ ଅଧିକ ଚିହ୍ନିବାର ଇଚ୍ଛା, ଅଧିକ ଜାଣିବାର ଇଚ୍ଛା ମୋତେ ପ୍ରଲୁବ୍ଧ କରୁଛି । |
| ନିଳୀମା | ଓ...ଓ... ତେଣୁ ତାକୁଇ ଖୋଜି ଖୋଜି ଆପଣ ଅବିବାହିତ ହୋଇ ରହିଯାଇଛନ୍ତି ନୁହେଁ ? |
| ପ୍ରଫେସର | (ହସି) ଏ ଧାରଣା ତୁମର କାହିଁକି ହେଲା ? |
| ନିଳୀମା | ଏକା ମୋର ନୁହେଁ, ସବୁ ସହପାଠୀମାନଙ୍କର ସେଇ ଏକା ଧାରଣା । ଆପଣ ତାକୁ ବହୁତ ଭଲ ପାଆନ୍ତି ନୁହେଁ ? |
| ପ୍ରଫେସର | (ନୀରବ) |
| ନିଳୀମା | ନୀରବ ରହିଲେ ଯେ । |
| ପ୍ରଫେସର | ସତ୍ୟକୁ ସାମ୍ନାକରିବାକୁ ନିରବତାଠାରୁ ସରଳ ରାସ୍ତା ଆଉ କିଛି ନାହିଁ ବୋଧହୁଏ ? |
| ନିଳୀମା | (ହସିଛି) ତା'ମାନେ, ''ମୌନେ ସମ୍ମତି ଲକ୍ଷଣମ୍ ।'' ଆପଣ କ'ଣ ଭାବୁଛନ୍ତି ? ଇଚ୍ଛାମତି କ'ଣ ଫେରିଆସିବ ? |
| ପ୍ରଫେସର | ତଥାପି ତା'ର ସ୍ମୃତିକୁ ମୁଁ ସାଇତି ରଖିଛି । |
| ନିଳୀମା | ତାକୁ ଭୁଲିଯାଆନ୍ତୁ । |
| ପ୍ରଫେସର | ନିଆଁକୁ ଉଖାରି ଦେଲେ ତାହା ଲିଭିଯାଏନି ବରଂ ଅଧିକ ପ୍ରଜ୍ୱଳିତ ହୋଇଉଠେ । |
| ନିଳୀମା | ଆପଣ କ'ଣ ତାକୁ ଭୁଲିଯିବାକୁ ଚାହାନ୍ତି ନାହିଁ ? |
| ପ୍ରଫେସର | (ବିରକ୍ତ ହୋଇ) ଆଃ...ବନ୍ଦକର ! (ନିରବତା) ଆଚ୍ଛା ଇଚ୍ଛାମତୀ ପ୍ରସଙ୍ଗରେ ଆଲୋଚନା କରିବାକୁ ତୁମେ କାହିଁକି ଚାହୁଁଛ ? |
| ନିଳୀମା | ଆଉ ଦୁଇମାସ ପରେ ପରୀକ୍ଷା । ତେଣୁ ଇଚ୍ଛାମତୀ ସମ୍ପର୍କରେ ଥିବା ମୋର ସନ୍ଦେହ ସବୁକୁ ମୁଁ ଦୂର କରିନେବାକୁ ଚାହେଁ । |
| ପ୍ରଫେସର | ତୁମ ସବୁ ପ୍ରଶ୍ନର ଉତ୍ତର ହୁଏତ ମୁଁ ଦୂର କରି ନପାରେ... (ଦୀର୍ଘଶ୍ୱାସ) ତଥାପି ପଚାର କ'ଣ ଜାଣିବାକୁ ଚାହଁ । |
| ନିଳୀମା | ଇଚ୍ଛାମତି କ'ଣ ଏକ କାଳ୍ପନିକ ଚରିତ୍ର ? |
| ପ୍ରଫେସର | ଐତିହାସିକ ପୃଷ୍ଠଭୂମିରୁ ତାହା ସତ୍ୟ । |
| ନିଳୀମା | ଇତିହାସ କ'ଣ ସବୁ ସମସାମୟିକ ଚରିତ୍ରମାନଙ୍କୁ ନିଜର ପୃଷ୍ଠାରେ ବାନ୍ଧିରଖିପାରେ ? |
| ପ୍ରଫେସର | ନା-ଅସମ୍ଭବ । |
| ନିଳୀମା | ତତ୍‌କାଳୀନ ସମାଜରେ ଲକ୍ଷଲକ୍ଷ ବୌଦ୍ଧଭିକ୍ଷୁମାନଙ୍କ ମଧ୍ୟରୁ ଇଚ୍ଛାମତୀ ନାମକ ଜଣେ ବୌଦ୍ଧ |

| | |
|---|---|
| | ଭିକ୍ଷୁଣୀ ରହିଥିବା କ'ଣ ଅସମ୍ଭବ ? |
| ପ୍ରଫେସର | ହୁଏତ ନା । ତେବେ ଇଚ୍ଛାମତୀ ଭଳି ଏକ ନାମ... |
| ନିଳୀମା | କୁମତି, ସୁମତୀ, ରୂପବତୀ, ଲାବଣ୍ୟବତୀ ଯଦି ନାଁ ହୋଇପାରେ ତା'ହେଲେ ଇଚ୍ଛାମତୀ ଭଳି ନାଁ ଅସମ୍ଭବ ହେବ କାହିଁକି ? |
| ପ୍ରଫେସର | ତୁମ ଯୁକ୍ତି ଠିକ୍ ଅଛି । ତଥାପି ଏମିତି ନାମ ସଚରାଚର ଦେଖାଯାଏ ନାହିଁ । |
| ନିଳୀମା | ଏ ବିଷୟରେ ଆପଣ କେବେ ନାଟ୍ୟକାରଙ୍କ ସହ କଥାହୋଇଛନ୍ତି ? ପଚାରିଛନ୍ତି ନାଟକ ଲେଖିଲାବେଳେ ସେ ଚରିତ୍ରଟି ଅନ୍ୟମାନଙ୍କ ଭଳି ତାଙ୍କ ଲେଖନୀକୁ ଆଲୋଡ଼ିତ କରିଥିଲା କି ନାହିଁ ? ଇଚ୍ଛାମତୀର ବକ୍ତବ୍ୟ ସବୁ ତାଙ୍କ କବିପ୍ରାଣକୁ ଉଦ୍‌ବେଳିତ, ରୋମାଞ୍ଚିତ କରିଥିଲା କି ନାହିଁ ? |
| ପ୍ରଫେସର | ନା–ପଚାରିନାହିଁ କାରଣ ଆବଶ୍ୟକ ମନେକରି ନାହିଁ । |
| ନିଳୀମା | ଆପଣ ବି ସେଇ ନୀଳଲୋହିତଙ୍କ ଭଳି, ଅନ୍ୟମାନଙ୍କର ଦେଖାଇଥିବା ରାସ୍ତାରେ ଚାଲିବାକୁ ଭଲ ପାଉଥିବା ମଣିଷଟିଏ ନିଜ ପାଇଁ ଭିନ୍ନ ଏକ ରାସ୍ତା ନିଜେ କେବେ ଆବିଷ୍କାର କରିବାକୁ କିମ୍ବା ସୃଷ୍ଟି କରିବାକୁ ଚାହାନ୍ତି ନାହିଁ । |
| ପ୍ରଫେସର | ଏ ତୁମେ କ'ଣ କହୁଛ ନିଳୀମା । |
| ନିଳୀମା | ଠିକ୍ କହୁଛି । ସେ ଚରିତ୍ର ସମ୍ପର୍କରେ ଆପଣଙ୍କର ଆହୁରି ଅନୁସନ୍ଧାନ କରିବାର ଥିଲା । ଆହୁରି ଅନେକ ପ୍ରଶ୍ନ ପଚାରିବାର ଥିଲା । |
| ପ୍ରଫେସର | କାହାକୁ ? ନାଟ୍ୟକାରଙ୍କୁ ? |
| ନିଳୀମା | ଅନେକଙ୍କୁ ? ନାଟ୍ୟକାରଙ୍କୁ, ଦର୍ଶକମାନଙ୍କୁ, ପାଠକ, ସମାଲୋଚକ ସମସ୍ତଙ୍କୁ । ଏମିତିକି ଆପଣାମନର ଅନ୍ତଃସ୍ୱରକୁ ଯାଇ ପଚାରିବାକୁ ଥିଲା ନିଜକୁ । ତା'ହେଲେ ଜାଣିପାରିଥାନ୍ତେ ଇଚ୍ଛାମତି ସେମାନଙ୍କ କେତେ ଆପଣାର କେତେ ନିଜର । ଏମିତି ଆପଣାର ମଣିଷମାନେ କଣ କେବେ କାଳ୍ପନିକ ହୋଇପାରନ୍ତି ସାର୍ ?(କାନ୍ଦିବା) |
| ପ୍ରଫେସର | (କୋହରେ) ତୁମେ ହୁଏତ ସତ କହୁଥାଇପାର । |
| ନିଳୀମା | ମୁଁ ସତକଥା ହିଁ କହୁଛି ସାର୍ । ନହେଲେ ଗୌତମଙ୍କ ଭଳି ଜଣେ ଦୂରଦ୍ରଷ୍ଟାଙ୍କ ଦୃଷ୍ଟିକୁ ସିଏ ଆକର୍ଷିତ କରିପାରି ନଥାନ୍ତା । ନିଜ ଆବିଷ୍କୃତ ସତ୍ୟର ଦୃଷ୍ଟିକୋଣରେ ଭିନ୍ନତା ଆଣିବାକୁ ସେ ଗୌତମଙ୍କୁ ବାଧ କରିପାରି ନଥାନ୍ତା । |
| ପ୍ରଫେସର | ନା ! ସେ ଗୌତମଙ୍କୁ ବାଧ କରି ନଥିଲା । ବରଂ ଗୌତମ ତା'ର ଯୁକ୍ତି ଶୁଣି ନିଜ ଦୃଷ୍ଟିକୁ ଭିନ୍ନମୁଖୀ କରିନେବାକୁ ଚାହିଁଥିଲେ । |
| ନିଳୀମା | ସବୁ ମହାନ ବ୍ୟକ୍ତିତ୍ୱମାନଙ୍କର ହୃଦୟ ଯେତେ ବିଶାଳ ସେମାନଙ୍କ ମନ ତା'ଠାରୁ ବେଶି କୋମଳ ଆଉ ବ୍ୟାପକ । |
| ପ୍ରଫେସର | ଆମେ କାହିଁକି ସେମିତି ହୋଇପାରୁନା.... |
| ନିଳୀମା | କାରଣ ଆମେ ସେମିତି ହେବା ପାଇଁ ଚେଷ୍ଟା କରୁନା । |
| ପ୍ରଫେସର | ମାଳୀ ଲଗେଇ ଥିବା ସବୁ ଗଛରେ ଫୁଲ ଫୁଟେନା କି ଫଳ ବି ଧରେନା । |
| ନିଳୀମା | ସତ କହିଲେ ସାର୍, ମୁଁ କ'ଣ ଆପଣଙ୍କ ପାଇଁ ଏବେ ଜଣେ କାଳ୍ପନିକ ଚରିତ୍ର ? |
| ପ୍ରଫେସର | ନା କେବେ ନୁହେଁ । |
| ନିଳୀମା | ଧରନ୍ତୁ ମୁଁ ଯଦି କାଲି ନ ରହେ । ତା'ହେଲେ ଆପଣ କ'ଣ ମୋତେ ଜଣେ କାଳ୍ପନିକ ଚରିତ୍ର ବୋଲି ଘୋଷଣା କରିବେ ? |

| | |
|---|---|
| ପ୍ରଫେସର | ଆଦୌ ନୁହେଁ । |
| ନିଳୀମା | ତା'ହେଲେ ଇଚ୍ଛାମତୀର ସମ୍ଭାବନାକୁ ଆପଣ ସ୍ୱୀକାର କରୁନାହାନ୍ତି କାହିଁକି ? |
| ପ୍ରଫେସର | ସ୍ୱୀକାର କଲେ ଲାଭ କ'ଣ ହେବ ? |
| ନିଳୀମା | ସତ୍ୟକୁ ସ୍ୱୀକାର କରିବାର ଆନନ୍ଦ ପାଇବେ । |
| ପ୍ରଫେସର | ସତ୍ୟକୁ ସ୍ୱୀକାର କଲେ ମୋ ପ୍ରଶ୍ନର ଉତ୍ତର ତ ଆଉ ମିଳିଯିବ ନାହିଁ । ମୋ ପ୍ରଶ୍ନ ସବୁର ଉତ୍ତର ଦେବ କିଏ ? |
| ନିଳୀମା | ନାଟ୍ୟକାରଙ୍କୁ ପଚାରୁ ନାହାନ୍ତି । |
| ପ୍ରଫେସର | ନା–ଏ ପ୍ରଶ୍ନ ନାଟକର ପ୍ରଶ୍ନ ନୁହେଁ ବରଂ ଏହା ନାଟକ ପରର ବ୍ୟକ୍ତିଗତ ପ୍ରଶ୍ନ ସବୁ । ତେଣୁ ମୁଁ ନାଟ୍ୟକାରଙ୍କୁ ଅଯଥା ବିରକ୍ତ କରିବାକୁ ଚାହେଁ ନାହିଁ । |
| ନିଳୀମା | ତା'ହେଲେ ଉତ୍ତର କେଉଁଠୁ ପାଇବେ ? |
| ପ୍ରଫେସର | ମୋ ପ୍ରଶ୍ନର ଉତ୍ତର କେବଳ ଦୁଇଜଣ ଦେଇପାରିବେ । ଜଣେ ନୀଳଲୋହିତ ଅନ୍ୟଜଣେ ଇଚ୍ଛାମତୀ । |
| ନିଳୀମା | (ହସିଛି ବେଦମ ହସ) ବେଶ୍ ତ ଆପଣ ନିଜେ ନୀଳଲୋହିତ ହୋଇଯାଆନ୍ତୁ ନା । |
| ପ୍ରଫେସର | କେମିତି ? |
| ନିଳୀମା | ଆଗେ ଆଖି ବନ୍ଦ କରିନିଅନ୍ତୁ । |
| ପ୍ରଫେସର | କିନ୍ତୁ ଇଚ୍ଛାମତୀ କାହିଁ ? |
| ନିଳୀମା | କିଛି ସମୟ ପାଇଁ ମୁଁ ଇଚ୍ଛାମତୀ ହୋଇଯାଉଛି । |
| ପ୍ରଫେସର | କିନ୍ତୁ...(ଆଖି ଖୋଲିଲେ) |
| ନିଳୀମା | ଆଉ କିନ୍ତୁ ତଥାପିର ପ୍ରଶ୍ନ ନକରି ଆପଣ ଆଗ ଆଖି ବନ୍ଦ କରନ୍ତୁ ଏବଂ ଧ୍ୟାନସ୍ଥ ହୋଇଯାଆନ୍ତୁ । (ପ୍ରଫେସର ଧ୍ୟାନସ୍ଥ ହେଲେ) ଏଥର ପଚାରନ୍ତୁ କ'ଣ ପଚାରିବାକୁ ଚାହାନ୍ତି ? |
| ପ୍ରଫେସର | ଗୌତମଙ୍କ ନିର୍ବାଣ ପ୍ରାପ୍ତି ପରେ, ସେମାନେ କ'ଣ ସଂସାରକୁ ଫେରିଗଲେ ? ପତିପତ୍ନୀ ହୋଇ ସାଂସାରିକ ଧର୍ମ ପାଳନ କଲେ ? |
| ନିଳୀମା | ସଂଶୟର କାରଣ ? |
| ପ୍ରଫେସର | କାରଣ ଜଣେ ଚାହୁଁଥିଲା ନିର୍ବାଣ ପଥର ଯାତ୍ରୀ ହେବାକୁ । ଆଉ ଜଣେ ଚାହୁଁଥିଲା ସାଂସାରିକ ବନ୍ଧନରେ ବାନ୍ଧିହେବାକୁ । ଏ ଦୁଇଟି ଧାରା ତ ବିପରୀତଧର୍ମୀ, ବିପରୀତ ମୁଖୀ ଦୁଇଟି ଆଦର୍ଶ । ନୁହେଁ କି ? |
| ନିଳୀମା | (ହସି) ଠିକ୍ ଅଛି । ଏବେ ସେହି ବିପରୀତମୁଖୀ ଓ ବିପରୀତଧର୍ମୀ ଦିଶୁଥିବା ଦୁଇଟି ବିନ୍ଦୁକୁ ଗୋଟିଏ ସରଳରେଖା ଦେଇ ସଂଯୋଗ କରିଦିଅନ୍ତୁ । |
| ପ୍ରଫେସର | ସଂଯୋଗ କଲି...ଆହା...ଏବେ ତ ତାହା ଆଉ ଭିନ୍ନମୁଖୀ ହୋଇନାହିଁ ତାହା ଯେ ଏକମୁଖୀ ଏକ ସରଳ ରେଖା । |
| ନିଳୀମା | ତା'ର ଗୋଟିଏ ମୁଖକୁ ଊର୍ଦ୍ଧ୍ୱମୁଖୀ କରି ଦିଅନ୍ତୁ ଆଉ କହନ୍ତୁ କ'ଣ ଦେଖିଲେ ? |
| ପ୍ରଫେସର | ଏହା ଯେ ଊର୍ଦ୍ଧ୍ୱମୁଖୀ ଏକ ଜ୍ୟୋତିରେଖା । |
| ନିଳୀମା | ପ୍ରକୃତରେ ସେ ଦୁଇଟି ଯାକ ଧାରା ହିଁ ଆନନ୍ଦମୟ ସ୍ୱରୂପରୁ ସୃଷ୍ଟି, ଆଉ ପରମାନନ୍ଦ, ସଚ୍ଚିଦାନନ୍ଦ ସ୍ୱରୂପରେ ଲୀନ ହେବା ପାଇଁ ସଦାସର୍ବଦା ବ୍ୟଗ୍ର । ଏବେ ଜାଣିଲେ ତ । ସଂସାର–ଧର୍ମ, ନିର୍ବାଣ ବା ମୋକ୍ଷର ପରିପନ୍ଥୀ ନୁହେଁ । |
| ପ୍ରଫେସର | ଇଚ୍ଛାମତୀ ତା'ହେଲେ କ'ଣ ନିଜର ମାର୍ଗ ବଦଳାଇଦେଲା ? |
| ନିଳୀମା | ତା'ର ଉତ୍ତର ମୋ ମୁହଁରୁ ଶୁଣିବେ ନା ଇଚ୍ଛାମତୀ ମୁଖରୁ ? |

ପ୍ରଫେସର ଇଚ୍ଛାମତିର ମୁହଁରୁ ।

ନିଳୀମା ତା'ହେଲେ ମୋତେ ସେଇ ଇଚ୍ଛାମତୀ ବୋଲି ଭାବିନିଅନ୍ତୁ ଆଉ ସ୍ପର୍ଶ କରନ୍ତୁ । (ଦୁହେଁ ଦୁହିଁଙ୍କର ହାତ ଧରି ଧିରେ ଧିରେ ଉଠି ଠିଆ ହେଲେ) ଧିରେ ଧିରେ ମୋତେ ଆଲିଙ୍ଗନ କରନ୍ତୁ ।

ପ୍ରଫେସର (ଚମକି ଉଠି ନୀଳିମାର କାନ ଧରିଲେ) ଦୁଷ୍ଟ ବାଳିକା ମୋତେ ପରୀକ୍ଷା କରିବାକୁ ଚାହୁଁଛୁ ?

ନିଳୀମା ଆଃ...କାଟୁଛି ସାର୍, କାନଟା ଛାଡ଼ିଦିଅନ୍ତୁ । ପ୍ଲିଜ୍ ମୁଁ ତ ଆପଣଙ୍କୁ କେବଳ ପ୍ରେମ ମାର୍ଗର ଅନୁଭୂତି ଦେବାକୁ ଚାହୁଥିଲି ।

ପ୍ରଫେସର କାହିଁକି ?

ନିଳୀମା କାରଣ ଇଚ୍ଛାମତୀର ଅନୁଭୂତି ଏମିତି କର୍ମ ଆଉ ପ୍ରେମ ମାର୍ଗକୁ ଏକାକାର କରି ଉର୍ଦ୍ଧ୍ୱଗାମୀ ହୋଇଥିବ । ଈଶ୍ୱରଙ୍କୁ ଉପଲବ୍ଧି କରି ସଚ୍ଚିଦାନନ୍ଦ ଲାଭ କରିଥିବ । ସେଇଥିପାଇଁ ପରା ଗୀତାରେ ଭଗବାନ କହିଛନ୍ତି...

''କର୍ମଣ୍ୟେ ବାଧିକାରସ୍ତେ ମା' ଫଳେଷୁ କଦାଚନ...ଅର୍ଥାତ୍

ପ୍ରଫେସର ଚୁପ୍‌କର । ଆଉ ବ୍ୟାଖ୍ୟା କରିବା ଦରକାର ନାହିଁ । ମୁଁ ତୁମଠାରୁ ଗୀତା ଜ୍ଞାନ ଶୁଣିବାକୁ ଏଠାକୁ ଆସିନାହିଁ ନିଳୀମା ।

ନିଳୀମା ତା'ହେଲେ ଏଠିକି କାହିଁକି ଆସିଛନ୍ତି ସାର୍ ?

ପ୍ରଫେସର କେତେଥର ଆଉ କହିବି । ଇଚ୍ଛାମତୀ ପାଖରୁ ତା'ର ଇଚ୍ଛାସବୁ ଜାଣିବାକୁ ଆସିଛି ।

ନିଳୀମା କାହିଁକି ସାର୍ ?

ପ୍ରଫେସର ମୁଁ ତାକୁ ସାର୍ବଜନୀନ କରିବାକୁ ଚାହେଁ ।

ନିଳୀମା ତା'ହେଲେ ତ ଆପଣଙ୍କୁ ଇଚ୍ଛାମତୀର ସାକ୍ଷାତକାର ନେବାକୁ ପଡ଼ିବ । ଆପଣ କାଗଜ କଲମ ଆଣିଛନ୍ତି ତ ସାର୍ ।

ପ୍ରଫେସର ମୋତେ ଥଟ୍ଟା କରୁଛ ?

ନିଳୀମା ନାଇଁ ସାର । ଆପଣ କାଗଜ କଲମ ଧରି ଏଇଠି ଅପେକ୍ଷା କରନ୍ତୁ । ମୁଁ ଆସୁଛି । (ପୁଣି ଫେରି) ସାରାରାତି, ଉଜାଗର ହୋଇପାରନ୍ତି । ନିଷ୍ଫଳ ବି ହୋଇପାରନ୍ତି । ସତର୍କ ଥିବେ ।

ପ୍ରଫେସର ଏହା ଆଗରୁ ଅନେକ ରାତି ଉଜାଗର ରହିଛି । ନିଷ୍ଫଳ ବି ହୋଇଛି । ସେଥିରେ ଆଉ ଗୋଟିଏ ରାତି ଯୋଡ଼ି ହୋଇଗଲେ ମହାଭାରତ ଅଶୁଦ୍ଧ ହୋଇଯିବ ନାହିଁ । ସେ ଏଇଠି କେଉଁଠି ଥିବ । ନିଶ୍ଚୟ ଆସିବ ।

ନିଳୀମା ଠିକ୍ ଅଛି ମୁଁ ଆସୁଛି....(ଚାଲିଗଲା)

ପ୍ରଫେସର ଇଚ୍ଛାମତୀ...ଇଚ୍ଛାମତୀ... (ଖୋଜିବା । ଚଢ଼େଇ ରାବିଲା ।)

ନିଳୀମା (ପ୍ରବେଶୀ) ଚଢ଼େଇ ରାବିଲେଣି, ଆକାଶରେ କୁଆଁତାରା ବି ମୁହଁ କାଢ଼ିଲାଣି । ବୋଧହୁଏ ରାତି ପାହି ପାହି ଆସୁଛି ।

ପ୍ରଫେସର ତୁମେ ଶୀଘ୍ର ଯାଅ ନୀଳୀମା । ଇଚ୍ଛାମତୀକୁ ଆସିବାକୁ ଦିଅ । ମୋ ମନ କହୁଛି ସେ ନିଶ୍ଚୟ ଆସିବ । ତୁମେ ଯାଅ ପ୍ଲିଜ୍ ତୁମେ ଯାଅ । (ଏତିକିବେଳେ କୁଡ଼ିଆ ଦେଖାଗଲା)

ନିଳୀମା ଏଇ ଦେଖନ୍ତୁ ସାର୍, ସେଠି ଗୋଟିଏ କୁଡ଼ିଆ । ସେଇଟା ବୋଧହୁଏ ଇଚ୍ଛାମତିର କୁଡ଼ିଆ ହୋଇପାରେ ।

ପ୍ରଫେସର ହଁ ହୋଇଥିବ । ସାଗର କହୁଥିଲା । ଇଚ୍ଛାମତି ସେଇ କୁଡ଼ିଆ ଭିତରେ ଲୁଚି ଯାଇଥିଲା । ମୁଁ ଯାଇ ଦେଖେଁ ଇଚ୍ଛାମତୀ । ଇଚ୍ଛାମତୀ (ପ୍ରସ୍ଥାନ)

ନିଳୀମା (ହସି ହସି ଗଛମୂଳରେ ଲୁଚିଗଲା ଓ ଗଛମୂଳରୁ ଇଚ୍ଛାମତୀର ପ୍ରବେଶ)

ଇଚ୍ଛାମତୀ (ହସି) ଇଚ୍ଛାମତୀ ଆଜି ବି ଇଚ୍ଛାମତୀ । ସେ ଏଇଠି ଅଛି ପୁଣି ଏଇଠି ନାହିଁ । (ହସି) ଏଇଠି ଅଛି

ଏଇଠି ନାହିଁ ଲକ୍ଷେ ଟଙ୍କା ଦେଲେ ମିଳିବ ନାହିଁ ।
ଯାଅ ଖୋଜ ଅଧ୍ୟାପକ ମୋତେ ନପାଇଲେ ବି ମୋର ଇଚ୍ଛାକୁ ଅନ୍ତତଃ ସାର୍ବଜନୀନ କରିଦିଅ । ସେଇଥିପାଇଁ ତ ବାଟଭୁଲାଇ ତୁମମାନଙ୍କୁ ମୁଁ ଏଇଠିକି ଆଣିଛି । ଆଃ...କି ଶାନ୍ତି...ଏତେଦିନର ପ୍ରତୀକ୍ଷା ପରେ ଆଜି ଏଇ ଇଚ୍ଛାମତିର ଇଚ୍ଛା ସାର୍ବଜନୀନ ହେବାକୁ ଯାଉଛି । (କୋହ ଓ ଆଖିରେ ଲୁହ) ଦେଖ ନୀଳଲୋହିତ ! ମୃତ୍ୟୁ ତୁମକୁ ହଜଇେ ଦେଲା । ତୁମର ଅସ୍ତିତ୍ୱକୁ ଲୋପ କରିଦେଲା । କିନ୍ତୁ ମୁଁ ହଜିଯିବାକୁ ଚାହେଁନି । ମୃତ୍ୟୁ ପରେ ବି ମୋର ଅସ୍ତିତ୍ୱକୁ ମୁଁ ବଞ୍ଚାଇ ରଖିବାକୁ ଚାହେଁ । ଆଜିଠୁ ସେ ଯାତ୍ରାର ଅୟମାରମ୍ଭ ହେଲା । (ଗଛ ଉହାଡ଼ରେ ଲୁଚିଗଲା)

ପ୍ରଫେସର (ପ୍ରବେଶ କଲେ । ହାତରେ ତାମ୍ର ଫଳକଟିଏ) (କୁଡ଼ିଆ ହଜିଗଲା) ନିଳୀମା, ନିଳୀମା...ଇଚ୍ଛାମତୀ କାହିଁ ? କୁଡ଼ିଆଟା ସାରା ମୁଁ ତନ୍ନ ତନ୍ନ କରି ଖୋଜିଲି ହେଲେ ମୋ ଇଚ୍ଛାମତୀ କାହିଁ ନିଳୀମା...(କୋହ) (ପ୍ରବେଶ କଲେ ସମସ୍ତେ)

ଆକାଶ ଆପଣ କାହାକୁ ଖୋଜୁଛନ୍ତି ସାର୍, ନିଳୀମା ପରା ଏଇଠି ଆମରି ସାଙ୍ଗରେ ।

ପ୍ରଫେସର ନିଳୀମା ତୁମ ସାଂଗରେ । ତା' ମାନେ ତୁମେ ଏଠି ନଥିଲ ? କିନ୍ତୁ ମୁଁ ତ ଦେଖିଛି । ତୁମେ ହିଁ ଏଇଠି ଠିଆ ହୋଇ ମୋତେ କୁଡ଼ିଆ ଦେଖେଇ ଦେଲ ।

ସାଗର ଆପଣ ଯାହାକୁ ଦେଖିଛନ୍ତି ସେ ନିଶ୍ଚୟ ଇଚ୍ଛାମତୀ ହୋଇଥିବ ସାର । ମୁଁ ବି ତାକୁ ଦେଖିଛି । ଏମାନେ କିନ୍ତୁ ସେ କଥା ବିଶ୍ୱାସ କରିବାକୁ ନାରାଜ ।

ଊର୍ମିଳା ଆପଣଙ୍କ ହାତରେ ଏଇଟା କ'ଣ ?

ପ୍ରଫେସର କୁଡ଼ିଆ ଭିତରୁ ପାଇଲି । ଗୋଟିଏ ଇଚ୍ଛାପତ୍ର ।

ନିଳୀମା ଇଚ୍ଛାପତ୍ର । କାହାର ?

ପ୍ରଫେସର ଇଚ୍ଛାମତୀର ଇଚ୍ଛାପତ୍ର । ନିଅ ପଢ଼ । ନା ନା ମୁଁ ପଢୁଛି । (ସ୍ୱଗତଃ) କିନ୍ତୁ ଭୟ ଲାଗୁଛି ପଢ଼ିବାକୁ । ଏହା ଭିତରେ ଯଦି ମୋ ମନର ଗୁମର କଥା ସବୁ ଲେଖା ହୋଇଥାଏ... ।

ସାଗର ନହେଲେ ମୋତେ ଦିଅନ୍ତୁ ।

ପ୍ରଫେସର ନା...ମୁଁ ନିଜେ ପଢୁଛି । (ପଢ଼ିବା ଆରମ୍ଭ କଲେ) ଇଚ୍ଛାପତ୍ର...ଇଚ୍ଛାମତୀର (ନେପଥ୍ୟରୁ ଭାସିଆସିଲା ଇଚ୍ଛାମତୀର ସ୍ୱର)

ଇଚ୍ଛାମତୀ ମୁଁ ଇଚ୍ଛାମତୀ ! ଏତଦ୍ୱାରା ମୁଁ ଘୋଷଣା କରୁଛି ଯେ ମୋ ମୃତ୍ୟୁପରେ ମଧ୍ୟ ମୁଁ ବଂଚି ରହିବାକୁ ଚାହେଁ । ମୋର ଏ ଶରୀର ଆଉ ଆତ୍ମା ମୋର ସଂଚରଣଶୀଳ ହୋଇ ସମ୍ପାଦନ କରିବ ନିଜ ନିଜର ଗୁରୁତ୍ୱପୂର୍ଣ୍ଣ ସାମାଜିକ କର୍ମ । ଆପଣମାନେ ହୁଏତ ଭାବୁଥିବେ ମୋ ଶରୀର କାହିଁ ? (ଊର୍ମିଳା ଆଉ ନିଳୀମାକୁ ଦେଖାଇ) ଏମାନେ ହିଁ ତ ମୋ ଶରୀର, ଏଇମାନେ ହିଁ ତ ମୋର ଆତ୍ମା । ଏମାନଙ୍କ ଭିତର ଦେଇ ତ ମୁଁ ପ୍ରକାଶ୍ୟରେ ଜୀବିତ ରହିବି । ପ୍ରତ୍ୟକ୍ଷ ଭାବରେ ନିଜର କର୍ମ ସମ୍ପାଦନ କରିବି । ଏଥର ଏମାନେ ଘୋଷଣା କରିବେ ମୋର ଅବଶିଷ୍ଟ ଇଚ୍ଛା ।

ଊର୍ମିଳା-ନିଳୀମା: ମୁଁ ଇଚ୍ଛାମତୀ । ମୋର ପ୍ରଥମ ଇଚ୍ଛା ବ୍ୟକ୍ତ ହେଲା ଈଶ୍ୱରଙ୍କ ଉଦ୍ଦେଶ୍ୟରେ ।
ହେ ଈଶ୍ୱର ! ତୁମେ ଯଦି ପ୍ରକୃତରେ ପରିଚାଳକ ଓ ନିୟନ୍ତ୍ରକ ଆତ୍ମାମାନଙ୍କର । ତା'ହେଲେ ମୋ ଇଚ୍ଛାଶୁଣ ! ମୋ ମୃତ୍ୟୁପରେ ଆତ୍ମାକୁ ମୋହର ଛାଡ଼ିଦେବ ନାହିଁ କେବେ ନିର୍ବାଣ ବା ମୁକ୍ତିର ପଥରେ । କାରଣ...ମୁଁ ଚାହୁଁଛି ପୁନର୍ଜନ୍ମ ।

ନୀଳ ପୁନଃଜନ୍ମ ? ତୁମେ ଚାହଁ ପୁନଃ ଜନ୍ମ ? ପୁଣି କାମନା ? ପୁଣି ରୂପାନ୍ତର ? ନିରାକାରରୁ କଦାକାର ହେବାର ସିଦ୍ଧାନ୍ତ ? ହାୟ ହତଭାଗ୍ୟ ।

ଉର୍ମିଳା–ନିଳୀମା: ଜନ୍ମଜନ୍ମାନ୍ତର ଯାଏ, ନାରୀଭାବେ ଜନ୍ମ ହେବି ମୁହିଁ ଏ ଧରା– ଧାମରେ ।

ସମସ୍ତେ ନାରୀ ଭାବେ ଜନ୍ମ ହେବୁ ଆମେ– ଯେତେଦିନ ଚାଲିଥିବ ଏଠି ସଂଭୋଗ ନାମରେ ନାରୀନିର୍ଯ୍ୟାତନା, ବ୍ୟଭିଚାର, କନ୍ୟାଭ୍ରୁଣ ହତ୍ୟା ।

ନୀଳ କିନ୍ତୁ କାହିଁକି ?

ସମସ୍ତେ ନାରୀ ଭାବେ ଜନ୍ମ ହେବୁ ଆମେ ।

ଇଚ୍ଛାମତୀ ସେତେଦିନ ପ୍ରତିବାଦ, ପ୍ରତିରୋଧ କରିବାକୁ ଜନ୍ମହେବି ଜନ୍ମହେବି ମୁଁ ଏଇ ସଂସାରରେ ।

ସମସ୍ତେ ପ୍ରତିବାଦ ଆଉ ପ୍ରତିରୋଧ ।

ଇଚ୍ଛାମତୀ ୨ୟ ଇଚ୍ଛା ମୋହର ଶୁଣ ଆହେ ସମାଜର ଜ୍ଞାନୀ ଆଉ ବିଦଗ୍ଧ ମଣ୍ଡଳୀ । ମୃତ୍ୟୁପରେ ମୋର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ପ୍ରତିରୋପିତ ହେବ ଆବଶ୍ୟକ ଗ୍ରସ୍ତ ଯୁବକ ଯୁବତୀଙ୍କ ଶରୀରରେ । ପ୍ରତିଦାନରେ ସେମାନେ ବି ତାଙ୍କ ମୃତ୍ୟୁ ପରେ ତୋଳିଦେବେ ସେମାନଙ୍କ ଅଙ୍ଗ ପ୍ରତ୍ୟଙ୍ଗ ସବୁ ମାନବ ସେବାରେ ।

ସମସ୍ତେ (ଜଣେ ଜଣେ କରି କହିବେ) ଚକ୍ଷୁ, ହୃତ୍‌ପିଣ୍ଡ, ଯକୃତ, କିଡ଼୍‌ନୀ ଆଦି ୮ଟି ଅଙ୍ଗ ଓ ୨୨ଟି ଟିସୁକୁ ଆମେ ମୃତ୍ୟୁପରେ ଦାନ କରିଦେବୁ ।

ଇଚ୍ଛାମତୀ ଏହିପରି ହେଲେ ଅନାଦିକାଳ ପର୍ଯ୍ୟନ୍ତ ଇଚ୍ଛାମତୀର ଏଇ କାମନାମୟ ଶରୀର କର୍ମଚଞ୍ଚଳ ରହି ଗୋଟିଏ ବ୍ୟକ୍ତିଗତ ଶରୀରରୁ ବିଶ୍ୱଶରୀରରେ ପରିଣତ ହେବ । ଆପଣମାନେ ନିଶ୍ଚୟ ମୋର ଏଇ ଇଚ୍ଛାପତ୍ରକୁ ଅସ୍ୱୀକାର କରିବେ ନାହିଁ ମୁଁ ଜାଣେ । କାରଣ ମୋର ଆଜିର ଇଚ୍ଛାପତ୍ର ଆସନ୍ତାକାଲି ଆପଣମାନଙ୍କର ଇଚ୍ଛାପତ୍ର ହୋଇପାରେ । ହେବା ଉଚିତ । ଏହା ଯେ ଏକାନ୍ତ ଭାବେ ଏକ ସାମାଜିକ ଆବଶ୍ୟକତା । ନା କ'ଣ କହୁଛନ୍ତି । ତାକୁ କ'ଣ ଆପଣ କେବେ ଅସ୍ୱୀକାର କରିପାରିବେ ?

ନୀଳ ଆଃ...ଇଚ୍ଛାମତୀ...ମୁଁ ତୁମକୁ ହୁଏତ ଭୁଲ୍ ବୁଝିଥିଲି । ମୁଁ ଏବେ ବୁଝିପାରୁଛି ଯେ ତୁମେ ଅପରୁପାରୁ କୁରୁପା ନୁହେଁ ବରଂ ବିଶ୍ୱରୂପା ହେବାକୁ ଚାହଁ, ମାତୃ ରୂପା ହେବାକୁ ଚାହଁ । ଯା'ଦେବୀ ସର୍ବଭୂତେଷୁ ମାତୃ ରୂପେଣ ସଂସ୍ଥିତା । ନମଃତସୈ ନମଃତସୈ ନମତସୈ ନମୋଃ ନମଃ...ମୋତେ ତୁମେ କ୍ଷମା କରିଦିଅ ।

ଇଚ୍ଛାମତୀ (ଅଭିନେତାମାନଙ୍କୁ) ମୋର ଇଚ୍ଛାପତ୍ରକୁ ସାର୍ବଜନୀନ କରିଥିବାରୁ ଏମାନଙ୍କୁ ଧନ୍ୟବାଦ । ଆଉ ଏହି ସେଇ ମହତ୍‌କାର୍ଯ୍ୟର ଚାକ୍ଷୁସପ୍ରମାଣ ସହ ସାମଗ୍ରୀକ ଭାବେ ଆପଣମାନେ ସାକ୍ଷୀ ରହିଥିବାରୁ ଆପଣମାନଙ୍କୁ ମଧ ଧନ୍ୟବାଦ । (ଦର୍ଶକମାନଙ୍କୁ)

ନୀଳ ତୁମକୁ ମଧ ମୋର ଧନ୍ୟବାଦ । ମୋର ସାଧନା, ମୋର ଜ୍ଞାନ ଆଉ ମୋର ବିବେକ ଚାହୁଁଥିଲା ନିର୍ବାଣ ପଥର ଯାତ୍ରୀ ହେବାକୁ କିନ୍ତୁ ମୋର ମନ, ମୋର ହୃଦୟ, ମୋର ଆବେଗ ତୁମରି ପ୍ରେମକୁ ଆଧାର କରି ତୁମର ସେଇ ବିଶ୍ୱରୂପାରୂପୀ, ମାତୃରୂପାରୂପୀ ରୂପକୁ ଆଜି ଧ୍ୟାନ କରି ସେଥିରେ ସମାହିତ ହେବାକୁ ଚାହୁଁଛି । ତୁମ ଇଚ୍ଛାପତ୍ର ଇଚ୍ଛାମୟଙ୍କ ଇଚ୍ଛାରେ କାର୍ଯ୍ୟକାରିତାରେ ରୂପାନ୍ତରିତ ହେଉ । ଈଶ୍ୱର ତୁମର ମଙ୍ଗଳ କରନ୍ତୁ ।

ସମସ୍ତେ ନମସ୍କାର । ସର୍ବେ ଭବନ୍ତୁ ସୁଖୀନ ସର୍ବେ ଶ୍ୟନ୍ତୁ ନିରାମୟାଃ, ସର୍ବେ ଭଦ୍ରାଣି ପଶ୍ୟନ୍ତୁଃ ମା' କଶ୍ଚିଦ୍ ଦୁଃଖଭାଗ୍ ଭବେଦ୍ ।

♦ ♦ ♦

# କିନ୍ତୁ ଏକ ଶବ୍ଦ

ରଚନା ଓ ନିର୍ଦ୍ଦେଶନା – ନବୀନ କୁମାର ପରିଡ଼ା
ପ୍ରଥମ ପ୍ରଯୋଜନା – ୧୦/୬/୨୦୧୫ ରବୀନ୍ଦ୍ର ମଣ୍ଡପ ।
ନବୀନ ବର୍ଣ୍ଣାଳୀ ନାଟ୍ୟ ସଂସ୍ଥା ଭୁବନେଶ୍ୱର ଦ୍ୱାରା ପ୍ରଯୋଜିତ ।
ଚରିତ୍ରମାନେ
ବଡ଼ବାବୁ – ଶଙ୍କରର୍ଷଣ ପ୍ରଧାନ
ଅଞ୍ଜନ – ଶଶଧର ପ୍ରଧାନ (ମୁନ୍ନା)
ମାଆ – ଅର୍ପିତା ନନ୍ଦ
ହେଡ୍ ଦିଦି – ସୋନିକା ସାହୁ
ମିତା– ସୁନନ୍ଦା ପରିଡ଼ା
କୋରସ୍ –
୧. ନବୀନ କୁମାର ପରିଡ଼ା
୨. ପ୍ରଜ୍ଞାରଞ୍ଜନ ଖଟୁଆ
୩. ଭକ୍ତିରଞ୍ଜନ ଦାସ
୪. ଶକ୍ତିସ୍ୱରୂପ
୫. ସ୍ୱରୂପ ରଞ୍ଜନ (ପବନା)
ମଞ୍ଚ – ପ୍ରଜ୍ଞାଦତ୍ତ ସାହୁ
ଆଲୋକ – ସଞ୍ଜୟ ପ୍ରଧାନ
ସଙ୍ଗୀତ – କ୍ଷିତି ପ୍ରକାଶ, ପ୍ରଭାସ ରବିନ (ବାଙ୍ଗା) ଓ ଅଭିଷେକ (ଆପୁ)
ମଞ୍ଚ ପରିଚାଳନା – ସୁଜିତ ଜେନା, ସାନ ଦେବୁ

# କିନ୍ତୁ ଏକ ଶବ୍ଦ

## ସୂଚନା ଦୃଶ୍ୟ

(ମଞ୍ଚର ପରଦା ସମ୍ମୁଖରେ କୋରସ୍‌ର ଆବିର୍ଭାବ ହେଲା । କବିତାର ଛନ୍ଦରେ ଗାଇଲେ )

ସମସ୍ତ କୋରସ୍ : କାବ୍ୟେଷୁ ନାଟକମ୍ ରମ୍ୟମ୍, ଜୀବନଟା ଏକ ନାଟକ । ନାଟକ ତ ଖାଲି ସ୍ୱରବର୍ଣ୍ଣେ ଲେଖା ନୁହେଁ । ବ୍ୟଞ୍ଜନ ବର୍ଣ୍ଣବି ମିଳିମିଶି ତହିଁ ଥାଏ ।

କୋରସ୍ ୨ ଉପମା, ଯମକ, ଶ୍ଳେଷ, ଅଳଙ୍କାର, ରହିଥାଏ ତହିଁ ହୋଇ ଭରପୁର ।

କୋରସ୍ ୩ ନାଟକରେ କାହିଁ ଉପମା ? ଯମକ ଶ୍ଳେଷର ଭଙ୍ଗିମା ?

କୋରସ୍ ୪ ଅଛି ଅଛି ସବୁ ଅଛି ।

କୋରସ୍ ୧ ନାଟକରେ ଚାଲେ ଶବ୍ଦର କସ୍ତୁରୀ, ବାକ୍ୟ କଥନର ଅପୂର୍ବ ଚାତୁରୀ ଅକ୍ଷରେ ଅକ୍ଷର ତାଳ ମେଳ ହୋଇ, ଭିନ୍ନଭିନ୍ନ ଅର୍ଥ କରଇରେ ଭାଇ

କୋରସ୍ ୨ କମା ଆଉ ପୂର୍ଣ୍ଣଚ୍ଛେଦ । ସମ୍ବୋଧନ ପ୍ରଶ୍ନଭେଦ

କୋରସ୍ ୩ ଏକକୁ ଆରେକ ବଳି, ବେଳେବେଳେ କୋଳାକୋଳି

କୋରସ୍ ୪ ହାତୀଦାନ୍ତ ଭଳି ଦିଶୁଥାଏ ଯାହା, ଚୋବାଇଲାବେଳେ ସ୍ୱାଦ ଭିନ୍ନ ତାହା

କୋରସ୍ ୧ ଅଭିନେତା ଏଠି ଚରିତ୍ର ବୋଲାଏ,
ଅସଲ ସ୍ୱାଦ ତ ଦର୍ଶକ ହିଁ ପାଏ ।

କୋରସ୍ ୨ ଏଠି ଯଦି ସବୁ ଓଲଟ ପାଲଟ
(ତାହେଲେ) ଦର୍ଶକ କହିବେ ଏଟା କି ନାଟକ ?

କୋରସ୍ ୩ ହସ କାହିଁକି କାନ୍ଦ ନାହିଁ, ଭାବ ନାହିଁ କି ରସ ନାହିଁ ।

କୋରସ୍ ୪ କଥା ଭିତରେ ନଥା ଅଛି କହିପାରିଲେ ହେଲା
ବନ୍ଧୁ ବୁଝିପାରିଲେ ହେଲା ।

କୋରସ୍ ୧ ପିଠା ଭିତରେ ପୂର ଅଛି ଖାଇ ଜାଣିଲେ ହେଲା
ବନ୍ଧୁ ରାନ୍ଧି ଜାଣିଲେ ହେଲା ।

କୋରସ୍ ୨ କାହାଣୀ ନାହିଁ, ଉତ୍କଣ୍ଠା ନାହିଁ, ଗତି ନାହିଁକି ସଂଶୟ ନାହିଁ ।

କୋରସ୍ ୩ ସେ ନାଟକର ମାନେ କିଛି ନାହିଁ ।

କୋରସ୍ ୪ ସେ ଜୀବନର ମାନେ ବି କିଛି ନାହିଁ ।

କୋରସ୍ ୧ ଚାଲ ଶ୍ୟାମ ଭାଇ
ଏଠି ଆଉ ବସି ରହିଲ କ'ଣ ପାଇଁ ?

### ୧ମ ଦୃଶ୍ୟ

(Govt Officeର ଦୃଶ୍ୟ ଅଞ୍ଜନ ବସି କମ୍ପ୍ୟୁଟର ଟାଇପ୍ କରୁଛି ଓ ଫୋନ୍‌ରେ ପ୍ରେମିକା ସାଙ୍ଗରେ କଥା ହେଉଛି ।)

ଅଞ୍ଜନ	କାଲି ଫେସ୍‌ବୁକ୍‌ରେ ତୁମ Selfi ଦେଖିଲି, ଭାରୀ ସୁନ୍ଦର ହୋଇଛି । ସାଙ୍ଗେ ସଙ୍ଗେ ମୁଁ Like କରିଦେଇଛି । କେତେ ଜଣ Like କଲେଣି ?

ମିତା	୫୦ଜଣ । ତୁମେ ଏବେ କ'ଣ କରୁଛ ?

ଅଞ୍ଜନ	ଅଫିସ୍‌ରେ ବସି ଚିଠି ଟାଇପ୍ କରୁଛି । ହେଡ୍ ଅଫିସ ଯିବ । ଆଜି ସଞ୍ଜରେ ତୁମେ Free ଅଛତ । ସ୍କୁଲ ପରେ ଚାଲୁନ ମ୍ୟାଟିନି ଶୋ ସିନେମା ଯିବା ।

ମିତା	ଆଉ ତୁମ ଅଫିସ ?

ଅଞ୍ଜନ	ମୁଁ ମିଛ ସତ କହି ବଡ଼ ବାବୁଙ୍କୁ ପଟେଇ ଦେବି । ଖାଲି ତୁମେ ରାଜିହେଲେ ହେଲା ।

ମିତା	ନା ନା ଘରକୁ ଫେରିବାକୁ ଡେରି ହେବ ବୋଉ ରାଗିବ ।

ଅଞ୍ଜନ	ତା'ହେଲେ ଫରେଷ୍ଟ ପାର୍କ ଆସନା । ସେଇଠି ସାମ୍ନା ସାମ୍ନି ବସି ଚାଟ ଖାଇବା, ଚାଟ କରିବା, ଗପସପ ହେବା ୫ଟା ବେଳକୁ ତୁମକୁ ନେଇ ଘରେ ଡ୍ରପ୍ କରିଦେଇ ଆସିବି ?

ମିତା	ଠିକ୍ ଅଛି । ଆଚ୍ଛା ମନେ ଅଛି ତ ୧୦ ତାରିଖରେ ମୋର ଜନ୍ମଦିନ କ'ଣ ପ୍ରେଜେଣ୍ଟ କରିବ ଶୁଣେ ?

ଅଞ୍ଜନ	ତୁମ ପାଇଁ ୨ଟା ଜିନିଷ ନେଟ୍‌ରେ ଅଡ଼ର କରିଦେଇଛି ଏଇ ୪/୫ ଦିନ ଭିତରେ ଡେଲିଭରି ଦେଇଦେବ ।

ମିତା	ଯଦି ଡେରିକଲା ? ଆରଥର ଜନ୍ମ ଦିନରେ ସେମିତି ଡେରି କଲ ।

ଅଞ୍ଜନ	Sorry Derling ଏଥର Delivary ନିଶ୍ଚୟ ପୂର୍ବରୁ ପହଞ୍ଚିବ ମୁଁ Follow up କରିବି । ତୁମେ ଆଜି ଆସିବ ତ ?

ମିତା	ତୁମେ ଯଦି ମୋତେ ଘରେ ଛାଡ଼ିବ ତା'ହେଲେ ଆସିବି । ଠିକ୍ ୩ଟାରେ ପହଞ୍ଚିବି ତୁମେ ଡେରି କରିବ ତ ମୁଁ ଖସିବି ଜାଣିଥା ।

ଅଞ୍ଜନ	No No Impossible ମୁଁ ତା' ଆଗରୁ ପହଞ୍ଚିଯାଇଥିବି । ଗୋଟିଏ କବିତା ଲେଖିଛି ଶୁଣେଇବି ।

ବ.ବାବୁ	(ଭିତରୁ) କ'ଣ ଅଞ୍ଜନବାବୁ ଚିଠିର ଡ୍ରାଫ୍ଟଟା ସରିଲା ନା ନାହିଁ ?

ଅଞ୍ଜନ	ଏଇ ସରିଲା ବୋଲି ଜାଣନ୍ତୁ ସାର୍, ଆପଣ ଖାଲି ଟିକିଏ ଚେକ୍ କରି ଦେଇ ମୁଁ ସେଣ୍ଡ୍ କରିଦିଅନ୍ତି ।

ବ.ବାବୁ	କାହିଁ ଦେଲ ଦେଖିବା । (ବଡ଼ବାବୁ ଚିଠି ପଢ଼ିବାକୁ ଲାଗିଲେ) Dear Sorry Darling...(ଅଞ୍ଜନକୁ) ଅଞ୍ଜନ ବାବୁ Sorry କ'ଣ ଆପଣଙ୍କ ପ୍ରେମିକାର ନାମ ?

ଅଞ୍ଜନ	ସେଇଆ ଲେଖି ଦେଇଛି କି ?

ବ.ବାବୁ	ରୁହ ରୁହ ପଢୁଛି । Dear Sorry Darling, I am Sorry to say that the date of your delivary may going late. (ଅଞ୍ଜନକୁ) ହଇ ହୋ ଇଏ କ'ଣ ଲେଖିଛ ? But dont worry, I will see that the delivary this time will be safe and Smooth by the end of this week at forest park. (ନିଜକୁ ନିଜେ) ପୁଣି କ'ଣ ଗୋଟିଏ ଇଂରାଜୀ କବିତା ଲେଖା ହୋଇଛି ।

Forgive me forgive me, forget me not.
Love me kiss me, hate me not
Yours Sincerely, dot, dot, dot and dot (ରାଗି) ଏଇଟା Govt draft ଲେଖୁଛ ନା ପ୍ରେମପତ୍ର ଲେଖୁଛ, ଏତେ ସମୟ ଧରି ତୁମ Delivery ସରୁନି । ମୁଁ ହେଡ୍ ଅଫିସ୍‌କୁ ଏଇଆକୁ ମେଲ୍ କରିବି । ତୁମ ନିଜ ଚାକିରି ତ ଯିବ, ମୋ ଚାକିରି କୁ ବି ଖାଇବା ଚକ୍କରରେ ଅଛ ଦେଖୁଛି ।

ଅଞ୍ଜନ — Sorry Sir

ବ.ବାବୁ — ଠିକ୍ କରି କହୁ । Sorry କିଏ ତୁମ ପ୍ରେମିକା ନା ତୁମର ଏ ହତଭାଗ୍ୟ ବୃଦ୍ଧ ସାର୍ ବଡ଼ବାବୁ । ଆଜିକାଲିକା ପିଲା କଥା କଥାକେ ଭୁଲ୍ ଆଉ କଥା କଥାକେ Sorry । ସତେ ଯେମିତି Sorry କହିବାଟା ଗୋଟିଏ ମାନିଆ ହୋଇଗଲାଣି ।

ଅଞ୍ଜନ — ଆଉ ଦଶ ମିନିଟ୍ ଭିତରେ ମୁଁ ଡ୍ରାଫ୍ଟ କରି ଦେଉଛି ସାର୍ ।

ବ.ବାବୁ — ଦେଖ ବାବା ତୁମେ ପଛେ ଘରକୁ ପଳାଅ । ହେଲେ ତୁମ ଉପରେ ଭରସା କରି ତୁମ Darling ହାତରେ ମୁଁ ମୋ ଚାକିରିଟାକୁ Delivery କରିଦେଇ ପାରିବିନି ।

ଅଞ୍ଜନ — Sir Please ଆଉ ଗୋଟିଏ Chance ଦେଇ ଦେଖନ୍ତୁ ।

ବ.ବା. — ଠିକ୍ ଅଛି ଗୋଟିଏ Chance ଦେବି ଯେ, କିନ୍ତୁ ଆଗେ ଏଇ ଫୋନ୍‌ଟାକୁ ପକେଟରେ ପୁରାଅ । ସବୁ ମୂଳରେ ଏଇ ତୁମର କାନ କୁହା ଯନ୍ତ୍ର ଖଣ୍ଡିକ ଦାୟୀ । ଯାକୁ ସମ୍ଭାଳ ନ ହେଲେ ତୁମ କଥା ତୁମେ ବୁଝ । ଚାକିରି ଛାଡ଼ି ଘରେ ବସି Delivery କରିବ ହେଲା ।

(ଅନ୍ଧାର)

(କୋରସ୍ ଆସିଲେ ଆଲୁଅ ଆସିଲା)

ଗୀତ ୧ମ — ଜୀବନ ଚାଲେ ଏମିତି ଚାଲେ
ଅଙ୍କାବଙ୍କା ରାସ୍ତା ଦୌ'ଛକି ବୁଲେ
ଜୀବନ ଚାଲେ ଏମିତି ଚାଲେ ।

୨ୟ — ଦୁଃଖ, ସୁଖ, ହସ ସନ୍ଦେହ ରାଗ ।
ମାନ ଅଭିମାନ, ପ୍ରେମ, ସରାଗ ।

୩ୟ — ଉଠାଣି, ଗଡ଼ାଣି, ଖାଲ, ଢିପ, ଡେଇଁ
ଜୀବନ ଚାଲେ ଏମିତି ଚାଲେ ।

୪ର୍ଥ — ଆଶା ପୁଣି ନିରାଶା (ସମସ୍ତେ) ହୋ, ହୋ, ହୋ, ହୋ ।
ବିଶ୍ୱାସ ଓ ଭରସା

୧ମ — ଆସେ ଆଉ ଭାଙ୍ଗି ଯାଏ, ଭାଙ୍ଗି ପୁଣି ଗଢ଼ିଦିଏ ନୂଆ ଏକ ପ୍ରତ୍ୟାଷା ।

ସମସ୍ତେ — ଜୀବନ ଚାଲେ ଏମିତି ଚାଲେ
ଅଙ୍କାବଙ୍କା ରାସ୍ତା ଦୌ'ଛକି ବୁଲେ, ଜୀବନ ଚାଲେ ଏମିତି ଚାଲେ ।

୪ର୍ଥ — ଜୀବନ ଆମ ଯେମିତି ଚାଲୁ । ଯେମିତି ଇଚ୍ଛା ସେମିତି ଚାଲୁ ।

୩ୟ — ଦୋ ଛକି ଆସୁ କି ତିନି ଛକିଆ
ପଚାରି ବିଚାରି ଆଗେଇ ଯାଆ

| | | |
|---|---|---|
| ୨ୟ | "କିନ୍ତୁ" ଯଦି କେବେ ଆସିଲା ଜାଣ | ସେଇଠି କଥା ସରିଲା ଜାଣ... |
| ସମସ୍ତେ | ଜୀବନ ଚାଲେ ଏମିତି ଚାଲେ | ଅଙ୍କାବଙ୍କା ରାସ୍ତା ଦୋଛକି ବୁଲେ |
| | ଜୀବନ ଚାଲେ ଏମିତି ଚାଲେ | ହୁଁ, ହୁଁ, ହୁଁ । କିନ୍ତୁ ଏକ ଶବ୍ଦ । |

(ଅନ୍ଧାର)

## ୨ୟ ଦୃଶ୍ୟ

(ମିତାର ଘର Land Phone ବାଜିଲା । ମିତାର ମାଆ ଫୋନ୍ ଉଠାଇଲେ ।)

ମାଆ Hello, କିଏ କହୁଛନ୍ତି ?

ଦିଦି ମୁଁ ତା' ସ୍କୁଲର ହେଡ୍ ଦିଦି କହୁଛି ।

ମାଆ ହଁ, ଦିଦି ନମସ୍କାର । କ'ଣ କହନ୍ତୁ ।

ଦିଦି ମିତା କ'ଣ ଘରେ ନାହିଁ କି ?

ମାଆ ସେ ତ ସେଇ ସକାଳ ପହରୁ ସ୍କୁଲ ଯାଇଛି ଯେ, ଏ ଯାକେ ଫେରିନି । ସେ କ'ଣ ସ୍କୁଲରେ ନାହିଁ କି ?

ଦିଦି ସକାଳେ ସେ ସ୍କୁଲ ଆସିଥିଲା । ହେଲେ କେତେ ବେଳୁ ଘରକୁ ଗଲାଣି ।

ମାଆ କ'ଣ କହିଲେ । କେତେବେଳୁ ସେ ଘରକୁ ଆସିଲାଣି ?
ସ୍କୁଲ କ'ଣ ଛୁଟି ହୋଇଗଲାଣି କି ?

ଦିଦି ଛୁଟି ଆଉ କ'ଣ ହେବ ? ଖାଇବା ପିଇବା ସାରି ହାଣ୍ଡି କଡ଼େଇ ମାଜି ଦେଲେ ତ ସରିଲା ଆଉ କ'ଣ । ତେଣିକି ଯିଏ ଯୁଆଡ଼େ ଗଲେ କି ନ ଗଲେ ସେ କଥା ପଚାରୁଛି କିଏ ? ନା ଜାଣୁଛି କିଏ ?

ମାଆ ସେ ସ୍କୁଲରୁ କେତେବେଳୁ ଆସିଲାଣି ?

ଦିଦି ୩ଟା ବେଳୁ ଗଲାଣି ।

ମାଆ ଏଁ, ୩ଟାବେଳୁ ଆସିଲାଣି । ଏ ଯାଏଁ ତ ଘରେ ପହଞ୍ଚିନି ।

ଦିଦି ସେ ତ ଘରେ ପହଞ୍ଚିନି ଆଉ ଫଟୋ ସବୁ ସଂସାର ସାରା ପହଞ୍ଚିଲା କେମିତି ?

ମାଆ କି ଫଟୋ, କାହା ଫଟୋ ?

ଦିଦି ତାକୁ ପଚାରିବ । ଫେସ୍‌ବୁକ୍‌ରେ ମୋ ଫଟୋ ସବୁ ଛାଡ଼ି ଦେଇଛି ଯେ, ବି.ଇ.ଓ ମୋତେ ଫୋନ୍ କରି ତାଗିଦ୍ କଲେଣି । ମୋର ଯଦି କିଛି ଅସୁବିଧା ହୁଏନା କାହାକୁ ଛାଡ଼ିବି ନାହିଁ । ତାକୁ ସମ୍ଭାଳ । ଦିନରାତି ଫୋନ୍ ଧରି ପ୍ରେମିକ ସାଙ୍ଗରେ ଗପୁଛି । କହିଲାବେଳକୁ ମୋ ଫଟୋ ଉଠେଇ ଫସେଇ ଦେଇଛି । ଭାରି Dangerous ପିଲା । ବେଳ ଥାଉଁ ଥାଉଁ ସମ୍ଭାଳ ନହେଲେ ନେଡ଼ି ଗୁଡ଼ କହୁଣୀକି ବୋହିଗଲେ ମାଆ ବାପା ଦୁହେଁ କବାଟ କିଳି ବସି କାନ୍ଦିବ ଜାଣିଥା । (ଫୋନ୍ କଟିଗଲା)

ମାଆ ଆଜି ସେ ଘରକୁ ଆସୁ । ତା'ର ଦିନେ ତ ମୋର ଦିନେ । ନାଇଁ ନାଇଁ ଆଜି ତା' ବାପା ଆସନ୍ତୁ । ପାଠ ପଢ଼େଇ ଝିଅକୁ ପୁଅ କରିବାକୁ ଚାହୁଁଥିଲେ । ଏଇନେ ସେ ନାଟ ଲଗେଇ ଆମକୁ ପାଠ ପଢ଼େଇବାକୁ ବସିଲାଣି ।

ବ.ବାବୁ (ପ୍ରବେଶୀ) କିଏ କାହାକୁ ପାଠ ପଢ଼ାଉଛି ଶୁଣେ ?

ମା.ଆ ତୁମ ଝିଅ । ଯାହାକୁ ପାଠ ପଢ଼େଇ ତୁମେ ପୁଅ ପିଲା କରିବାକୁ ଚାହୁଁଥିଲ । କ'ଣନା, ପାଠ ପଢ଼ିବ କାଳିଆ ଘୋଡ଼ାରେ ଚଢ଼ିବ, ମଧୁବାବୁ ସାଙ୍ଗେ ଲଢ଼ିବ, ବଂଶ ଉଜ୍ଜ୍ୱଳ କରିବ । ସେଇ କନ୍ୟାରତ୍ନ ଏବେ ପ୍ରେମପାଠ ପଢୁଛି ।

ବ.ବାବୁ ମିଛ କଥା । ମୋ ଝିଅ ସେମିତି ନୁହେଁ । କିଏ କହିଲା ଶୁଣେ ।

ମା.ଆ ସ୍କୁଲ ହେଡ୍ ଦିଦି କହିଲେ ।

ବ.ବାବୁ ହେ...ସେ ଈର୍ଷାରେ କହିଥିବେ । ସେ କ'ଣ କହିଲେ କହିଲ ।

ମା.ଆ ସେ ଘଣ୍ଟାଘଣ୍ଟା ଧରି ଗପୁଛି ।

ବ.ବାବୁ କାହା ସହିତ ।

ବ.ବାବୁ ଫୋନ୍ ସହିତ ? (ହସି) କାହା ଝିଅ ପୁଣି ଦେଖିବାକୁ ପଡ଼ିବନା । ସେ ଗପିବ ନାହିଁ ତ ଆଉ କିଏ ଗପିବ ?

ମା.ଆ ମାନେ । ସେ କାହିଁକି ଗପିବ ଶୁଣେ ।

ବ.ବାବୁ ପିତା ଗୁଣେ ପୁତ୍ର ସିନା ମାତା ଗୁଣେ ପୁତ୍ରୀ । ତମ ଗୁଣ ଯେମିତି ତା'ଗୁଣ ବି ଠିକ୍ ସେମିତି ।

ମା.ଆ ଏଁ, ମୁଁ କାହା ସହିତ ଏମିତି ଗପେ ଶୁଣେ ?

ବ.ବାବୁ କାହା ସହିତ ନ ଗପ ଯେ, ଏ ଘରର କାଛବାଡ଼, ଝିଟିପିଟି ଅସରପା କାହାକୁ ଛାଡୁଛ । ଏଇ ସେଦିନ ସେଇ ଶଙ୍କି ବିଲେଇ ଛୁଆଟା ମାଛ ଖଣ୍ଡେ ଖାଇ ଝରକା ଡେଇଁ ପାଚେରୀ ଯାଇ ବସିଥିଲା ବୋଲି ତାକୁ ଯୋଉଁ ଶୋଧା ଶୁଧିଲ । ହଇଲୋ ପୋଡ଼ା ମୁହିଁ ମାଛ ଖଣ୍ଡେ ଖାଇଦେଲୁ ତୋ ପେଟ କାମୁଡ଼ିବ ଝାଡ଼ା ବାନ୍ତି ହେବ । ତୁ ମରୁନୁ କି ତୋତେ ଯମ ନଉନି ଯାହା ତୁ ଖାଲି ମୋ ହାବୁଡ଼ରେ ପଡ଼ ତୋତେ ଜିଅନ୍ତା ମାରିବି । ଏମିତି କେତେ କ'ଣ ତାକୁ କହିଲ ସେ ବିଚରା ସବୁ ଶୁଣିଶୁଣି ଶେଷରେ ଲାଙ୍ଗୁଡ଼ ହଲେଇ ମ୍ୟାଉ ବୋଲି କହି ଡିଆଁମାରି ପଳେଇଲା । ସେଇଥିରେ ତୁମ ରାଗ ଯେ କାହିଁରେ କ'ଣ । ଏଁ ସାମାନ୍ୟ ବିଲେଇଟା ହୋଇ ମୋତେ ତାଚ୍ଛଲ୍ୟ କରି ମୁହଁମୋଡ଼ି ଦେଲା । ଆଉ କ'ଣ ସିଏ ତୁମ ସାଙ୍ଗରେ ବସି ଟିଭି ଡିବେଟ୍ କରିଥାନ୍ତା ନା କ'ଣ ?

ମା.ଆ ସେଇ କଥା ତୁମେ ମନେ ରଖିଛ ?

ବ.ବାବୁ ଖାଲି ସେତିକି । କାହାକୁ ପାଖରେ ନ ପାଇଲେ ପରା ନିଜ ନିଜ ସାଥିରେ ଗୁଣୁଗୁଣୁ ହୋଇ ଡାହାଣୀ ମନ୍ତ୍ର ପଢ଼ିଲା ଭଳିଆ ଘଣ୍ଟା ଘଣ୍ଟା ଧରି ଗଡ଼ର ଗଡ଼ର ହେଉଥିବ ଯେ ହେଉଥିବ । ଯେମିତି କେହି ଶୁଣୁବା ନଶୁଣୁ ଘରେ ରେଡ଼ିଓ ବାଜିଚାଲିଛି । ଟିଭି ଚାଲିଛି ତ ଚାଲିଛି । ସିଏ ସେମିତି ଫୋନ୍ ସାଙ୍ଗରେ ଗପୁଛି ଆଉ କ'ଣ ?

ମା.ଆ ଫୋନ୍ ସାଙ୍ଗରେ ଗପୁନି । ଫୋନ୍‌ରେ ତା' ପ୍ରେମିକ ସାଙ୍ଗରେ ଗପୁଛି ।

ବ.ବାବୁ ତା' ପ୍ରେମିକ ? କିଏ ସେ ?

ମା.ଆ ସେ କଥା କ'ଣ ଦିଦି କହିଲେ । ସେ ନ କହନ୍ତୁ । ଆଜି ଆସୁ ସିଏ ତାକୁ ନ ପଚାରି ମୁଁ କ'ଣ ଛାଡୁଛି ? ସେତେବେଳେ ତୁମେ ତା'ପିଠିଆ ହୋଇ ଆଉ ସୁଆଗ ଦେଖେଇ ଓଲଟି ପଡ଼ିବ ନାହିଁଟି ?

ବ.ବାବୁ ଠିକ୍ କଥା ତାକୁ ପଚାର । ଏବେ ଗଲ ମୋତେ ଟିକେ ଚା'ପାଣି ଦେଲ ।

ମା.ଆ ଚା' ପାଣି । ଆଗ ଫଇସଲା ହେଉ । ନ ହେଲେ ଚା'ପାଣିଠାରୁ ଆରମ୍ଭ କରି ପଖାଳ ତୋରାଣି ପର୍ଯ୍ୟନ୍ତ ସବୁ ବନ୍ଦ ।

ବ.ବାବୁ ଆରେ ସିଏ ତ ଗପିଲା ଦୋଷ ତା'ର । ମୋର ଚା'ପାଣି ବନ୍ଦ ହେଲା କାହିଁକି ?

ମାଆ ମୋ ପାଟିରୁ କଥା ଖସିଗଲା ମାନେ ଧନୁରୁ ତୀର ଖସିଗଲା ବୋଲି ଜାଣ ଆଗ ଫଇସଲା ତା'ପରେ ଚା'ପାଣି ।

ବ.ବାବୁ ବଡ଼ ଅଜବ ପ୍ରକାରର ସ୍ତ୍ରୀଲୋକ ଇଏ । ଆରେ ଶାସ୍ତ୍ର କହୁଛି ସ୍ତ୍ରୀ ଚାରି ପ୍ରକାରର କ'ଣ ତ...ପଦ୍ମିନୀ, ଇଏତ ଏମାନଙ୍କ ମଧ୍ୟରୁ କାହାରି ଭିତରେ ଆସୁନି ଇଏ ବୋଧହୁଏ ଗୋଟିଏ ଅଲଗା ପ୍ରଜାତିର ସ୍ତ୍ରୀଲୋକଟାଏ ଯାକୁ ବିଭ୍ରାଟ କାରିଣୀ ପର୍ଯ୍ୟାୟଭୁକ୍ତ କରାଯାଇପାରେ ।

ମାଆ କ'ଣ କହିଲ, କ'ଣ କହିଲ ? ମୋତେ କହିଲ ?

ବ.ବାବୁ ନାଇଁ ନାଇଁ ତୁମକୁ କହିନି । ତୁମ ପ୍ରଜାତି କଥା କହୁଥିଲି । ହେଲେ କିନ୍ତୁ...

କୋରସ୍ (ପ୍ରବେଶୀ) ନା ନା ନା ନା ...କିନ୍ତୁ ଏକ ଶବ୍ଦ ।

ସଂଗୀତ :

୧ମ ଏଇ ଜୀବନଟା । ଏକ ସଙ୍ଗୀତ...ସଙ୍ଗୀତ...ସଙ୍ଗୀତ(୨ଥର)

୨ୟ ପ୍ରେମର ହେଉବା ବିରହର, ମଧୁମୟ ସେଇ ସଙ୍ଗୀତ ।

୩ୟ ତାଳ, ଲୟ, ଛନ୍ଦ, ଗତି ଅବାରିତ ସ୍ୱର ଶ୍ରୁତି ତା'ର ଅତି ସୁଲଳିତ ।

ଏକ ତାଳେ ଛନ୍ଦା ଅନେକ ମୂର୍ଚ୍ଛନା ଏକକୁ ଆରେକ ଅମୃତ ରଚନା ।

୪ର୍ଥ ଗାୟକ, ବାଦକ, ଯଦି ଯାନ୍ତି ଛୁଡ଼ି, ସଂଗୀତର ଛନ୍ଦ ପଥଯାଏ ଛୁଡ଼ି ।

୧ମ ଗାୟକ ବାଦକ ଯଦି ଥିଲେ ଏକ ଶ୍ରୋତାତ ସହଜେ ହୁଅନ୍ତି ବିମୁଗ୍ଧ ।

୨ୟ ଜୀବନ ସେମିତି ଜୀବିକା ସେମିତି ଛୁଡ଼ିଯାଏ ଯଦି ସାବଲୀଳ ଗତି

୩ୟ ଉଜୁଡ଼ିଯାଏ ସେ ଜୀବନର ସ୍ୱାଦ ଜୀବନଟା ହୁଏ ନରକରୁ ମନ୍ଦ...

୪ର୍ଥ ଜୀବନଟା ଜାଣ ସଙ୍ଗୀତ...ସଙ୍ଗୀତ...ସଙ୍ଗୀତ

ପ୍ରେମର ହେଉବା ବିରହର ମଧୁମୟ ସେଇ ସଙ୍ଗୀତ...

(ମିତା ଘରର ପୂର୍ବ ଦୃଶ୍ୟ ପ୍ରବେଶ କଲେ ପିତା)

ମାଆ ଏ...ଏଠିକି ଆସିଲୁ । ଦେଖିଦେଖି ତୋ ମୁହଁକୁ ଦେଖି । (ମୁହଁକୁ ଦେଖିବା)

ମିତା କାହିଁକି ?

ମାଆ ସେଠି କ'ଣ ସବୁ ଜଳଛବି ଲଗେଇଛୁ ଶୁଣିଲି ।

ମିତା ତୁ ପାଗଳ ହୋଇଗଲୁଣି ବୋଧ ହୁଏ । ମୁହଁରେ ଜଳଛବି ଲଗେଇବି କାହିଁକି । ଦେଖିଲ ଦେଖିଲ ବାପା । ମୋ ମୁହଁରେ କ'ଣ ଲାଗିଛି ?

ମାଆ ଆଜି ବାପା ଦେଖିବେ ନାହିଁ । ମୁଁ ଦେଖିବି ।

ମିତା କ'ଣ ?

ମାଆ ତୋ ମୁହଁରେ ଜଳଛବି ।

ମିତା ଜଳଛବି କ'ଣ କିଲୋ ବୋଉ ।

ମାଆ ତୋ ବାପା ଜାଣନ୍ତି ।

ମିତା ବାପା ଜଳଛବି କ'ଣ ?

ବ.ବାବୁ ନା ନା ମୁଁ ତ ଜାଣିନି । ଜଳଛବି କ'ଣ ?

ମାଆ ଆମେ ପିଲାଦିନେ ସବୁ ହାତରେ ଗାଲରେ ଲଗାଉ ନ ଥିଲୁ ଜଳଛବି ।

ମିତା ଆଲୋ ହେଇଟି ବାପା । ଇଏ ଜଳଛବି କାହାକୁ କହୁଛି କହିଲ ?

ବ.ବାବୁ କାହାକୁ ।

ମିତା ଟାଟୁକୁ ...ଜଳଛବି କହୁଛି । ତୁ ଆଉ ହବୁନି ବୁଝିଲୁ ବୋଉ ।

ମାଆ ସେ ସୁଆଗ ଛାଡ଼ବା ହେଇଟି ବୁଝିଲ ଇଏ କାଳେ ତା'ଦିଦିଙ୍କର ଜଳଛବିକୁ ମୁହଁରେ ଛାପି ବୁଲୁଛି । ତା' ମୁହଁ ବହିରେ

ମିତା କିଏ କହିଲା ?

ମାଆ ହେଡ୍ ଦିଦି କହିଲେ ।

ମିତା ମୁହଁରେ ନୁହେଁ ସେ ଫେସ୍‌ବୁକ୍ କଥା କହିଥିବେ ?

ମାଆ ହଁ ସେଇ ଏକା କଥା ହେଲାନି, ଫେସ୍ ମାନେ ମୁହଁ ବୁକ୍ ମାନେ ବହି । ମୁହଁବହି । ମୁଁ କ'ଣ ପାଠ ପଢ଼ିନି । A for Apple, B for Book, C for Cat ମୁଁ ବି ଇଂରାଜୀ ପଢ଼ିଛିଲୋ ଝୁଅ ତୁ ମୋତେ ବାଆଁରେଇ ଦେଇ ପାରିବୁ ନାହିଁ । କେଉଁଠି ଛାପିଛୁ ସେ ଜଳଛବି ଦେଖା । ନହେଲେ ।

ବ.ବାବୁ ଖାଇବା ପିଇବା ବନ୍ଦ । ସେଇଆ ତ ଆଉ କ'ଣ ମୋର ଚା'ପାଣି ବନ୍ଦ ତୋର ଖାଇବା ବନ୍ଦ...ଜାଣ ଆଜି ଓଡ଼ିଶା ବନ୍ଦ । ବାସ୍ ଏବେ କ'ଣ କରିବୁ କହ ? ଯାହା କହିବା କଥା ସହଳ ସହଳ କହିପକା ମୋତେ ଭାରି ଭୋକ ।

ମିତା ମୁଁ ଛାପିନି । ଆଉ କିଏ ଛାପିଥିବ-ମୁଁ ଜାଣିନି ।

ମାଆ ଜାଣିନି ନା ଜାଣି ସିଆଣା ହେଉଛୁ ? ହେଇଟି ଜାଣିଥା । ସଫା ସଫା କହି ଦେଉଛି ସେ ବହି ତୋ ମୁହଁରେ ଛପା ହେଉ କି ଆଉ କାହା ମୁହଁରେ ଛପା ହେଉ । ବାହାର କଳି ଯଦି ଆଣି ଘରେ ପୁରେଇଛୁ ତା'ହେଲେ ମୁଁ ଏ ଘରେ ରହିବି ନାହିଁ କି ଏ ଘରେ କାହାକୁ ରଖେଇ ଦେବି ନାହିଁ । ଖାଲି ସେତିକି ନୁହେଁ, ଏ ଘର ବି ରହିବ ନାହିଁ ହଁ ।

ବ.ବାବୁ ଆରେ କ'ଣ ହୋଇଛି ଖୋଲି କହୁନୁ-କହ ।

ମିତା ସ୍କୁଲରେ ଆଜି ପାଚିକା ମାଉସୀ ଆସିନଥିଲା । ଦିଦି କହିଲେ ରୋଷେଇ କର । ତେଣୁ ମୁଁ ଆଉ କିଛି ବଡ଼ବଡ଼ ପିଲାମିଶି ରୋଷେଇ କଲୁ । ସେଇଆକୁ ଫଟୋ ଉଠେଇ କିଏ ଫେସ୍‌ବୁକ୍‌ରେ ଛାଡ଼ି ଦେଇଛି ଯେ, ଦିଦି ଭାବୁଛନ୍ତି ଏ କାମ ମୁଁ କରିଛି ।

ବ.ବାବୁ କାହିଁକି ?

ମିତା କେଜାଣି ? କାହିଁକି ମୋ ଉପରେ ସଦାବେଳେ ଗରଗର ହେଉଛନ୍ତି ।

ମାଆ ଆହୁରି କହୁଥିଲେ ଘଣ୍ଟାଘଣ୍ଟା ଧରି କାନରେ ଫୋନ୍‌କୁ ଯାକି କାହା ସାଙ୍ଗରେ ଗପୁଛି ।

ବ.ବାବୁ କାହା ସାଙ୍ଗରେ ଗପୁଛୁ ?

ମିତା ମୋ ସାଙ୍ଗ ସାଙ୍ଗରେ ।

ବ.ବାବୁ ସାଙ୍ଗଟା କିଏ ? Boy ନା girl ?

ମିତା Boy Friend ସେଇଠୁ କ'ଣ ହେଲା ?

ମାଆ କ'ଣ ହେଲା ମାନେ...କହୁଛି କ'ଣ ନା Boy Friend ଆରେ ଲାଜ ସରମ ସବୁ ପୋଡ଼ି ଖାଇଗଲୁଣି ନା କ'ଣ ? ଅଲାକୁକି ପୁଣି କହୁଛି କ'ଣ ନା Boy Friend ଆରେ ତାକୁ ହିଁ ଜାକି ଘଣ୍ଟାଘଣ୍ଟା ଧରି ଗପୁଛୁ ।

ବ.ବାବୁ — ଓ ହୋ...ଶବ୍ଦର ଠିକ୍ ଠିକ୍ ପ୍ରୟୋଗ କର । ନହେଲେ ସେଇଟା କଦାର୍ଥ ହୋଇଯାଉଛି । ତାକୁ ଜାକି ନୁହେଁ ତା' ଫୋନ୍‌କୁ କାନରେ ଜାକି ।

ମିତା — ନା ନା ସେଇଟା ବି ସଂପୂର୍ଣ୍ଣ ଠିକ୍ ଶବ୍ଦ ନୁହେଁ ।

ବ.ବାବୁ — ତା'ମାନେ

ମିତା — ତାକୁ ନୁହେଁ କି ତା' ଫୋନ୍‌କୁ ଜାକି ନୁହେଁ ମୁଁ ମୋ ଫୋନ୍‌ରେ ତା'ସହିତ କଥା ହେଉଥିଲି – ବାଶ୍ ।

ମାଆ — ସେଇ ବାଶ୍‌ଟା କିଏ ଶୁଣେ ।

ମିତା — ମୋ ସାଙ୍ଗ ।

ବ.ବାବୁ — ସେ କରେ କ'ଣ ?

ମିତା — ସରକାରୀ ଚାକିରିଆ ।

ମାଆ — ସତେ ନା କ'ଣ ? କି ଚାକିରି କିଲୋ । ଆହା ମୋ ଝିଅଟା କେତେବେଳୁ କିଛି ଖାଇନି ମୁହଁଟା ଶୁଖିଗଲାଣି । ଚାଲଚାଲ କ'ଣ ଦି'ଟା ଖାଇଦବୁ । ହଁ କହିଲୁନି ତ କି ଚାକିରି ?

ମିତା — Data Entry Operator(D.E.O)

ମାଆ — ହଁ । ଏତେ ବଡ଼ ଚାକିରି...ଅଫିସର...

ବ.ବାବୁ — ଅଫିସର ନା ଛେନା ଛତୁ । ଦରମା କେତେ ଜାଣିଛ ?

ମାଆ — ଜାଣେନି ।

ବ.ବାବୁ — ପାଞ୍ଚ ହଜାର...ପୁଣି ଅଫିସର...

ମାଆ — ଆରେ ଆରେ ମୁଁ ତ ଭାବିଥିଲି ବଡ଼ ଅଫିସର ।

ବ.ବାବୁ — ଇଂରାଜୀ ଶବ୍ଦଟାଏ ଶୁଣି ପକେଇଲେ ତ ତୁମେ ହାଇଁ ପାଇଁ ହୋଇଯାଉଛ । ହେ ମିତା ! ସେ ଖାଲି ତୋ ସାଙ୍ଗ ନା ତା'ଠାରୁ ଅଧିକ କିଛି ।

ମିତା — (ନିରବ)

ମାଆ — ଉତ୍ତର ଦେଉନୁ ଦେ...ମୌନେ ସମ୍ମତି ଲକ୍ଷଣମ୍...

ବ.ବାବୁ — ତୁମେ ଦୁହେଁ କ'ଣ ବାହାହେବାକୁ ଠିକ୍ କରିଛ ?

ମିତା — ସେମିତି କିଛି Decide କରିନୁ । ତେବେ ହେଲେ କ୍ଷତି କ'ଣ ?

ମାଆ — ବାହାଘରଟା ମିଛି ମିଛିକା କଣ୍ଢେଇ ଖେଳ ନୁହେଁ ଯେ ସକାଳେ ଖେଳିବ ଆଉ ଦି'ପ୍ରହରକୁ ଭାଙ୍ଗି ଦେଇ ପଳେଇବ ।

ମିତା — ଏମିତି କେତେ ସତ ସତିକା ବାହାଘର ବି ବେଦୀ କି ଯିବା ଆଗରୁ ଭାଙ୍ଗି ଯାଉଛି । କେଉଁଠି କନିଆଁ ଅନ୍ଧାରରେ ଲୁଚି ଆଉ କାହା ସାଙ୍ଗରେ ପଳେଇ ଯାଉଛି ତ କେଉଁଠି କନିଆଁ ବାହା ହେବାକୁ ମନା କରି ଦେଉଛି । ସେ ବାହାଘର ସବୁ ତ କଣ୍ଢେଇ ଖେଳଠୁ ଆହୁରି ହୀନ, ନୁହେଁ କି ?

ମାଆ — ଚୁପ୍ ମୁହଁ ଉପରେ ଜବାବ ଦେଉଛୁ । ଏସବୁ ତୋରି ଭଳିଆ ଅଧାପାଠୁଆ ଝିଅଙ୍କ ବେପରୁଆ ମନ ଯୋଗୁଁ ହେଉଛି । କହନ୍ତି ନାହିଁ ଅଳ୍ପ ବିଦ୍ୟା ଭୟଙ୍କରି । ଆଉ ସିଏ ପୁଣି ଏଇ ପ୍ରେମ କାରଣରୁ । ତୋର ପ୍ରେମ ବାହାଘର ହୋଇପାରିବନି । ଆମେ ତୋ ପାଇଁ ବର ଦେଖିବୁ ।

ମିତା — ଦେଖୁନ ଦେଖ କିଏ ମନା କରୁଛି । ଦି'ଚାରି ଜାଗା ବୁଲି ଭୋଜିଭାତ ଖାଇବ । ଦି'ଚାରି ଘର ଲୋକଙ୍କୁ କନ୍ୟା ଦେଖାଇବାକୁ ଡାକି ଭୋଜିଭାତ ଖୁଆଇବ । ସାଇ ପଡ଼ିଶା, ବନ୍ଧୁ ବାନ୍ଧବ ସବୁ

ଖାଇ ପିଇ ନିଶରେ ହାତମାରି ତୁମର ପ୍ରଶଂସା କରିବେ । ଆଉ ସେଇ ଚକ୍କରରେ ତୁମେ ୧୦/୨୦ ହଜାର ଖର୍ଚ୍ଚ ବି କରିବ । ଅସୁବିଧା କ'ଣ ?

ବ.ବାବୁ	ପଇସା କଥା ତୋର ଚିନ୍ତା କରିବା ଦରକାର ନାହିଁ । ମୋତେ ଆଗ କହ ତୁ ରାଜି ତ ?

ମିତା	ହଁ ରାଜି । କିନ୍ତୁ ଦୁଇଟି ସର୍ତ୍ତରେ । ମୋର ସର୍ତ୍ତ ରଖିବ ଯଦି ମୁଁ ରାଜି ।

ବ.ବାବୁ	ହେଉ ସର୍ତ୍ତ କ'ଣ କହ

ମିତା	କନ୍ୟା ଦେଖା ଆଗରୁ ବର ଦେଖା ହେବ ।

ବ.ବାବୁ	ଏଇଟା ଗୋଟିଏ କଥା । ମୁଁ ରାଜି । ୨ୟ ସର୍ତ୍ତ ।

ମିତା	ଆଗ ମୁଁ ବର ଦେଖିବାକୁ ଯିବି । ତା'ପରେ...

ମାଆ	କ'ଣ ଝିଅ ପିଲାଟା ହୋଇ ଆଗ ତୁ ବର ଦେଖିବାକୁ ଯିବୁ । ଦେଖୁଛ ଦେଖୁଛ ତା' କଥାକୁ । ଆରେ ଝିଅ ପିଲା କ'ଣ ବର ଦେଖିବାକୁ ବର ଘରକୁ ଯାଆନ୍ତି । ବର ପରା ଏଇଠିକି ଆସିବ ଏଇଠି ତୁ ତାକୁ ଦେଖି ଦେବୁନି । ତାକୁ ଦେଖିବାକୁ ତା'ଘରକୁ ଯିବା କ'ଣ ଦରକାର ?

ମିତା	ଗଲେ କ୍ଷତି କ'ଣ ? ବାହାଘର ପରେ ତ ମୋତେ ସେଠି ରହିବାକୁ ପଡ଼ିବ ନା ବର ଆସି ଏଇଠି ରହିବ । ଯଦି ମୋତେ ସେଠି ରହିବାକୁ ପଡ଼ିବ ତା'ହେଲେ ସେମାନଙ୍କ ଘର, ଗାଁ, ସେଠାକାର ପରିବେଶ, ସେ ଘରର ପରିବେଶ ତାଙ୍କର ଚଳଣି ସେ ସବୁ ମୋର ଆଗରୁ ଜାଣିବା ଦରକାର ନା ନାହିଁ । ଆଉ ଯଦି ତୁ କହିବୁ ଯେ ବାହାଘର ପରେ ମୋ ବର ଆସି ଏଇଠି ରହିବ । ତା'ହେଲେ ମୋର ସେଠିକି ଯିବା ଦରକାର ନାହିଁ ।

ମାଆ	ଆରେ ଝିଅମାନେ ବର ଘରକୁ ଯିବାର ଚଳଣି ନାହିଁ ।

ମିତା	ନାହିଁ ଯଦି ନୂଆ କରି ହେବ । ଦେଖ ବୋଉ ଆଗେ ସ୍ତ୍ରୀଲୋକମାନେ ହାତେ ଓଢ଼ଣୀ ଟାଣୁଥିଲେ, ନଇଁ ନଇଁ ଚାଲୁଥିଲେ । ତୁ ତ କାହିଁ ଓଢ଼ଣୀ ଟାଣୁନୁ କି ନଇଁ ନଇଁ ଚାଲୁନୁ ।

ବ.ବାବୁ	ଆରେ ସିଏ ନଇଁ ଚାଲିବ ଯଦି ଅଣ୍ଟାରେ ପଣତକୁ ଭିଡ଼ି ଉଚ୍ଛନ୍ନ କରିବ କିଏ ?

ମାଆ	ଆରେ ତୁମେ ଚୁପ୍ କର ।

ମିତା	ଠିକ୍ ଅଛି ତୁମେ ମଧ୍ୟ ମୋ ସହିତ ମୋ ସାଙ୍ଗରେ ବର ଦେଖିବାକୁ ଯାଇପାର ।

ମାଆ	ଯାଇପାର ମାନେ କ'ଣ ତୋ ଦୟାରେ ।

ବ.ବାବୁ	ଆରେ ଆରେ ଆମ ଉପରେ କ'ଣ ତୋର ଭରଷା ନାହିଁ । ଆମେ ଯାହା କରିବୁ ତୋର ମଙ୍ଗଳ ପାଇଁ ହିଁ କରିବୁ ନା ନାହିଁ ।

ମିତା	ତୁମର ବି ତ' ମୋ ଉପରେ ଭରଷା ନାହିଁ । ମୁଁ ଯାହା କରୁଛି ବା କରିବି ସେଥିରେ ତୁମମାନଙ୍କର କ୍ଷତି କରିବି ଏକଥା କେମିତି ତୁମେ ଭାବି ପାରୁଛ ?

ବ.ବାବୁ	ତୁ ପିଲାଲୋକ ବୁଝିପାରୁନୁ ଯେ ବହୁତ ଲଭ୍ ମ୍ୟାରେଜ ସଫଳ ହୁଏନା ।

ମିତା	ବହୁତ ଏରେଞ୍ଜଡ ମ୍ୟାରେଜ ବି ସଫଳ ହୁଏନା । ଏଇ ଧର ମାମୁଙ୍କ ବାହାଘର ତୁମେ ଦୁହେଁ ତ ଠିକ୍ କରିଥିଲ ନା ନାହିଁ ।

ବ.ବାବୁ	ସେ କଥା କାହିଁକି କହୁଛୁ, ସେ କି ବାହାଘର, କି ଖାଇବା ପିଇବା, କି ବାଣ, ରୋଷଣୀ, ବାହାଘର ଭଳିଆ ବାହାଘର ଗୋଟିଏ ହୋଇଥିଲା ନା ଆଉ ।

ମାଆ	ବୁଝିଲୁ ଝିଅ ତୋ ମାମୁଁ ପରା ମୋତେ ୬୦୦୦ଟଙ୍କାର ପାଟଶାଢ଼ୀ ଦେଇଥିଲା ।

| | |
|---|---|
| ମିତା | ହେଲେ ବର୍ଷ ୨ଟା ନ ପୂରୁଣୁ ସେମାନଙ୍କର Divorce ହେଲା ନା ନାଇଁ । |
| ମାଆ | ତା'ର ହେଲା ବୋଲି କ'ଣ ସମସ୍ତଙ୍କର ହେବ ? କାହିଁ ଆମର ତ ଆଜକୁ ୨୫ ବର୍ଷ ହେଲା ବାହାଘର ହେଲାଣି କାହିଁ ସେମିତି କିଛି ତ ଆମର ହୋଇନି । |
| ମିତା | ଭବିଷ୍ୟତ କିଏ ଦେଖିଛି ? |
| ବ.ବାବୁ | ସେ କଥା ସତ ଯେ, ତଥାପି ଶୁଣ । ଟିକିଏ ବୁଝିବାକୁ ଚେଷ୍ଟା କର । ତୁମେ ଦୁହେଁ ବାହା ହେବାକୁ ଠିକ୍ କରିଛ । ଅଥଚ ତୋର ଦରମା ୨୫୦୦କୁ ତା' ଦରମା ୫୦୦୦ଟଙ୍କା । ସେତିକି ଟଙ୍କାରେ ଘରଭଡ଼ା ଦେବ କେତେ, ଖାଇବ କେତେ ସଞ୍ଚିବ କେତେ ? ଆଉ ବଞ୍ଚିବ କେମିତି ? |
| ମାଆ | ଶେଷରେ ପଇସା ପାଇଁ ରାତି ଦିନ କଳି ଲାଗି ବର୍ଷେ ପୁରୁଣୁ ନ ପୁରୁଣୁ ଛାଡ଼ପତ୍ର । ପ୍ରେମ ବାହାଘରରେ ଏଇଆ ତ ହେଉଛି, ଆମେ ଦେଖୁନୁ କି ? |
| ମିତା | ସବୁ ଘରେ କଳି କଜିଆ ହେଉଛି । ଦିନରାତି ହେଉଛି । ସେଇ ପଇସା ପାଇଁ ଆମ ଘରେ ବି ନିତି କଳି ହେଉଛି । |
| ବ.ବାବୁ | ହେଲେ ଆମ ଘର ତ କାହିଁ ଭାଙ୍ଗି ଯାଉନି । କାରଣ... |
| ମାଆ | ଆମେ ପ୍ରେମ କରି ବାହା ହୋଇନୁ । |
| ବ.ବାବୁ | Exactly ବରଂ ଆମେ ବାହା ହୋଇ ପରସ୍ପରକୁ ଭଲ ପାଇଛୁ । ଶୁଣ ମିତା ବାହା ହୋଇ ଭଲ ପାଇଲେ ଭଲ ପାଇବାଟା ଜିରୋରୁ ଆରମ୍ଭ ହୋଇ କ୍ରମେ କ୍ରମେ ବଢ଼ି ବଢ଼ି ହଣ୍ଡରେଡ୍ ପର୍ଯ୍ୟନ୍ତ ବଢ଼େ । କିନ୍ତୁ ଭଲପାଇ ବାହା ହେଲେ ଭଲ ପାଇବାଟା ହଣ୍ଡରେଡ୍‌ରୁ ଆରମ୍ଭ ହୋଇ ବାହା ଘର ପରେ କ୍ରମେକ୍ରମେ ଛିଡ଼ିଛିଡ଼ି ଜିରୋରେ ଆସି ପହଞ୍ଚିଯାଏ । ଆଉ ଶେଷରେ ତମ ପ୍ରେମର ପୂର୍ଣ୍ଣମୀ ଜହ୍ନଟା ଛିଡ଼ିଛିଡ଼ି ହଠାତ୍ ଦିନେ ଅମାବାସ୍ୟାର ଚନ୍ଦ୍ର ପାଲଟିଯିବ । ହେଲେ ଏଠି ସକାଳ କଳି ସଞ୍ଜକୁ ନ ଥାଏ କି ସଞ୍ଜୁଆ କଳି ସକାଳ ଦେଖେନି । |
| ମିତା | ସେମିତି ଅନେକ ବାହାଘର ମଙ୍ଗନରୁ ଆରମ୍ଭ ହୋଇ ଅଷ୍ଟମଙ୍ଗଳା ବେଳକୁ ତା'ର ବାହୁଡ଼ା ଯାତ୍ରା ଆରମ୍ଭ କରିଦିଏ କେଉଁଠି ନୂଆବୋହୂ ଯୌତୁକ ବେଦୀରେ ବଳି ପଡ଼ିଯାଏ ତ କେଉଁଠି ଛାଡ଼ପତ୍ର ଧରି ଜୀବନସାରା ଭାଗ୍ୟକୁ ଦୋଷ ଦିଆଯାଏ । ସବୁବେଳେ ଆମ ପ୍ରଥା ସତ୍ୟ ହୁଏନା । |
| ବ.ବାବୁ | ସବୁବେଳେ ନ ହେଲେ ବି ଅଧିକାଂଶ କ୍ଷେତ୍ରରେ ଏହା ସତ୍ୟ ହୁଏ । କାରଣ ସତ୍ୟରୁ ସ୍ୱପ୍ନକୁ ରାସ୍ତାଟା ସବୁବେଳେ ଉଠାଣି ଉଠାଣି ଆକାଶ ଛୁଆଁ ହେଲେ ସ୍ୱପ୍ନରୁ ସତ୍ୟକୁ ରାସ୍ତାଟା ସବୁବେଳେ ଗଡ଼ାଣି ଗଡ଼ାଣି ରସାତଳକୁ ଲୋ ଝିଅ । |
| ମିତା | ମୁଁ ମାନୁଛି ଯେ ସ୍ୱପ୍ନ ଯେବେ ମିଛ ହୋଇଯାଏ । ସେ ରାସ୍ତାଟା ରସାତଳକୁ ଖସିଯାଏ । ହେଲେ ବାପା ତୁମେ ଟିକିଏ ଚିନ୍ତା କରି ଦେଖିଲ । ମଣିଷର ସ୍ୱପ୍ନ ଯେବେ ସତ ହୋଇଯାଏ, ସେତେବେଳେ ତା'ର ସୁଖ ତ ଆଉ ସୁଖ ହୋଇ ରହେନା ବରଂ ତାହା ଆନନ୍ଦରେ ପରିଣତ ହୁଏ । |
| ବ.ବାବୁ | ହେଲେ ସାଂସାରିକ ସୁଖ ପାଇଁ ଯଥେଷ୍ଟ ଅର୍ଥର ଆବଶ୍ୟକତା । ସବୁ ସମୟରେ ଥିଲା, ଆଜି ବି ଅଛି ଏବଂ ସବୁବେଳେ ରହିଥିବ । |
| ମିତା | ତୁମେ ପରା କହୁଥିଲ । ତୁମେ ତୁମର ଚାକିରି ୨୦୦ଟଙ୍କାରୁ ଆରମ୍ଭ କରିଥିଲ ବୋଲି । ତା'ହେଲେ ଆମେ ପାରିବୁନି କାହିଁକି ? |

| | |
|---|---|
| ମାଆ | ସେ କାଳ ପଖାଳ ଆଉ ନାହିଁ ଲୋ ଝିଅ । ତୁମେ ସବୁ ସ୍ୱାଧୀନତାକୁ ସ୍ୱେଚ୍ଛାଚାରିତା ଭାବି ନେଇଛ ସେଇଥିପାଇଁ କୁମ୍ଭୀରକୁ କାଠ ଗଡ଼ ମଣୁଛ । କିନ୍ତୁ କୁମ୍ଭୀର ଯେବେ ଆଁ କରିବ ତୁମେ ସବୁ ବେହୋସ ହୋଇ ତା'ପାଟିରେ ପଶିବ । ନହେଲେ ଆମ ସଂସାରର ପରମ୍ପରାକୁ ଉପହାର କରନ୍ତ ? |
| ମିତା | ସେଦିନ ଖବର କାଗଜରେ ପରା ପଢୁଥିଲୁ ୬୫ ବର୍ଷର ବୁଢ଼ା ୪୦ ବର୍ଷ ବାହାଘର ପରେ ବି ତା'ର ସ୍ତ୍ରୀକୁ କଟୁରୀରେ ହାଣି ପ୍ରେସର କୁକୁରରେ ଭରି କେମିତି ଫ୍ରୀଜ୍‌ରେ ରଖିଦେଇଥିଲା । ସେଇଟା କି ବାହାଘର ଥିଲା ପଢ଼ିଛୁ ତ ? |
| ବ.ବାବୁ | ସିଏ ହୁଏତ ବାହା ହୋଇଥିଲା ମାତ୍ର ପ୍ରେମ କରି ନଥିଲା । |
| ମିତା | ମୁଁ ବି ତ ସେଇ କଥା ହିଁ କହୁଛି ପ୍ରେମ କରିବା କିଛି ଖରାପ କଥା ନୁହେଁ । |
| ମାଆ | ହେଲେ ପ୍ରେମ କରି ବାହାହେବାଟା ଖରାପ କଥା । (ସ୍ୱାମୀକୁ) ତୁମେ ତା'କଥା ଶୁଣିବା ଦରକାର ନାହିଁ । ଶୀଘ୍ର ଭଲ ଚାକିରିଆ ବର ଗୋଟିଏ ଠିକ୍ କର ତା' ବାହାଘର କରିଦେବା । |
| ମିତା | ଭଲ ଦରମା ପାଉଥିବା ଲୋକ ଯେ ଭଲ ମଣିଷଟିଏ ହୋଇଥିବ । ଯୌତୁକ ନିର୍ଯ୍ୟାତନା ଦେବ ନାହିଁ ଯାର କ'ଣ କିଛି ଗ୍ୟାରେଣ୍ଟି ତୁ ଦେଇପାରିବୁ ? |
| ମାଆ | (ଥ ଥ ମ ମ ହୋଇ) ହଁ ହଁ ଦେଇ ପାରିବି । |
| ମିତା | ତା'ହେଲେ ଖବର କାଗଜରେ ଯେ ବାହାରୁଛି, ମନ୍ତ୍ରୀ ଯନ୍ତ୍ରୀଠାରୁ ଆରମ୍ଭ କରି ବଡ଼ ବଡ଼ ଘରର ବୋହୂମାନେ ଯୌତୁକ ନିର୍ଯ୍ୟାତନା ପାଇଁ ମହିଳା କମିଶନଙ୍କ ଦ୍ୱାରସ୍ଥ ହେଉଛନ୍ତି କାହିଁକି ? ତା'ର କାରଣ କ'ଣ ? |
| ମାଆ | ସେମିତି କାଁ ଭାଁ ହେଉଥିବ । ତା' ଭିତରେ ପଲିଟିକ୍ସ ବି ଥାଇପାରେ । |
| ମିତା | (ବାପାଙ୍କୁ) ବୋଉ ଯାହା ଭାବୁଛି, ତୁମେ କ'ଣ ସେଇଆ ଭାବୁଛ ? |
| ବ.ବାବୁ | ତୁ ଯାହା କହୁଛୁ ହୁଏତ ଠିକ୍ ହୋଇଥାଇପାରେ । ବୋଉ କଥାବି ସବୁ କିନ୍ତୁ ମିଛ ନୁହେଁ । |
| କୋରସ୍ | (ପ୍ରବେଶ) ନା ନା ନା ନା...କିନ୍ତୁ ଏକ ଶବ୍ଦ । |
| କୋରସ ୧ | ସର୍କସ ଦେଖ ସର୍କସ ଏଇ ଜୀବନଟା ଏକ ସର୍କସ । |
| କୋରସ ୨ | ଦେଖିବାକୁ ଲାଗେ ମଜାଦାର, ଖେଳୁଥିବା ଲୋକ ହୁସିଆର |
| କୋରସ ୩ | ଜୋକର ହେଉ ବା ରିଂମାଷ୍ଟର ଦୋଳି ଖେଳାଳି ବା ଛୁରୀ ଖେଳାଳି |
| କୋରସ ୪ | ଯିଏ ଯା ଖେଳରେ ଦେଖାଏ ଯୋଶ... |
| ସମସ୍ତେ | ସର୍କସ ଦେଖ ସର୍କସ ଏଇ ଜୀବନଟା ଏକ ସର୍କସ |
| କୋରସ ୧ | ଜୀବନ ଖେଳବି ସେମିତି ଜାଣ ପାଦ ହୁଡ଼ିଗଲେ ନିଜେ ଛୋଟା ସିନା |
| କୋରସ ୨ | କର୍ମ ହୁଡ଼ିଗଲେ ଛୋଟା ସଂସାର । |
| କୋରସ ୩ | ଥାଆନ୍ତୁ ସେଥିକି ସଦା ତତ୍ପର |
| କୋରସ ୪ | କରମକୁ ଯଦି କରିଥିବୁ ବଶ ଧରମୁ କେବେ ନ ଦେବୁ ଦୋଷ |
| ସମସ୍ତେ | ସର୍କସ ଦେଖ ସର୍କସ, ଏଇ ଜୀବନଟା ଏକ ସର୍କସ । |

## ତୃତୀୟ ଦୃଶ୍ୟ

(ସମୟ ସକାଳ । ମିତା ଘରର ଦୃଶ୍ୟ । ନୈପଥ୍ୟରୁ ଘୋଷଣା)

ଘୋଷଣା — ଘଟଣା ଘଟିବାର ବେଶ୍ କିଛି ଦିନ ପରେ । (ଘୋଷଣା ପରେ ଆଲୁଅ ଆସିଲା)

ମିତା — ବୋଉ ନେ...

ମାଆ — କ'ଣ ?

ମିତା — ଗୋଲାପ ଫୁଲ ।

ମାଆ — କେଉଁଠୁ ଆଣିଲୁ ? ଆମ ବାଡ଼ିରେ ତ ଗୋଲାପ ଗଛ ନାହିଁ ।

ମିତା — ଆମ ବାଥରୁମରୁ ଆଣିଲି । ବାପାଙ୍କ ସାର୍ଟ ପକେଟରେ ଫୁଟି ଥିଲା ।

ମାଆ — ଆଗରୁତ କେବେ କାହିଁ ଫୁଟୁ ନ ଥିଲା ।

ମିତା — (ଶୁଂଘି) ସେଥିରେ ପୁଣି ଅତର ବାସୁଛି । ନେ ରଖ ।

ମାଆ — ମଲା ମଲା । ଗୋଲାପର ବାସ୍ନାରେ ମହକିଲା ନାହିଁ ଯେ ପୁଣି ଅତର ଦରକାର ପଡ଼ିଲା । କାହିଁ ଦେଖି ଦେଖି (ଶୁଘିଂଲେ) ଆରେ ସତେ ତ, ନେ ନେ ଫୋପାଡ଼ ଯାକୁ ।

ମିତା — ଫୋପାଡ଼ି ଦେଲେ କ'ଣ ଅତରର ବାସ ମଉଳି ଯିବ ନା ଗୋଲାପ ଆଉ ଫୁଟିବ ନାହିଁ ।

ମାଆ — ମାନେ ।

ମିତା — ଏ ଫୁଲ ଯେଉଁଠୁ ଫୁଟୁଛି ସେଇ ଗଛଟାକୁ ଖୋଜି ତାକୁ ମୂଳରୁ ଓପାଡ଼ିବାକୁ ପଡ଼ିବ ।

ମାଆ — ହେଲେ ଜାଣିବା କେମିତି ?

ମିତା — ତୁ ଚିନ୍ତା କରନା । କାରଣ ମୁଁ ଚିନ୍ତା କରୁଛି ଯେତେବେଳେ, ତୋର ଚିନ୍ତା କରିବାର ଦରକାର ନାହିଁ । ତୁ ହିନ୍ଦି Serial India Fights back ଦେଖୁଛୁ । ଆମକୁ ସେମିତି କିଛି କରିବାକୁ ପଡ଼ିବ ।

ମାଆ — ମୁଁ କିଛି ବୁଝି ପାରୁନି ।

ମିତା — ବୁଝିବୁ ଆଉ କ'ଣ ? ବୃଦ୍ଧ କାଳେ ବାଲ୍ୟଲୀଳା । ନାଇଁ ନାହିଁ ପ୍ରେମଲୀଳା । ତୁ କ'ଣ ଲାଇଫ୍ ଓକେ ଚ୍ୟାନେଲ ଦେଖୁନୁ ? ସାବଧାନ ଇଣ୍ଡିଆ, ଇଣ୍ଡିଆ ଫାଇଟସ୍ ବ୍ୟାକ୍ ।

ମାଆ — ସତେନା କ'ଣ ? ସେମିତି କଥା, ସେଇଆ କହୁନୁ ।

ମିତା — ନୁହେଁ ତ ଆଉ କ'ଣ ? ଆଗେ ଗୋଲାପ ଫୁଲ, ତା'ପରେ ଅତର, ତା'ପରେ ପ୍ରେମ ଆଉ ତା'ପରେ ମର୍ଡ଼ର ।

ମାଆ — ହଁ ତ ସେମିତି ତ ହୁଏ । ଆଲୋ ମାଆଲୋ । ଏବେ ମୁଁ କଅଣ କରିବି ? ଗୋଟିଏ ଅସରପାକୁ ମର୍ଡ଼ର କଲାବେଳକୁ ହାତ ଥରୁଛି । ଝିଟିପିଟିଟିଏ ମର୍ଡ଼ର କଲାବେଳକୁ ମୁଣ୍ଡ ବୁଲେଇ ଦେଉଛି । ନାଇଁ ନାଇଁ ଲୋ ଝିଅ । ମୁଁ ତ କାହାକୁ ମର୍ଡ଼ର କରିପାରିବି ନାହିଁ ?

ମିତା — ତୁ ମର୍ଡ଼ର କରି ପାରିବୁ ନାହିଁ ସିନା । ଅଥଚ ତୋତେ ଯଦି କେହି ମର୍ଡ଼ର କରିଦିଏ ?

ମାଆ — ଆଲୋ ସତେତ । ହେଲେ ମୋତେ କିଏ ମାରିବ ? କାହିଁକି ମାରିବ ? ଏବେ ମୁଁ କ'ଣ କରିବି ?

ମିତା — ତୁ ଧୈର୍ଯ୍ୟ ଦର । ତୋର କିଛି କରିବାର ଦରକାର ନାହିଁ । ଯାହା କରିବି, ମୁଁ କରିବି ।

ମାଆ — ତୁ ତ ସ୍କୁଲ ପଳେଇବୁ । ମୋତେ ଜଗିବୁ କେତେବେଳେ ?

ମିତା — ନା ନା ତୁ ନିଶ୍ଚିନ୍ତ ରହ । ଦରକାର ପଡ଼ିଲେ ମୁଁ ଛୁଟି ନେଇ ଯିବିନି । ସଦାବେଳେ ଛାଇ ଭଳି ତୋ ପାଖେ ପାଖେ ଥିବି, ତୁ ବିଲକୁଲ୍ ଡରନା । ଖାଲି ମୋ କଥା ମାନି ଚଳିବୁ । ହମ୍ ହୈ ନା... ।

| | |
|---|---|
| ମାଆ | ଠିକ୍ ଅଛି ତା'ହେଲେ ପିଲାନ୍ ପକା – କ'ଣ ଏବେ କରିବା ? |
| ମିତା | ପରୀକ୍ଷା କରିବା । ଏଇ ଫୁଲକୁ ଟେବୁଲରେ ଥୋଇ ଦେବା । ବାପା ଯାକୁ ଦେଖିବେ ତୋତେ ପଚାରିବେ, ଫୁଲ କେଉଁଠୁ ଆସିଲା ? |
| ମାଆ | ମୁଁ କହିବି, ମନକୁ ପଚାର, ତୁମ ପକେଟରେ ଫୁଟିଥିଲା । |
| ମିତା | ନା ନା...ଏମିତି ତୁ ସବୁ ଗଡ଼ବଡ଼ କରିଦେବୁ ମୁଁ ଜାଣେ । |
| ମାଆ | ତା'ହେଲେ କଅଣ କହିବି ? |
| ମିତା | ତୁ କିଛି କହିବୁ ନାହିଁ । କହିବୁ ଝିଅକୁ ପଚାର । ବାକି କଥା ମୁଁ ସମ୍ଭାଳି ନେବି । (କଲିଂବେଲ୍ ବାଜିଲା) |
| ମିତା | (ଯାଇ ଚିଠି ଖଣ୍ଡିଏ ନେଇ ଆସିଲା ଓ ଶୁଙ୍ଘିଂଲା) |
| ମାଆ | ସେଇଟା କ'ଣ ? |
| ମିତା | ବାପାଙ୍କ ନାମରେ ଚିଠି ଆସିଛି । ଏଇଟା ବି' ଅତର ବାସୁଛି । |
| ମାଆ | ସତେ ନା କ'ଣ ? (ଅଣ୍ଟାରେ ଲୁଗା ଗୁଡ଼େଇ) ତା'ହେଲେ ଖୋଲି ପକା ଦେଖିବା । |
| ମିତା | ତୁ ମାରିବୁ ନା କ'ଣ ? |
| ମାଆ | ଆଉ କ'ଣ ଛାଡ଼ିବି ? |
| ମିତା | କାହାକୁ ମାରିବୁ । |
| ମାଆ | ତାକୁ, ତୁ ଜଲ୍‌ଦି ଖୋଲ । |
| ମିତା | (ଚିଠି ଖୋଲି) ଆରେ, ଆଳୁ ଖୋଳୁ ଖୋଳୁ କ'ଣ ମହାଦେବ ବାହାରିଲେଣି ? |
| ମାଆ | ତା' ଭିତିରେ ଠାକୁର (କୁହାର ହେଲା) କାହିଁ ଦେଖି । |
| ମିତା | ଠାକୁର ନୁହେଁ ପ୍ରେମପତର ଆଉ ଜଳ ଛବି ? |
| ମାଆ | ଜଳଛବି କାହିଁ କାହାର ? |
| ମିତା | ଜଣେ ଝିଅର – ଦେଖିଲୁ କାଳେ ଇଏ ତୋ ସଉତୁଣୀ ହୋଇଥିବ ? |
| ମାଆ | ଦେଖି ଦେଖି । |
| ମିତା | ଆଲୋ ଆଲୋ ଫଟୋ ପଛରେ ପୁଣି ଇଲୁ ଇଲୁ ଲେଖା ହୋଇଛି । |
| ମାଆ | ସେଇଟା ପୁଣି କ'ଣ ? |
| ମିତା | ମାନେ ଆଇ ଲଭ ୟୁ । |
| ମାଆ | ଇଲୁମାନେ ଆଇ ଲଭ୍ ୟୁ । |
| ମାଆ | ଏତେ ଅଳାଜୁକି ସେଇଟା । ଏଇଆ ଲେଖିଛି । ତା'ହେଲେ ଏବେ କ'ଣ କରିବା । |
| ମିତା | India fights back |
| ମାଆ | ଠିକ୍ ଅଛି । (ରାଗରେ ଏପଟ ସେପଟ ବୁଲିଲେ) |
| ମିତା | ବୋଉ ତୁ ଏମିତି ଧାଉଁଛୁ କାହିଁକି ଟିକିଏ ବସୁନୁ । ଆଚ୍ଛା ତୁ ଆଜି ବ୍ଲଡ଼ପ୍ରେସର ମେଡ଼ିସିନ୍ ଖାଇଛୁ ନା ନାହିଁ । |
| ମାଆ | ହଁ ଖାଇଛି । |
| ମିତା | ଡାଇବେଟିସ୍ ମେଡ଼ିସିନ୍ |

ମାଆ ହଁ ଖାଇଛି ।

ମିତା ଏବେ ତୋତେ ଟିକିଏ ନିଦ ଔଷଧ ଦେଇ ଦେଉଛି ଖାଇପିଇ ଏବେ ଶୋଇ ପଡ଼୍ ନହେଲେ ତୋତେ ହାଇପର୍ ଟେନ୍‌ସନ୍ ହୋଇଯିବ ।

ମାଆ ଟେନ୍‌ସନ୍ ହୋଇଯିବ କ'ଣ ଟେନ୍‌ସନ୍ ହୋଇଗଲାଣି ।

ମିତା ତା'ହେଲେ ଚୁପ୍‌ଚାପ ବସୁନୁ କି ନିଦ ଔଷଧ ଖାଇ ଟିକିଏ ଶୋଇ ପଡୁନୁ । ଏମିତି ଚକ୍ରିଭଳି ଘରର ଘରର ହୋଇ ଘରସାରା ବୁଲୁଛୁ କାହିଁକି ?

ମାଆ ମୁଁ ଅପେକ୍ଷା କରିଛି ।

ମିତା କାହାକୁ ?

ମାଆ ଝଡ଼କୁ, ତୋଫାନକୁ, ମହାବାତ୍ୟାକୁ ।

ମିତା ସିଏ ଆସିଲେ ତୁ କରିବୁ କ'ଣ ?

ମାଆ ଚିଲ୍ଲେଇବି, ରଡ଼ି କରିବି, କଳି କରିବି ।

ମିତା ତା'ହେଲେ ତ କଥା ସରିଲା ବୋଲି ଜାଣ ।

ମାଆ କାହିଁକି ?

ମିତା ବାପାଙ୍କ ରାଗ ତ ଜାଣୁ । ଜୀବନସାରା କେତେ ଚିଲ୍ଲେଇଛୁ, ରଡ଼ି କରିଛୁ, କଳି କରିଛୁ, କିଛି ହୋଇଛି ?

ମାଆ ହେଲେ ଆଜି ହବ । ଆଜି ଘଟଣା ଘଟିବ । କେମିତି ନ ଘଟିବ ମୁଁ ଦେଖିବି ।

ମିତା ଠିକ୍ ଠିକ୍ । ଆଜି ନିଶ୍ଚୟ ଘଟଣା କିଛି ଘଟିବ । ବାପା ତୋ ପିଠିରେ ତେଣ୍ଟୁଳକର ଭଳିଆ ଛକା, ଚଉକା ବାଡ଼େଇବେ ଜାଣିଥା ।

ମାଆ ଏଁ କ'ଣ ହେଲା ମୋ ପିଠିରେ ?

ମିତା ପିଠିରେ ନହେଲେ ଗାଲରେ...

ମାଆ ହେଁ ମୋ ଗାଲରେ– ଏତେ ସାହସ ? ଏଇଟା କ'ଣ ସରକାରୀ ଗୋଚର ।

ମିତା ଖୁନ୍ଦା ଖାଇଖାଇ ପଛେ ପିଠି କଇଁଛ ଖୋଳପା ହୋଇଯିବଣି । ତଥାପି କେମିତି କହୁଛି ଦେଖ ? ହେଇଟି ଶୁଣ, ଖାଲି ବାଡ଼େଇବେ ନାହିଁ, ମାରିବେ କି ହାଣିବେ କିଏ ଜାଣିଛି ?

ମାଆ ମୋତେ ହାଣିବେ ? ସତେନା କ'ଣ ?

ମିତା ଭବିଷ୍ୟତ କିଏ ଦେଖିଛି ? ସେ ବୁଢ଼ାତ ପୁଣି ତା'ସ୍ତ୍ରୀକୁ ଭୁଜାଲିରେ ହାଣି ଖଣ୍ଡ ଖଣ୍ଡ କରି ଦେଇପାରିଲା । ପୁରୁଷମାନେ ଭାରି ନୃଶଂସ ଲୋ ବୋଉ।

ମାଆ ବୁଢ଼ାମାନେ ବି ?

ମିତା ବୁଢ଼ାମାନେ ଆହୁରି ବେଶୀ ନୃଶଂସ ହୋଇଯା'ନ୍ତି ଯଦି ନୂଆ ନୂଆ ପ୍ରେମ ଆରମ୍ଭ କରନ୍ତି ।

ମାଆ ସତେନା କ'ଣ ?

ମିତା ବାପା କହୁଥିଲେ Love is Blind ତା'ମାନେ ସେମାନେ ଅନ୍ଧ ବି ହୋଇଯାଆନ୍ତି ପ୍ରେମରେ ।

ମାଆ ତା'ହେଲେ କ'ଣ କରିବା ।

ମିତା ଗୋଟିଏ ମାତ୍ର ରାସ୍ତା India fights back.

ମାଆ ହେଲେ କେମିତି ?

| | |
|---|---|
| ମିତା | ୱେଟ୍ ଏଣ୍ଡ ୱାଚ, ତୁ ନିରବ ରହିବୁ ଠିକ୍ କୋଣାର୍କର ପଥର ମୂର୍ତ୍ତି ଭଳି (ପୋଜ କରି ଦେଖେଇ ଦେଲା) ବାପା ଯାହା ପଚାରିବେ ତୁ ଖାଲି ମୋ ଆଡ଼କୁ ଆଙ୍ଗୁଳି ଦେଖେଇ ଦେବୁ । ବାକି କଥା ମୁଁ ବୁଝିବି । |
| | (ବାହାରର ବେଲ୍ ବାଜିଲା, ମିତା କବାଟ ଖୋଲିଲା ବାପା ବ୍ୟାଗ ବଢ଼ାଇ ଦେଲେ ।) |
| ବ.ବାବୁ | ବ୍ୟାଗଟା ନେଇ ରୋଷେଇ ଘରେ ରଖିଦେ । ସେଥିରେ ଗୋଟିଏ ଭୁଜାଲି ଅଛି । ସେଇଟା ମୋତେ ବାହାର କରିଦେ । ବାରଣ୍ଡାରେ ଘସି ତାକୁ ଭଲ କରି ଧାର କରିଦିଏ । ଆଜି ସବୁ ହାଣିହୁଣି ପଦା କରିବାକୁ ପଡ଼ିବ । (ମାଆ ଝିଅ ପରସ୍ପରକୁ ଅନେଇଲେ) ପ୍ରେସର କୁକରର୍ ହୁଇସିଲ୍ ଚାବି ଠିକ୍ କରି ଆଣିଛି । ବ୍ୟାଗରୁ ମାଂସ କାଢ଼ି ସେଥିରେ ବସେଇବୁ ଠିକ୍ କାମ କରୁଛି କି ନାହିଁ ଭଲ କରି ଦେଖିନେ । ନ ହେଲେ ପୁଣି ପଛରେ ହଇରାଣ ହେବାକୁ ପଡ଼ିବ । (ସ୍ତ୍ରୀକୁ ଦେଖି) ଆରେ ଆରେ ତୁମେ ଗୋଟିଏ ପୋଜ୍‌ରେ କ'ଣ ଠିଆ ହୋଇ ପଡ଼ିଛ ନାଚିବ ନା କ'ଣ ? ଯାଅ ଚା'ଟିକିଏ କରିଆଣ । |
| ମିତା | ମୁଁ ଚା' କରିଦେଉଛି । |
| ବ.ବାବୁ | ଆରେ ଏ ଫଟୋଟା ଏଠିକି ଆସିଲା କେମିତି ? |
| ମାଆ | ଏ ଝିଅକୁ ତୁମେ ଚିହ୍ନ ? |
| ବ.ବାବୁ | ଯାକୁ ମୁଁ ଚିହ୍ନିବି ନାହିଁ ତ ଆଉ କିଏ ଚିହ୍ନିବ । ସେ ମୋ ଅଫିସରେ କାମ କରେ । |
| ମାଆ | ଆଉ ଏ ଫୁଲ ? |
| ବ.ବାବୁ | ସେଇଆ ତ ? ଏ ଫୁଲ ଏଠି ରଖିଲା କିଏ ? |
| ମାଆ | ରଖିବ ଆଉ କିଏ । ଏଠି ଫୁଟି ଥିଲା । |
| ମିତା | ବୋଉ ଆସିଲୁ ଗ୍ୟାସଟା କ'ଣ ଜଳୁନି ଟିକିଏ ଦେଖିଲୁ । |
| ବ.ବାବୁ | କ'ଣ ଆମ ବଗିଚାରେ । ଆମ ବଗିଚାରେ ତ ଗୋଲାପ ଗଛ ନାହିଁ । |
| ମାଆ | ହୁଁ...ଲୁଚିଛି ନା ଗୋଡ଼ ଦି'ଟା ଦିଶୁଛି । ଅଜଣା ଚାଉଳ ଭାତ ଖାଇଲେ, ଚେଇଁ ଶୋଇବ ଯିଏ, ତାକୁ ଉଠେଇବ କିଏ ? କେଉଁଠି ଫୁଟିଥିଲା...ଗୋଲାପ ଯେଉଁଠି ଫୁଟେ । ପକେଟରେ... । |
| ମିତା | (ପ୍ରବେଶ କରି) କାହିଁକି ପାଟିଟା କରୁଛୁ ଭିତରକୁ ଚାଲ ରୋଷେଇ କରିବୁ, ମୁଁ ଚା'ନେଇ ଆସେ – (ଭିତରକୁ ନେଇଗଲା ଓ ଚା' ନେଇ ଆସିଲା) ବାପା ଚା'... |
| ବ.ବାବୁ | ତୋ ବୋଉର କ'ଣ ହେଲା କିରେ । |
| ମିତା | (ଚୁପ୍‌ଚୁପ୍) କେଜାଣି । ସକାଳେ ତା'କାନ୍ଧରେ ଝିଟି ପିଟିଟାଏ ପଡ଼ିଗଲା ଯେ ସେତେବେଳୁ ସେ ଗରଗର ହେଉଛି । ତାକୁ କିଛି ପଚାର ନାହିଁ । ସକାଳୁ ସକାଳୁ ବୁଲାଉଛି କହି ମୁଣ୍ଡରେ ଦି'ଗରା ପାଣି ଢାଳି ସାରିଲାଣି । |
| ବ.ବାବୁ | ଔଷଧ ଖାଇଛି ନା ନାହିଁ ? |
| ମିତା | ହଁ ମୁଁ ତାକୁ ଖୁଆଇ ଦେଇଛି । |
| ବ.ବାବୁ | ଆଚ୍ଛା ଗଲୁ ଗଲୁ ଆଜିର ଖବରକାଗଜର ସାହିତ୍ୟ ପତ୍ରିକାଟା ଟିକିଏ ଆଣିଲୁ । |
| ମିତା | ସେଥିରୁ କ'ଣ ପଢ଼ିବ ? ଓଲଟ-ପାଲଟ । ନା ତୁମ ଲାଗି ଚିଠିଟିଏ ? |

ବ.ବାବୁ — ଖାଲି କ'ଣ ସେତିକି ? ଆହୁରି ଅଛି ନା, ଶିଶୁ ରାଇଜ, ବାଇ ଚଢ଼େଇ, କହିଲ ଦେଖି । ହସ କଥା ଏମିତି ଅନେକ । ଯା' ଖବର କାଗଜଟା ଆଣ । ହଁ ଶୁଣ ତୋ ବୋଉ ସାଙ୍ଗରେ ଆଜି ବେଶୀ ଗପିବୁ ନାହିଁ । (ଭିତରୁ ମୁହଁ କାଢ଼ି ମାଆ ଶୁଣୁଛି) ତାକୁ ନିଦ ଔଷଧ ଦେଇ ଶୁଆଇ ଦେ । ତା'ପରେ ଦେଖିବା । ଆଚ୍ଛା ଶୁଣିଲୁ ଏ ଫଟୋଟା ଏଠିକି ଆସିଲା କେମିତି, ଆଣିଲା କିଏ ? ଆଉ ଗୋଲାପ ଫୁଲ

ମିତା — (ଚୁପଚୁପ୍) ଇଏ ମୋ ସାଙ୍ଗ । ତା'ର ଆଜି ଜନ୍ମ ଦିନ ତ ତେଣୁ ତାକୁ ଆଜି ଫଟୋ ଆଉ ଗୋଲାପ ଫୁଲ ମୁଁ ପ୍ରେଜେଣ୍ଟ କରିବି ବୋଲି ଆଣି ରଖିଛି ।

ବ.ବାବୁ — ସତେ ନା କ'ଣ ? ଆଜି ତା' ଜନ୍ମଦିନ, କାହିଁ ମୋତେ ତ କହିନି । କାଲି ତାକୁ ମୁଁ ବି ଗୋଟିଏ ସର୍‌ପ୍ରାଇଜ ଗିଫ୍ଟ ଦେଇ ଚମକେଇ ଦେବି । (ପ୍ରସ୍ଥାନ)

ମାଆ — କ'ଣ କହିଲ (ଝୁଣ୍ଟି ପଡ଼ି ମିତାକୁ ଧରିଲେ) ଆଃ...ମରିଗଲିଲୋ,

ମିତା — ଏମିତି ଉଚ୍ଛନ୍ନ ହେଲେ ମରିବୁନି ତ ଆଉ କ'ଣ ହେବ ।

ମାଆ — କାହାକୁ କ'ଣ ଦେବେ କହିଲେ ? ମୋତେ ଦେବେ କି ? କ'ଣ ଦେବେ ?

ମିତା — (ଧୀରେ) ଏଣିକି ସେ ଯାହା ଦେବେ ସବୁ ତାକୁ ଦେବେ ଜାଣିଥା–ତୋପାଇଁ ଖମ୍ଭ ଆଳୁ । (ଜୋରରେ) ଚାଲଚାଲ ଭିତରକୁ ଚାଲ । ଔଷଧ ଖାଇ ଚୁପ୍‌ଚାପ୍ ବିଛଣାରେ ଶୋଇବୁ । ଘର କାମ ମୁଁ ସବୁ କରୁଛି । (ପ୍ରସ୍ଥାନ)

ବ.ବାବୁ — (ପ୍ରବେଶୀ) ଆରେ ତୋତେ ସେତେ ବେଳୁ କହୁଛି ମୋତେ ଭୁଜାଲିଟା ଦେ ଧାର କରିଦିଏ । ଆଉ ତୋ ବୋଉକୁ ଔଷଧ ଖୁଆଇ ଶୁଆଇ ଦେ । ତା'ପରେ ଦେଖିବା ।

ମିତା — (ଭିତରୁ) ଟିକିଏ ରୁହ ବୋଉକୁ ଔଷଧ ଦେଇ ଯାଉଛି ।

ବ.ବାବୁ — ଆଚ୍ଛା ପ୍ରେସର କୁକରଟା ଠିକ୍ କାମ କରୁଛି ତ ?

ମିତା — ହଁ...

ବ.ବାବୁ — ତା'ହେଲେ ମୁଁ ଟିକିଏ କ୍ଲବ୍ ଘରଆଡ଼େ ବୁଲି ଆସେ ।

ମିତା — (ପ୍ରବେଶୀ) କେତେବେଳେ ଆସିବ ।

ବ.ବାବୁ — ଫେରିବାକୁ ଦି'ଘଣ୍ଟା ଖଣ୍ଡେ ଲାଗିବ । ତୁମେ ଦି'ଜଣ ଖାଇପିଇ ଶୋଇ ପଡ଼ିଥିବ । ତୋ ବୋଉ ଉପରେ ନଜର ରଖିଥିବୁ । ମୁଁ ଆସିଲେ ତା' କଥା ବୁଝିବି । (ପ୍ରସ୍ଥାନ)

ମିତା — ବୋଉ ଶୁଣିଲୁ ତ ବାପାଙ୍କ କଥା ?

ମାଆ — ମୁଁ ବି ତା'ହେଲେ ମାମୁ ଘରକୁ ଯାଉଛି ରହିଥା ।

ମିତା — ଏଁ ମାମୁ ଘରକୁ ମାନେ ପୋଲିସ ଷ୍ଟେସନ । ନାଇଁ ନାଇଁ ସେ କାମ କରନା... ।

ମାଆ — ନା ନା ମୁଁ ସେ ମାମୁଘର ନୁହେଁ ତୋ ମାମୁ ଘରକୁ ମାନେ ମୋ ବାପ ଘରକୁ ପଳେଇବି ।

ମିତା — ସେଇକଥା କହୁନୁ । ମୁଁ ବି ସେଇଆ ଭାବୁଥିଲି । ରହ ମୁଁ ଶୀଘ୍ର ରୋଷେଇ ସାରି ଦିଏ ତୁ ସହଳ ସହଳ ଖାଇ ପିଇ ପଳେଇବୁ । ବାପା ଆସିବା ଆଗରୁ ତୁ ପାର୍ । ତା'ପରେ ସେ ଭୁଜାଲିରେ ଧାର କରନ୍ତୁ କି ପ୍ରେସର କୁକରରେ ହୁଇସିଲ ମାରନ୍ତୁ, ତୋର ଯାଏ ଆସେ କେତେ ? ଏଠି ରହିଲେ ସିନା ବିପଦ : ମୁଣ୍ଡ ମାଇଲେ ଯିବ ସରି ।

ମାଆ — ଗେରସ୍ତ ସାଙ୍ଗେ ମିଛେ କଳି ।

| | |
|---|---|
| ମିତା | ଗେରସ୍ତ ନୁହେଁ ଦିଅଁଙ୍କ ସାଙ୍ଗେ କିମ୍ବା କଳି । |
| ମାଆ | ସିଏ ଦିଅଁନା ଛେନା ଛତୁ । ହଁ ହଁ ସିଏ ଖବର କାଗଜରୁ କ'ଣ ପଢ଼ିବେ ବୋଲି କହୁଥିଲେ ତ । |
| ମିତା | ଛାଡ଼ ସେ କଥା – ସେ ଗୁଡ଼ାକ ଶୁଣି ତୋ ମୁଣ୍ଡ ଖରାପ କରିବା କିଛି ଦରକାର ନାହିଁ । |
| ମାଆ | କାହିଁକି କହୁନୁ । |
| ମିତା | ପ୍ରଥମରେ ସେଦିନ ବୁଢ଼ାବୁଢ଼ୀ କି ହାଣିଥିବା ଖବରଟା ପଢ଼ିବାକୁ ଚାହୁଁଛନ୍ତି । |
| ମାଆ | କାହିଁକି ? |
| ମିତା | କାହିଁକି ଆଉ କ'ଣ ? ସିଏ କେମିତି କ'ଣ କଲା । କେମିତି ହାଣିଲା । କେମିତି ଲୁଚେଇଲା । ସେଇ ସବୁ କଥା ଟିକିନିଖି କରି ଜାଣିବାକୁ ଚାହୁଁଥିବେ ଆଉ କ'ଣ । |
| ମାଆ | ଆଚ୍ଛା ଆଚ୍ଛା ଏଇ କଥା...ମୁଁ ଆଉ ଏଠି ଥିବି ଯେ ତୁମେ ହାଣିବ । ଆଉ ସେ ସାହିତ୍ୟ ପତ୍ରିକା କଥା । କ'ଣ କହୁଥିଲେ । |
| ମିତା | ଛି ଛି ଛି । ସେ କଥା କାହିଁକି କହୁଛୁ କହିଲୁ । ସାହିତ୍ୟ ଫାହିତ୍ୟ ସବୁ ମିଛ ସେଥିରୁ ସେ ତୁମ ପାଇଁ ଚିଠିଟିଏ ପଢ଼ିବେ । ସବୁବେଳେ ସେଇଟା ପଢ଼ିବାକୁ ତାଙ୍କର ଭାରି ଇଣ୍ଟରେଷ୍ଟ । |
| ମାଆ | କାହିଁକି ? |
| ମିତା | ସେଥିରେ ସବୁ ପ୍ରେମିକ ପ୍ରେମିକା ମାନଙ୍କର ଲୁଚାଛପା, ପ୍ରେମକଥା, ରାଗରଷା, ମାନ ଅଭିମାନ ସବୁ ବାହାରେ । ସେଇଆ ପଢ଼ିବାକୁ ବାପା ତ ପୁରା ବାୟା ଆଉ କ'ଣ କି । |
| ମାଆ | ଆଲୋ ଆଲୋ ଆଲୋ କାହିଁକି ? |
| ମିତା | କାଳେ ତାଙ୍କ ପାଇଁ ସେଥିରେ ସେ କିଛି ଗୋପନ ତଥ୍ୟ ଲେଖିଥିବ ଯେମିତି ପ୍ରଜାମେଳି ବେଳେ ପକୀର ମୋହନ ସେନାପତି ରାଜାଙ୍କ ପାଖକୁ ଚିଠି ଲେଖିଥିଲେ ଠିକ୍ ସେମିତି । ନିଜର ଖମାରିଆକୁ ଗୁଆ ପାନ ପଠେଇବା ନାଁରେ ପ୍ରକୃତରେ ସେ ରାଜାଙ୍କ ପାଖକୁ ଲେଖିଥିଲେ ସେ ଚିଠି ବନ୍ଧୁକ ଧରି ସୈନିକ ଆଉ ଗୁଳି ପଠେଇ ଆକ୍ରମଣ କରିବା ପାଇଁ । |
| ମାଆ | ସତେ ନା କ'ଣ କେମିତି କେମିତି ? |
| ମିତା | ସେ ଲେଖିଲେ ଭୋଳାନାଥ ଖମାରିଆ ଜାଣିବୁ ମାନେ ମହାରାଜ ଜାଣିବେ । ମହାରାଣୀ ପୁତ୍ରଙ୍କ ସକାଶେ ଦରକାର ମାନେ ପ୍ରଜାମେଳିର ସର୍ଦ୍ଦାର ଧରଣୀ ଧର ଭୂୟାଁଙ୍କ ବିନାଶ ପାଇଁ ଆବଶ୍ୟକ । ଅତି ଶୀଘ୍ର ଶହେ ହେଲେ ମଧ ପାନ ଆଉ ୨୦୦ଗୁଆ ପଠାଇବୁ । ମାନେ ୧୦୦ ବନ୍ଧୁକ ଧାରୀ ସୈନିକ ଓ ୨୦୦ଗୁଳି ପଠେଇବେ ଏବଂ ପଶ୍ଚିମ ପଟରୁ ମାହାରା କରି ଆଖୁବାଡ଼ିକୁ ଶୀଘ୍ର ପାଣି ବୁହାଇବୁ ନ ହେଲେ ଆଖୁବାଡ଼ି ନାଶ ଯିବ ବୋଲି ଜାଣିବୁ । ମାନେ ଅତିଶୀଘ୍ର ନଅରକୁ ପଶ୍ଚିମ ପଟରୁ ଆକ୍ରମଣ କରନ୍ତୁ ନ ହେଲେ ନଅର ବିନାଶ ଯିବ ବୋଲି ଜାଣନ୍ତୁ । ଇତି ଫକୀର ମୋହନ ସେନାପତି । |
| ମାଆ | ମାନିବାକୁ ହବ...ସତେ ତ ସେନାପତି ଭଳିଆ ବୁଦ୍ଧିଟାଏ ତ ।<br>(ଏତିକି ବେଳକୁ ବାହାର ଘଣ୍ଟି ବାଜିଲା) |
| ମାଆ | ଦେଖିଲୁ କିଏ ? (ମିତା ଯାଇ ଦେଖିଲା ଓ ଧାଇଁ ଆସି) ବାପା ବାପା ଭିତରକୁ ପଳା । (ପୁଣି ଯାଇ କବାଟ ଖୋଲିଲା) ବାପା ! କ'ଣ ହେଲା ଫେରି ଆସିଲ ଯେ । |
| ବ.ବାବୁ | ଆରେ ଛତାଟା ନବାକୁ ଆସିଲି । ଖବର କାଗଜଗୁଡ଼ା କ'ଣ ଏଠି ବିଛଣା ହୋଇ ପଡ଼ିଛି । |

ମିତା — ବୋଉ ପଢୁଥିଲା ବୋଧହୁଏ ସାହିତ୍ୟ ପତ୍ରିକା ।

ବ.ବାବୁ — କିରେ ଲଙ୍କାରେ ହରିଶବ୍ଦ । ସିଏ ପୁଣି ସାହିତ୍ୟ ? କଥା ଦି'ପଦ ଠିକ୍‌ରେ କହିପାରୁନି ସିଏ ସାହିତ୍ୟ ପଢୁଛି । ତୁ ଏଠି କ'ଣ କରୁଛୁ । ଯଥା ଶୀଘ୍ର ରୋଷେଇ ସାରି ପାଠ ପଢ଼ାରେ ମନ ଦେ । ତୋର କମ୍ପିଟିଟିଭ ପରୀକ୍ଷା ସବୁ ୟା ଭିତରେ କେବେ ଥିବ ବୋଧ ହୁଏ । ମନ ଦେଇ ପଢ଼ାପଢ଼ି କର ଏଇ ଥର ଯେମିତି ଭଲ ଚାକିରିଟିଏ ପାଇଯାଉ ସେଇ ଚେଷ୍ଟା କର । ତୁ ନିଜ ଗୋଡ଼ରେ ଠିଆ ହେଲେ ଯାଇ ତୋ ବାହାଘର କଥା ଚିନ୍ତା କରାଯିବ ନହେଲେ ଜୀବନସାରା ଏମିତି ମଧ୍ୟାହ୍ନ ଭୋଜନ ରାନ୍ଧୁଥିବୁ ଜାଣିଥା ।

ମିତା — ସେ କଥା କ'ଣ ମୁଁ ଜାଣିନି କି ? ମୁଁ ବି ଚାକିରି କଲେ ଯାଇ ବାହା ହେବି । ବ୍ୟାଙ୍କ ପିଓ ପରୀକ୍ଷାଟା ସରିଯାଇଛି । ୟାରି ଭିତରେ ରେଜଲ୍ଟ ବାହାରିବ । ରେଲୱେ ପରୀକ୍ଷା ବି ଦେଇଛି । ଭଲ ହୋଇଛି । ବାକି ପୋଷ୍ଟାଲ ପରୀକ୍ଷା ଡେରିଅଛି ।

ବ.ବାବୁ — ଆରେ ଛତାଟା ଆଣିଲୁ । ନାଇଁ ନାଇଁ ରହ ମୁଁ ଆଣୁଛି । (ଭିତରକୁ ଗଲେ) (ଫୋନ୍ କରୁ କରୁ ଫେରିଲେ) ଓହୋ ବାରମ୍ବାର କାହିଁକି ଫୋନ୍ କରୁଛ କହିଲ ? କହିଲି ପରା ସମୟ ସୁବିଧା ଦେଖି ମୁଁ କାମ ସାରିଦେବି । ତା'ପରେ ତୁମକୁ ଫୋନ୍ କଲେ ତୁମେ ଆସି ନେଇଯିବ । ସେ ପାଖ କାମ ସବୁ ଯେମିତି ଠିକ୍‌ଠାକ୍ ହୁଏ, ଫାଣ୍ଡି ପୋଲିସ୍ ଯେମିତି ନ ହୁଏ । ମିଡ଼ିଆଠାରୁ ଦୂରେଇ ରହିବ । ହଁ ହଁ ଏ ପାଖ କାମ ଆଜି ଖରାବେଳେ ନହେଲେ ରାତି ଅଧିଆ ମୁଁ ବଢ଼େଇ ଦେବି । ସବୁ ରେଡ଼ି କରି ରଖିଛି । ଖାଲି ସମୟ ପାଇଲେ କାମ ଫତେ । ରହିଲି । (ମିତାକୁ) ଆରେ ମିତା ଛତାଟା କେଉଁଠି ରହିଲା ?

ମିତା — ପଢ଼ାଘରର କବାଟ କୋଣରେ ଅଛି । (ବାପା ଭିତରକୁ ଗଲେ । ମାଆ ଆସିଲା ।

ମାଆ — ଆରେ ତୋ ବାପା କ'ଣ ସବୁ କହୁଥିଲେ ଆଜି ଖରାବେଳେ ନ ହେଲେ ରାତି ଅଧିଆ କାମ ଫତେ କରିଦେବେ ବୋଲି । କି କାମ କିରେ ?

ମିତା — ହାଣ କରିବେ ହାଣ ଆଉ କ'ଣ ? ତୁ କାହିଁକି ଏବେ ଏଠିକି ପଳେଇ ଆସିଲୁ । ବାପା ଏଇନେ ଦେଖିବେ ଯଦି –ଯା –ଶୋଇବୁ ଯାଆ । (ମାଆ ଲୁଚିଗଲେ ବାପା ଛତା ଧରି ଆସିଲେ)

ବ.ବାବୁ — ତୋ ବୋଉ କ'ଣ ଶୋଇପଡ଼ିଲାଣି ?

ମିତା — ଘୁମଉଛି...ଆଉ ଘଡ଼ିକେ ଶୋଇ ପଡ଼ିବ ।

ବ.ବାବୁ — ତା' ଉପରେ ନଜର ରଖିଥିବୁ । ଦରକାର ପଡ଼ିଲେ ମୋତେ ଫୋନ୍ କରିବୁ । (ପ୍ରସ୍ଥାନ)

ମାଆ — କ'ଣ ନେଇଗଲେ କିରେ ?

ମିତା — ଛତାଟାଏ ତ ଧରି ଭିତରୁ ଆସିଲେ । ରହରହ ମୁଁ ଦେଖେଁ ଭିତରୁ ଆଉ କ'ଣ ସବୁ ଲୁଚେଇ ନେଇଗଲେ କି ଆଉ ? (ଭିତରକୁ ଗଲା ଓ ପାଟି କଲା ।) ବୋଉ ଭୁଜାଲି ନାହିଁ ।

ମାଆ — ଆଉ କ'ଣ ସବୁ ନାହିଁ, ଭଲ କରି ଦେଖ ।

ମିତା — ବୋଉ ଫଟୋ ନାହିଁକି ଗୋଲାପ ନାହିଁ ।

ମାଆ — ସତେ ନା କ'ଣ ? ଆଉ କ'ଣ ନାହିଁ ।

ମିତା — ସାହିତ୍ୟ ପତ୍ରିକାର ସେଇ ପୃଷ୍ଠାଟା ବି ନାହିଁ ।

ମାଆ — କେଉଁ ପୃଷ୍ଠା ନାହିଁ ?

ମିତା — "ତୁମ ଲାଗି ଚିଠିଟିଏ" ।

ମାଆ — କାହା ଲାଗି ଚିଠି ଟିଏ ।

ମିତା — ବୋଧହୁଏ ବାପାଙ୍କ ଲାଗି ସେ ଲେଖିଥିବା ଚିଠିଟିଏ ।

ମାଆ — ସେଥିରେ ସେ କ'ଣ ଲେଖିଥିଲା ?

ମିତା — ମୁଁ କ'ଣ ପଢ଼ିଛି । ତେବେ ଗତ ସପ୍ତାହର ଉତ୍ତର ହୋଇଥିବ ରହରହ ମୁଁ ଗତ ସପ୍ତାହର କାଗଜ ଆଣେ । (ଗଲା ଓ କାଗଜ ଧରି ଆସିଲା) ଏଇନେ ପଢ଼ । ରହିଥା ମୁଁ ପଢ଼ି ଶୁଣେଇ ଦେଉଛି । ପ୍ରାଣେଶ୍ୱର...ଗତ ମାର୍ଚ୍ଚ ମାସ ୨୪ ତାରିଖ ଏଇ ସ୍ତମ୍ଭରୁ ପଢ଼ି ଜାଣିଲି ନିଶ୍ଚୟ ସେଇଟା ମୋ ପାଇଁ ଲେଖା ତୁମ ଅନ୍ତରର କଥା । ତୁମେ ସେଥିରେ ତୁମ ନାଁକୁ ପ୍ରିୟତମ ଆଉ ତୁମ ଠିକଣାକୁ ପ୍ରେମ ନଗର ବୋଲି ଲେଖିଛ । ମୁଁ ତୁମର ମନର କଥା ଭଲ ଭାବରେ ବୁଝି ପାରୁଛି । ଯେମିତି ବର୍ଷା ଆସିବାର ଅନେକ ଆଗରୁ କଦମ୍ବତା ଗଭାକୁ ଫୁଲ ଭାରରେ ସଜେଇ ଦିଏ । ବସନ୍ତ ଆସିବାର ଖବର ପାଇ କୋଇଲି ଗାଇ ଉଠେ ପଞ୍ଚମ ସଂଗୀତ । ତୁମର ଏଇ ଚିଠିର ପ୍ରତ୍ୟେକ ଶବ୍ଦ ମୋ ମନରେ ଭରିଦିଏ ଫଗୁଣର ରୋମାଞ୍ଚ । ତୁମେ ମୋ ପାଇଁ କହ୍ନେଇ ଆଉ ତୁମ ଲେଖନୀ ମୋ ପାଇଁ ବଂଶୀ ହୋଇ ସାରିଛି । ତୁମେ ଯେଉଁଠି ଥାଅନା କାହିଁକି ତୁମ ଲେଖନୀ ମୋ ନାଁ ଧରି ଲେଖିବ ଆଉ ମୁଁ ଯେଉଁଠି ଥାଏ ନା କାହିଁକି ସେଇ ମୂର୍ଚ୍ଛନାରେ ନାଚିବି, ଝୁମିବି ଆଉ ମନେ ମନେ ତୁମକୁ ଚୁମିବି । ଇତି ତୁମର ପ୍ରାଣେଶ୍ୱରୀ ରାଧା ।

ମାଆ — ରାଧା ନା ଗଧା । ମିତା ଆଟୋକୁ ଡାକ ମୁଁ ଏଇନେ ବାପ ଘରକୁ ପଳେଇବି ।

ମିତା — ତୁ ଖାଇଛୁ ନା ନାଇଁ – ତା'ହେଲେ ବ୍ୟାଗ ସଜାଡ଼ ମୁଁ ଆଟୋ ଡାକୁଛି । (ଫୋନ୍‌ରେ) ହେ ମୁନ୍ନା ଭାଇ ଶୀଘ୍ର ଆଟୋ ନେଇ ଆସ ବୋଉ ତା' ବାପଘରକୁ ଯିବ ।

ମାଆ — (ବ୍ୟାଗ ଧରି ଆସିଲେ) ତୋ ବାପାକୁ ଗୋଡ଼େ ଗୋଡ଼େ ଜଗିଥିବୁ ଆଉ ମୋତେ ଖବର କରିବୁ କ'ଣତ...ହଁ ହଁ ଖମାରିଆ ଜାଣିବୁ...କିନ୍ତୁ...

ମିତା — ଚୁପ୍ ଆଉ କିନ୍ତୁ ଫିନ୍ତୁ କିଛି ନାହିଁ

କୋରସ୍ — କାରଣ କିନ୍ତୁ ଏକ ଶବ୍ଦ ।

ଗୀତ — ଦ୍ୱୀଚ ଦ୍ୱୀଚ ଦ୍ୱନ୍ଦ – ଦୁଇରୁ ଅନେକେ ଦ୍ୱନ୍ଦ

୧ମ — ଏ ସଂସାରେ ଭରପୂର ଯେତେ ସବୁ ଉପାଦାନ
ସଭିଙ୍କ ଭିତରେ ଦ୍ୱନ୍ଦ ।

୨ୟ — ବହିଃ ଦ୍ୱନ୍ଦ ସବୁବେଳେ ଭାଙ୍ଗିଦିଏ ଜାଳିଦିଏ ଧ୍ୱଂସ କରିଦିଏ କେତେ ମାନବ ସଭ୍ୟତା ।

୩ୟ — ଅନ୍ତଃଦ୍ୱନ୍ଦ ସେଇଭଳି ଜାଳିଦିଏ ପୋଡ଼ିଦିଏ ଅନ୍ତରରୁ ପ୍ରେମ ଆଉ ସରାଗର ସତ୍ତା ।

୪ର୍ଥ — ବିଜ୍ଞାନୀ ମନର ଦ୍ୱନ୍ଦ ଆବିଷ୍କାର କରେ ନୂଆ କେତେ
କବିର ସୃଜନୀ ଦ୍ୱନ୍ଦ ସୃଷ୍ଟି କରେ କାବ୍ୟ ଭିନ୍ନ ମତେ ।

୧ମ — ଦ୍ୱନ୍ଦରୁ ବିଲୟ ପୁଣି ସର୍ଜନା ଦ୍ୱନ୍ଦରେ

୨ୟ — ଦ୍ୱନ୍ଦ ମାତ୍ର ଲିଭିଯାଉ ଜାତି, ଧର୍ମ, ବର୍ଣ୍ଣ ବିଦ୍ୱେଷରେ

୩ୟ — ଦ୍ୱନ୍ଦ ମାତ୍ର ଝରୁଥାଉ ସଦା କଳାକାର ସୃଜନୀ ମନରେ...

ସମସ୍ତେ — ଦ୍ୱିଚ ଦ୍ୱିଚ ଦ୍ୱନ୍ଦ...

(ପ୍ରବେଶ କଲେ ବଡ଼ ବାବୁ)

ବ.ବାବୁ — ଆରେ ଘରେ କେହି ନାହିଁ ନା କ'ଣ ? ମିତା ମିତା...କବାଟ ଖୋଲା ପଡ଼ିଛି । ଡାକିଲେ ବି କେହି ଶୁଣୁ ନାହାଁନ୍ତି । ଘର ସାରା ଖବରକାଗଜ କଟା ହୋଇ ପଡ଼ିଛି । କାଗଜ ଗୁଡ଼ାକ ପୁଣି କଟିଂ ହୋଇଛି । କରିଛି କିଏ ? (ପେପର ଦେଖିଲେ) ତୁମ ପାଇଁ ଚିଠିଟିଏ । ତଳେ ପୁଣି ନାଲିନେଳୀ କାଳିରେ ଅଣ୍ଡର ଲାଇନ୍ କରାଯାଇଛି । ଏଇଟା ନିଶ୍ଚୟ ମିତାର କାମ । ଆଜି କାଲିକା ପିଲାଙ୍କୁ ପାରିହେବନି । ପାଠ ଠାରୁ ପ୍ରେମରେ ଆଗ୍ରହ ବେଶୀ–ମିତା ! ମିତା ।

ମିତା — (ନିଦରୁ ଉଠିବାର ଅଭିନୟ କରି) କ'ଣ ହେଲା ବାପା ! ଡାକିଲ ?

ବ.ବାବୁ — ତୁ କ'ଣ ଶୋଇ ପଡ଼ିଥିଲୁ କି ?

ମିତା — ହଁ ଶୋଇ ପଡ଼ିଥିଲି ।

ବ.ବାବୁ — ତୋ ବୋଉ କାହିଁ ? କେମିତି ଅଛି ? ଶୋଇଛି ନା ଚେଇଁଛି ?

ମିତା — ମୁଁ ଶୋଇବାକୁ ଗଲାବେଳେ ଏଇଠି ବସିଥିଲା । ମୋତେ କହିଲା ତୁ ଖାଇଦେ ମୁଁ ଜଗିଛି ।

ବ.ବାବୁ — ଏ ପେପର କଟିଂ ସବୁ କରିଛି କିଏ ? ତୁ ନିଶ୍ଚୟ । ସେଥିରେ ପୁଣି ଅଣ୍ଡର ଲାଇନ୍ କରିଛୁ ।

ମିତା — ମୁଁ କାହିଁକି କରିବି ? ବୋଉ ତ ପଢୁଥିଲା । ମୁଁ ଜାଣିନି କି ମୁଁ ଏ ଗାର ଟାଣିନି ଟାଣି ଥିଲେ ବୋଉ ଏ ଗାର ସବୁ ଟାଣିଥିବ ।

ବ.ବାବୁ — (ହସି) ଏ ବୟସରେ ତୋ ବୋଉର ଆଉ କିଛି କାମ ନାହିଁ ତ ବସି ବସି ଏଇଆ କରୁଛି ।

ମିତା — ଏ ବୟସରେ ତୁମେ ବି ତ ଏଇ ସ୍ତମ୍ଭ ଗୁଡ଼ାକ ନିରେଖି ପଢୁଛ ।

ବ.ବାବୁ — ତା' ଭିତରୁ ମୁଁ ସାହିତ୍ୟ ଖୋଜୁଛି ।

ମିତା — ସେ ବି ତା' ଭିତରୁ ସେମିତି କିଛି ଖୋଜୁଥିବ କିଏ ଜାଣିଲା । ଯିଏ ପଢୁଛି ତାକୁ ଜଣା ତା'ର ଗୋପନ ରହସ୍ୟ ।

ବ.ବାବୁ — ତା'ହେଲେ ଏମିତି ଫୋପାଡ଼ି ଦେଇଛି କାହିଁକି ?

ମିତା — ନରକଥା ନାରାୟଣଙ୍କୁ ଅଗୋଚର । ତା'କଥା ମୁଁ କେମିତି କହିବି ? ଅଦରକାରୀ ଭାବି ଫୋପାଡ଼ିଛି କି ରାଗି କରି ଫୋପାଡ଼ିଛି କିମ୍ବା ତୁମକୁ ଦେଖେଇ ହେବା ପାଇଁ ଏମିତି ବିଛେଇ ଦେଇଛି କିଏ ଜାଣିଲା । ତାକୁ ପଚାରୁନ ।

ବ.ବାବୁ — ଡାକିଲୁ ତାକୁ ।

ମିତା — ବୋଉ, ବୋଉ...(ଭିତରକୁ ଗଲା ଓ ଫେରିଆସି) କାହିଁ କେଉଁଠି ନାହିଁ ତ ?

ବ.ବାବୁ — କୁଆଡ଼େ ପଳେଇ ଗଲା ନା କ'ଣ ?

ମିତା — ଛି ଛି । ଏମିତି କ'ଣ କହୁଛ ଯେ– ଏଇଠି କେଉଁଠିକି ଯାଇଥିବ ଏଇନେ ଆସି ଯିବନି । ତୁମେ ଖାଇବ ଆସ ।

ବ.ବାବୁ — ନା ମୁଁ ପରେ ଖାଇବି । ତୁ ଆଗ ତାକୁ ଖୋଜ ନ ହେଲେ ଫୋନ୍ ଲଗା ଘଟଣାର ରହସ୍ୟ କ'ଣ ମୁଁ ଆଗ ଜାଣିବି । ତା'ପରେ ଖାଇବି ।

ମିତା — ଆଜି ତାସ ଖେଳରେ ହାରିଯାଇଛ ବୋଧହୁଏ । ସେଇଥିପାଇଁ ଏତେ ରାଗ । ଆଗ ଖାଇ ସାରି ତା'ପରେ ଫୋନ୍ କରିବା । ପଡ଼ିଶା ଘରଆଡ଼େ ଯାଇଥିବ । ବଳେ ଆସି ଯିବନି ।

ବ.ବାବୁ — ତୁ ଲଗେଇବୁ ନା ମୁଁ ଲଗେଇବି (ଟେବୁଲ ଉପରେ ଥୁଆ ହୋଇଥିବା ସ୍ତ୍ରୀର ଫୋନ୍ ବାଜିଲା)

| | |
|---|---|
| ରିଙ୍ଗଟୋନ୍ : | ମିତା ତୁମେ ଭଲପାଇ ଭୁଲି କି ଗଲଣି ମୋତେ<br>ତୁମେ ଯଦି ଭୁଲିଯିବ, ସତ କୁହ, କେମିତି ବଞ୍ଚିବି ସତେ ?<br>ଏଇଟା କ'ଣ ତୋ ବୋଉ ଗାଉଛି । |
| ମିତା | ନା ନା ତା'ଫୋନ୍‌ରେ ବାଜୁଛି । |
| ବ.ବାବୁ | ଏଇ ଗୀତ ସିଏ ଲଗେଇଛି ତା' ଫୋନ୍‌ରେ ? ଛି ଛି – ଘୋର କଳିକାଳ ହୋଇଗଲାଣି ଦେଖୁଛି ! |
| ମିତା | ଆଉ କ'ଣ ସନ୍ତୋଷୀ ମାତାର ଗୀତ ଲଗେଇ ଥିଲେ ସତ୍ୟ ଯୁଗ ହୋଇ ଯାଇଥାନ୍ତା ? ଜୟ ଜୟ ସନ୍ତୋଷି ମାତା ଜୟ ଜୟ ମା... |
| ବ.ବାବୁ | କାହିଁକି ? ଜଗନ୍ନାଥ ଜଣାଣ କି ଭଜନ ଲଗେଇ ଥିଲେ କ'ଣ ଅସୁବିଧା ହୋଇଯାଇଥାନ୍ତା । (ବଡ଼ବାବୁର ଫୋନ୍ ବାଜିଲା) |
| ଗୀତ | ବୋହୂ ଚାଲି ନଜାଣଇ ଲୋ, ପାଦ ପଡୁଥାଏ ବଙ୍କା<br>ଯେଉଁ ଦିନ ବୋହୂ ସଳଖି ଚାଲିବ ପାଦେ ପଶିଯିବ ରଙ୍କା । |
| ମିତା | ବାପା ତୁମ ଫୋନ୍ ବାଜୁଛି ଉଠଉନ... |
| ବ.ବାବୁ | (ଉଠେଇଲେ) (ଗୀତ ବାଜିଲା) |
| ୧. | ଅନାମିକା ନାୟିକା ସେ ହେଲା ମୋର ପ୍ରେମିକା |
| ୨. | ଛାତି ଚିରି ଦେଲେ ତୁ...ତୁ...ତୁ<br>ଏମିତି ୧୦୮ ଓଡ଼ିଆ ଧମାକା ବୋବାଲ ଗୀତ ଶୁଣନ୍ତୁ ମାସକୁ ମାତ୍ର ତିରିଶ ଟଙ୍କାରେ ଏସ୍.ଏମ୍.ଏସ୍ କରନ୍ତୁ । ୭୫୭୫୦କୁ (କାଟିଦେଲେ) ମୋ ଛାତି ଭିତରେ ଏଇନେ ହା ହୁତାଶନ ଜଳୁଛି । ଯାକୁ ଲାଗିଛି ଛାତି ଚିରି ଦେଲେ ତୁ |
| ମିତା | ବାପା କାଟି ଦେଲ ଯେ କିଏ କି ? |
| ବ.ବାବୁ | ଛାତି ଚିରିଦେଲେ ତୁ । |
| ମିତା | କିଏ ମୁଁ ? |
| ବ.ବାବୁ | ଚୁପ୍ କର । ମୋତେ ଯେ ଧମାକା ଗୀତ ଶୁଣାଉଛି । ଏଇ କମ୍ପାନିବାଲାଙ୍କର ଆଉ ତ କିଛି କାମ ନାହିଁ । |
| ମିତା | ମୁଁ ଭାବିଲି ବୋଉ ହୋଇଥିବ । ହଉ ଯୁଆଡ଼େ ଯାଇଛି ଯାଉ ସଞ୍ଜ ହେଲେ ବଳେବଳେ ଆସିଯିବନି । ତୁମେ ଖାଇବ ଚାଲ । |
| ବ.ବାବୁ | ସେ କ'ଣ ଗାଈ ହୋଇଛି ଯେ ଯୁଆଡ଼େ ଯାଉପଛେ ଚରିବୁଲି ସଞ୍ଜବେଳକୁ ଗୁହାଳକୁ ପଳେଇ ଆସିବ । (ମିତାର ଫୋନ୍ ବାଜିଲା) |
| ଗୀତ | ମୟୁରୀ ଗୋ...ତୁମ ଆକାଶେ ମୁଁ ଦିନେ ମଲ୍ଲାରେ ମେଘ ସାଜିଲି.. |
| ମିତା | (ଉଠେଇଲା) ହ୍ୟାଲୋ ମାମୁ କୁହାର କ'ଣ କହିଲ ବାପାଙ୍କୁ ଦେବି । ବାପା ନିଅ ମାମୁ ଫୋନ୍ କରିଛନ୍ତି । (ଦେଲା) ଅପରପାର୍ଶ୍ୱରୁ ପୂର୍ଣ୍ଣ) (ଅନ୍ୟ ଜୋନ୍‌ରେ ପୂର୍ଣ୍ଣ ଦେଖାଗଲା) (ଖନା ଭାବରେ କଥାବାର୍ତ୍ତା କରେ ପୂର୍ଣ୍ଣ) |
| ପୂର୍ଣ୍ଣ | ଭାଇ କୁହାର । ଅପାଙ୍କୁ ଦେଲ । |
| ବ.ବାବୁ | ତୋ ଅପା କୁଆଡ଼େ ପଳେଇଛି । |

| | |
|---|---|
| ପୂର୍ଣ୍ଣ | ଅପା କୁଆଡ଼େ ପଳେଇ ଯାଇନି । ସେ ଆମ ଘରକୁ ଆସିଛି । |
| ବ.ବାବୁ | ତୋ ଅପା ତା'ହେଲେ ସେଇଠି କି ଯାଇଛି । ଭଲ ହେଲା ମୁଁ ତ ଭାବିଲି ଆଉ କାହା ସାଙ୍ଗରେ କୁଆଡ଼େ ପଳେଇଲା ବୋଲି । |
| ପୂର୍ଣ୍ଣ | ମୋ ଅପା କ'ଣ ଓଲେଇ ଗାଈ ହୋଇଛି ଯେ ବାଡ଼ ଭାଙ୍ଗି ପଳେଇବ । ହେଲେ ତୁମେ ଏ ବୟସରେ ଯେମିତି ବୁଲା ଷଣ୍ଢ ଭଳିଆ ବାଡ଼ ଡେଇଁଛ । ଜାଣିଛ ତା'ର ପରିଣାମ କ'ଣ ହେବ ? |
| ବ.ବାବୁ | ହଇରେ ଶଳା । ମୋତେ ଧମକ ଦେଉଛୁ ? କ'ଣ ତୁ କରିବୁ ଶୁଣେ । |
| ପୂର୍ଣ୍ଣ | ନାରୀ ନିର୍ଯ୍ୟାତନା, ଯୌତୁକ ଯନ୍ତ୍ରଣା, କେଶରେ ଘଣା ପେଷେଇ ଦେବି । |
| ବ.ବାବୁ | ହଇରେ ମୁଣ୍ଡା ପୁନିଆ– ମିଷ୍ଟର ପୂର୍ଣ୍ଣଚନ୍ଦ୍ର ମହାନ୍ତି । ମୁଣ୍ଡରେ ବୁଦ୍ଧିତ ବିଲକୁଲ ନାହାନ୍ତି । ଭଗବାନ ଟିକିଏ ସାଧାରଣ ଜ୍ଞାନ ବି ଦେଇ ନାହାଁନ୍ତି । ତୋର ଏଇ ମୁଣ୍ଡା ବୁଦ୍ଧି ଯୋଗୁଁ ତୋ ସ୍ତ୍ରୀ ତୋତେ ଛାଡ଼ି ପଳାଇଲା । ପୁଣି ହାଉଳି ଖାଉଛୁ କାହିଁକି ? |
| ପୂର୍ଣ୍ଣ | ଠିକ୍ କଥା । ଏବେ ତୁମ ସ୍ତ୍ରୀ ବି ତୁମକୁ ଛାଡ଼ି ପଳେଇଛି । ଏଥର କୁହ କି ମୁଣ୍ଡା ମୁଁ ନା ତୁମେ ? |
| ବ.ବାବୁ | କ'ଣ କହିଲୁ ମୋତେ ଛାଡ଼ି ମୋ ସ୍ତ୍ରୀ ପଳେଇଛି ? |
| ପୂର୍ଣ୍ଣ | ନୁହେଁ ତ ଆଉ କ'ଣ ? ସିଏ ଆଉ ସେଠିକି ଯିବ ନାହିଁ । |
| ବ.ବାବୁ | ନ ଆସୁ । ସେ ନ ଆସିଲେ ତ ମୋ ଭାତ ହାଣ୍ଡି ଓଲଟି ପଡୁଛି । |
| ପୂର୍ଣ୍ଣ | ଜାଣେ ସେଇଥିପାଇଁ ତ ପକେଟରେ ଅତର ବୋଳା ଗୋଲାପ ଧରି ବୁଲୁଛ । କହିଲାବେଳକୁ ଦେଖେଇ ଶୁଣେଇ ଭୁଜାଲିରେ ଧାର ଦଉଛ, ପ୍ରେସର କୁକର ସଜାଡୁଛ । ମୋ ଅପା କ'ଣ ଚିକେନ୍ ନା ମଟନ୍ ହୋଇଛି ଯେ ହଣା ଖାଇ ପ୍ରେସର କୁକରରେ ପଶିବ । ସେ କଥା ହେବନି । ଏଇ ଦିନେ ଦୁଇ ଦିନ ଭିତରେ ତୁମେ ଓକିଲ ନୋଟିସ ପାଇବ । |
| ବ.ବାବୁ | କ'ଣ କହିଲୁ ମୋତେ ଓକିଲ ନୋଟିସ୍ ପଠାଇବୁ । କିଏ ତୁ ନା ତୋ ଅପା ? ତୁଟା ଯେମିତି ପାଗଳ ତୋ ଅପାବି ସେମିତି ବାୟାଣୀ । ଦେଲୁ ତାକୁ ଫୋନ୍ ଦେଲୁ । |
| ମିତା | ବାପା ଏଇନେ ଫୋନ୍ ରଖି ଦେଇ ଖାଇବ ଚାଲ । ବୋଉ କଥା ମୁଁ ବୁଝିବି । |
| ବ.ବାବୁ | ନା ନା ଆଜି ଏ ପାଖ ନ ହେଲେ ସେ ପାଖ । ଦେ ତୋ ଅପାକୁ ଫୋନ୍ ଦେଲୁ । |
| ମାଆ | ପୂର୍ଣ୍ଣ କହିଦେ । ମୁଁ ଛେଳି କି ମେଣ୍ଢା ନୁହେଁ ଯେ ସେଠିକି ହଣା ଖାଇବାକୁ ଯିବି । ଯିବିନି ଯିବିନି ଯିବିନି । |
| ପୂର୍ଣ୍ଣ | ଶୁଣିଲ ତ ? |
| ବ.ବାବୁ | ତୁ ବି ତାକୁ ଶୁଣେଇ ଦେ । ମୁଁ ତାକୁ ଆଣିବି ନାହିଁ, ଆଣିବି ନାହିଁ, ଆଣିବି ନାହିଁ । ଓକିଲ ନୋଟିସ ତୁ ପଠେଇବୁ କ'ଣ ମୁଁ ପଠାଉଛି ରହିଥା । (ଫୋନ୍ କାଟିଲେ) |
| ମିତା | ଏଥର ଖାଇବ ଚାଲ । |
| ବ.ବାବୁ | ଖାଇବି ନାହିଁ କି ଛାଡ଼ିବି ନାହିଁ । ଯେସାକୁ ତେସା ହାରାମଯାଦାକୁ କୁରାଢ଼ୀ ପଶା । |
| ମିତା | ବାପା, ରାଗ ଶାନ୍ତ କର ସବୁ ବୁଝିବା... |
| ବ.ବାବୁ | କିନ୍ତୁ ମୁଁ ବୁଝିପାରୁନି... |
| କୋରସ୍ | ନା ନା ନା...କିନ୍ତୁ ଏକ ଶବ୍ଦ... (ଗୀତ–ଗୀତିନାଟ୍ୟ ସ୍ୱରରେ) |

| | | |
|---|---|---|
| | ଆସୁ ଯେତେ ବାଧା ଆମରି ଜୀବନେ | ଆସୁ ଯେତେ ଦ୍ୱନ୍ଦ୍ୱ ଧରି... |
| | ଡରିବା ନାହିଁରେ ଭାରସାମ୍ୟ ରଖି | ବାହିଯିବା କର୍ମ ତରୀ ।୦। |
| ୧ମ | ଧୀର ପାଣି ପରା ପଥର କାଟଇ | |
| ୨ୟ | ଧୀର ନିରନ୍ତର ଗତି | |
| ୩ୟ | ଆଣିଦିଏ ସଦା ବିଜୟର ଶକ୍ତି | |
| ୪ର୍ଥ | ଶୁଣ ଆହେ ସୁଧି ମତି ।୧। | |
| ସମସ୍ତେ | ଆସୁ ଯେତେ ବାଧା ଆମରି ଜୀବନେ | ଆସୁ ଯେତେ ଦ୍ୱନ୍ଦ୍ୱ ଧରି... |

(ଘରର ଦୃଶ୍ୟ ବ୍ୟସ୍ତ ଭାବରେ ବୁଲୁଛନ୍ତି ବ.ବାବୁ । କାହାକୁ ଫୋନ୍ ଲଗାଉଛନ୍ତି ଫୋନ୍ ଏନ୍‌ଗେଜ୍)

ବ.ବାବୁ — ଏ ଖରାବେଳଟାରେ ମିତା କୁଆଡ଼େ ପଳେଇଛି ନା କ'ଣ ? ଫୋନ୍‌ଟା ବି ସୁଇଚ୍ ଅଫ୍ କରିଦେଇଛି । କି ଇରେସପନ୍ସିବଲ୍ ପିଲା । କୁଆଡ଼େ ଯିବୁ କହିବୁ ନାହିଁ ? କହିବାରେ କ'ଣ ଅସୁବିଧା ଅଛି କେଜାଣି । ତାକୁ ଟିକିଏ ସ୍ୱାଧୀନତା ଦେଇ ଦେଲାରୁ ତା'ର ଆସ୍ପର୍ଦ୍ଧା ବଢ଼ି ଗଲାଣି । ଆସୁ ଆଜି । (ଏତିକିବେଳେ ବେଲ୍ ବାଜିଲା) ଆସିଲା ବୋଧ ହୁଏ । କବାଟ ଖୋଲା ଅଛି ଆସୁନ୍ତୁ, ଆସ । (ଉତ୍ତର କିଛି ଶୁଣାଗଲା ନାହିଁ) କିଏ କିରେ ।

ପ୍ରେମାଞ୍ଜନ — ଭିତରକୁ ଆସିପାରେ କି ସାର୍ ।

ବ.ବାବୁ — କିଏ ? ଆସନ୍ତୁ ।

ପ୍ରେମାଞ୍ଜନ : ଆଜ୍ଞା ନମସ୍କାର ।

ବ.ବାବୁ — ଆରେ ଆପଣ ! ଆପଣ ମୋ ଘରର ଠିକଣା ଜାଣିଲେ କେମିତି ?

ପ୍ରେମାଞ୍ଜନ — ଆପଣ ଆମ ଅଫିସରର ବଡ଼ ବାବୁ । ତେଣୁ ପିଅନ, ଚପରାଶିଠାରୁ ଆରମ୍ଭ କରି ୱାଚମ୍ୟାନ, ଡ୍ରାଇଭର ପର୍ଯ୍ୟନ୍ତ ସମସ୍ତେ ଆପଣଙ୍କ ଘରର ଠିକଣା ଜାଣିଛନ୍ତି । ତେଣୁ ଆଉ ଅସୁବିଧା କ'ଣ ?

ବ.ବାବୁ — ମୋ ପାଖରେ ଆପଣଙ୍କର କ'ଣ କିଛି କାମ ଥିଲା ? ଅଫିସରେ ତ ମୋତେ କହିପାରିଥାନ୍ତେ ? ଏତେ ବାଟ କଷ୍ଟକରି ଆସିଲେ କାହିଁକି ?

ପ୍ରେମାଞ୍ଜନ — ନା ସେମିତି କିଛି କାମ ନୁହେଁ ଏଇ ଆପଣଙ୍କ ପାଇଁ ମିଠାଟିକିଏ ଆଣିଥିଲି ।

ବ.ବାବୁ — କେଉଁ ଖୁସିରେ ?

ପ୍ରେମାଞ୍ଜନ — ଆପଣ ତ ସବୁବେଳେ କହୁଥିଲେ ୫୦୦୦ଟଙ୍କାରେ ଚାକିରି କରି ବଞ୍ଚିବ କେମିତି ? ତେଣୁ ମୁଁ ଚାକିରି ଛାଡ଼ି ଦେଉଛି ।

ବ.ବାବୁ — ଆରେ ଆରେ, ବଡ଼ ଅଜବ ପିଲା, ମୋ ଉପରେ ରାଗି ଚାକିରି ଛାଡ଼ିଦେଲ ନା କ'ଣ ? ପୁଣି ଚାକିରି ଛାଡ଼ିବା ଖୁସିରେ ମିଠା ବାଣ୍ଟୁଛ ? ଚାକିରି ଛାଡ଼ି ଚଳିବ କେମିତି ?

ପ୍ରେମାଞ୍ଜନ — ଆଜି ବ୍ୟାଙ୍କିଙ୍ଗ୍ ରେଜଲ୍ଟ୍ ବାହାରିଚି ମୁଁ ପି.ଓ ଚାକିରି ପାଇଛି ବ୍ୟାଙ୍କ୍ ଅଫ୍ ଇଣ୍ଡିଆରେ ।

ବ.ବାବୁ — ବାଃ ଭାରି ବଢ଼ିଆ କଥା । କନ୍‌ଗ୍ରାଚୁଲେସନ୍ । ଆଚ୍ଛା ତୁମେ ତ ବାହା ହୋଇ ନ ବୋଧ ହୁଏ ।

ପ୍ରେମାଞ୍ଜନ — ଏଇ ତ ଚାକିରି ପାଇଲି ଆଉ ବାହା ହେଲି କେତେବେଳେ ।

ବ.ବାବୁ — ଏବେ ବାହା ହେବାର ଯୋଜନା ଅଛି ? ବସ ମୁଁ ଟିକିଏ ଚା'ବନାଏଁ ଦି'ଜଣ ବସି ଚା'ପିଇବା ଆଉ ସେ ବିଷୟରେ କଥା ହେବା ।

ପ୍ରେମାଞ୍ଜନ — ଆପଣ ଚା' ବନେଇବେ ? ମାଉସୀ ନାହାଁନ୍ତି କି ?

| | |
|---|---|
| ବ.ବାବୁ | ନା, ପଳେଇଛନ୍ତି । |
| ପ୍ରେମାଞ୍ଜନ | ପଳେଇଛନ୍ତି ମାନେ । ରାଗି କରି ପଳେଇଛନ୍ତି ? କେବେ ? ଆଉ ଆସିବେନା ନାହିଁ । |
| ବ.ବାବୁ | ନାଇଁ ମାନେ ପଳେଇଛନ୍ତି ମାନେ, ଯାଇଛନ୍ତି ବାପ ଘରକୁ । ଆସିବେନି ପୁଣି ଯିବେ କୁଆଡ଼େ ? ଆଜିକାଲି ଭିତରେ ଆସିପାରନ୍ତି । |
| ପ୍ରେମାଞ୍ଜନ | ନ ଆସିବି ପାରନ୍ତି । ରାଗି କରି ପଳେଇଛନ୍ତିମାନେ ୨/ ୪ଦିନ ମଧ ଲାଗି ଯାଇପାରେ । ମାନେ ରାଗ ଥଣ୍ଡା ହେଲେ ତ ପୁଣି ଆସିବେନା । ହୁଏ ଏ ବୟସରେ ରାଗରଷା ଏମିତି ବି ଟିକିଏ ବଢ଼ିଯାଏ । |
| ବ.ବାବୁ | ତୁମେ କେମିତି ଜାଣିଲ ଯେ ଏ ବୟସରେ ରାଗରଷା ବଢ଼ିଯାଏ ବୋଲି । |
| ପ୍ରେମାଞ୍ଜନ | ଆମ ଘରେ ବି ସେମିତି ହୁଏ ସାର୍ । ପ୍ରାୟ ସବୁବେଳେ ବାପା ବୋଉଙ୍କର କଳି ଲାଗେ । |
| ବ.ବାବୁ | ନିତି କଳି ହୁଏ ? |
| ପ୍ରେମାଞ୍ଜନ | ପ୍ରାୟ ନିତି । ବର୍ଷକରେ ଧରନ୍ତୁ ୩୦୦ଦିନ । |
| ବ.ବାବୁ | କାହିଁକି ? |
| ପ୍ରେମାଞ୍ଜନ | ଏମିତି କିଛି କାରଣ ନ ଥାଏ । ସକାଳ ସଞ୍ଜରେ ଦୁହେଁ ଏକା ସାଙ୍ଗରେ ଚା’ ପିଇବାକୁ ବସନ୍ତି । ଆଉ ସୁଖଦୁଃଖ ହେଉ ହେଉ କୌଣସି ନା କୌଣସି ଖିଅ ବାହାର କରି ଆରମ୍ଭ ହୁଏ ଝଗଡ଼ା, ତା’ପରେ କଥା କଟା କଟି, ରାଗରଷା ମୁହଁ ଫୁଲାଫୁଲି । |
| ବ.ବାବୁ | ବାଃ Very Intersting |
| ପ୍ରେମାଞ୍ଜନ | ହେଲେ ସକାଳ କଳି ସଞ୍ଜକୁ ତୁଟେ ଆଉ... |
| ବ.ବାବୁ | ସଞ୍ଜ କଳି ସକାଳ ଦେଖେନି (ହସିଲେ) ଠିକ୍ ଠିକ୍... |
| ପ୍ରେମାଞ୍ଜନ | ହଁ, ପ୍ରାୟ ସେଇଆ ହୁଏ । |
| ବ.ବାବୁ | ସେଇଟା ରାବଡ଼ିଆ ପ୍ରେମର ଲକ୍ଷଣ । |
| ପ୍ରେମାଞ୍ଜନ | ମାନେ... |
| ବ.ବାବୁ | ମାନେ କ୍ଷୀର ଆଉଟୁ ଆଉଟୁ ରାବିଡ଼ି । ହଁ ନା ନାହିଁ । |
| ପ୍ରେମାଞ୍ଜନ | ହଁ । |
| ବ.ବାବୁ | ସେମିତି, ପ୍ରେମ ଘାଣ୍ଟି ଚକଟି ହୋଇ ବୃଦ୍ଧ କାଳକୁ ରାବିଡ଼ି ଆକାର ଧାରଣ କରେ ତାକୁ କୁହନ୍ତି ରାବଡ଼ିଆ ପ୍ରେମ । ଏହାର ମହତ୍ତ୍ୱ ହେଲା, ଏଥିରେ ଯନ୍ତ୍ରଣା ବି କମ୍, ହେଲେ ମଉଜ ବେଶୀ । ଯେମିତି ତରକାରୀରେ ଲଙ୍କାର ସୁଆଦ-ଇୟେ ଠିକ୍ ସେମିତି । ପୋଡ଼ାଜଳା ହେଉଥିବ ନାକରୁ ଆଖିରୁ ପାଣି ବୋହି ପଡୁଥିବ ହେଲେ ସୁଯୋଗ ଦେଖି ପୁଣି ତରକାରୀରୁ ପୁଳାଏ ହାପୁଡ଼ି ନେଉଥିବ । (ହସି) ତୁମେ ଏବେ ବୁଝିପାରିବନି ବୟସ ହେଲେ ବୁଝିବ । |
| ପ୍ରେମାଞ୍ଜନ | ନାଇଁ ଆଜ୍ଞା ଏବେ ଠୁଁ ମୁଁ ବି କିଛି କିଛି ବୁଝିଗଲିଣି ନା... |
| ବ.ବାବୁ | କେଉଁ କଥା ? |
| ପ୍ରେମାଞ୍ଜନ | ଏଇ ପ୍ରେମର କଥା । ଅବଶ୍ୟ ନୂଆ ନୂଆ କ୍ଷୀର ବସେଇଛି । ଆଉଟି ପାଉଟି ହେଉଛି । ମଝିରେ ମଝିରେ ଉତୁରା ଉତୁରିବି ଚାଲିଛି । ହେଲେ ଏ ଯାଏଁ ରାବିଡ଼ି ମାର୍କା ହୋଇନି । |
| ବ.ବାବୁ | ହେବ ହେବ । ବୟସ ଗଡ଼ିଲେ ହେବ । ସେଇଥିପାଇଁ ଧୈର୍ଯ୍ୟ ଦରକାର । ଅପେକ୍ଷା କର । |

ପ୍ରେମାଞ୍ଜନ	ମାଉସୀ ଆଉ ଛାଡ଼ପତ୍ର ଦେବା କଥା କହି ନାହାନ୍ତି ତ ?

ବ.ବାବୁ	କହିଛନ୍ତି । ହେଲେ ତୁମେ କେମିତି ଜାଣିଲ ?

ପ୍ରେମାଞ୍ଜନ	ଅନୁଭୂତିରୁ । ବାପା ମାଆଙ୍କ ଅନୁଭୂତିରୁ । ତା'ହେଲେ ଏଇଟା ରାବଡ଼ିଆ ପ୍ରେମ ନୁହେଁ ଆଜ୍ଞା । ଇଏ ତା'ଠାରୁ ଆହୁରି ସରସ । ମଲେଇ ମାର୍କା ପ୍ରେମ ।

ବ.ବାବୁ	ତୁମେ ତା'ହେଲେ ପ୍ରେମ ଉପରେ ରୀତିମତ ଗୋଟିଏ ଗବେଷଣା ଚଳେଇଛ ବୋଧ ହୁଏ । ଭଲ ଭଲ ନ କରିବ କାହିଁକି ? ପ୍ରେମର ବୟସ ପରା ଇଏ ।

ପ୍ରେମାଞ୍ଜନ	ଛାଡ଼ନ୍ତୁ ସେ କଥା । ଘରେ ଆଉ କ'ଣ କେହି ନାହାଁନ୍ତି ।

ବ.ବାବୁ	ନାହାଁନ୍ତି କାହିଁକି ? ତା'ରି ପାଇଁ ତ ଏତେ ଚିନ୍ତା ଶିକ୍ଷା ସହାୟକ ଚାକିରି କରିଛି ସିନା । ହେଲେ କାହାକୁ ସହାୟତା ଦେବାରେ ସେ କେବେ ମନା କରେନି ମୋର ଏକମାତ୍ର ଝିଅ ମିତା । ତାରି ବାହାଘର ପାଇଁ ମୋର ଚିନ୍ତା – ତୁମେ କେଉଁଠି କ'ଣ ଠିକ୍ ଠାକ୍ କଲଣି ।

ପ୍ରେମାଞ୍ଜନ	ନା କରିନି । ଏଥର ଠିକ୍‌ଠାକ୍ କରିବା ।

ବ.ବାବୁ	ତା'ହେଲେ ମୁଁ ତୁମ ପାଇଁ ବାହାଘର ପ୍ରସ୍ତାବଟାଏ ଦେଉଛି । ତୁମର କ'ଣ ଫଟୋ ଜାତକ ଦରକାର ?

ପ୍ରେମାଞ୍ଜନ	ଦେଲେ ଚଳିବ । ଘରକୁ ପଠେଇ ଦେବି । ବାପା ମାଆ ଦେଖିବେ ତ । (ପ୍ରବେଶୀ) ଏଇ ନିଅ ଫଟୋ ଆଉ ଜାତକ ।

ପ୍ରେମାଞ୍ଜନ	(ନେଲେ) ହେଉ ମୁଁ ତା'ହେଲେ ଆସୁଛି । (ବେଲ୍ ବାଜିଲା)

ବ.ବବୁ	କବାଟ ଖୋଲା ଅଛି । (ଭିତରକୁ ମିତା ଆସିଲା ହାତରେ ମିଠା ପ୍ୟାକେଟ୍ ) ଏଠିକି ଶୁଣ । ତୁ କାହାକୁ କିଛି ନ କହି କୁଆଡ଼େ ଯାଇଥିଲୁ ।

ମିତା	ତୁମ ପାଇଁ ମିଠା ଆଣିବାକୁ (ପ୍ରେମାଞ୍ଜନକୁ ଚାହିଁ) ଇଏ କିଏ ? ଓ ମିଷ୍ଟର ? ଆପଣ ମୋ ଫଟୋ ପାଇଲେ କେଉଁଠୁ ଜାତକ ବି କିଏ ଦେଲା ?

ବ.ବାବୁ	ସାର୍ ଦେଲେ ।

ମିତା	କେଉଁ ସାର୍ ।

ବ.ବାବୁ	ମୁଁ ଦେଇଛି । ତୁ ଏମିତି ରାଗୁଛୁ କାହିଁକି ?

ମିତା	ମୋ ଫଟୋ, ଜାତକ, ମୋତେ ନ ପଚାରି ତୁମେ ତାଙ୍କୁ ଦେଇଛ କାହିଁକି ? ସିଏ କିଏ କି ? ହେଲେ ମୋ ବାହାଘର ପ୍ରସ୍ତାବ ତାଙ୍କୁ ଦେଇନ ତ ?

ପ୍ରେମାଞ୍ଜନ	ହଁ ଦେଇଛନ୍ତି ।

ମିତା	ହେ ମିଷ୍ଟର ମୁଁ ଆପଣଙ୍କୁ ପଚାରୁନି । ୟାଙ୍କ ପରିଚୟ କ'ଣ ? ସେ କ'ଣ କରନ୍ତି ?

ବ.ବାବୁ	ଆମ ଅଫିସର Data Entry Operator

ମିତା	ଅଫିସର । I mean operator, ଦରମା ୫ ହଜାର ଟଙ୍କା । ତାଙ୍କ ସାଙ୍ଗରେ ବାହାଘର ପ୍ରସ୍ତାବ ଦେଇଛ ତୁମ ମୁଣ୍ଡ ଠିକ୍ ଅଛି ତ । ସେତିକି ଟଙ୍କାରେ ସେ ଖାଇବେ କ'ଣ ? ମୋତେ ଖୁଆଇବେ କ'ଣ ? ସେତିକି ପଇସା ପରା ମୋର ଡ୍ରେସ୍ ଆଉ କସ୍‌ମେଟିକ୍ କିଣିବାରେ ଖର୍ଚ୍ଚ ହୋଇଯିବ । ତା'ପରେ ସଞ୍ଚିବି କେତେ, ବଞ୍ଚିବି କିମିତି ସେ କଥା ଭାବିଛ । କ'ଣ ନା ଅଫିସର ।

ବ.ବାବୁ	ଥିଲେ । ଏବେ ସେ ବ୍ୟାଙ୍କ ଅଫ୍ ଇଣ୍ଡିଆରେ ପି.ଓ. ଚାକିରି ପାଇଛନ୍ତି ।

ମିତା	ସତେ ନା କ'ଣ ? ସେଇଥିପାଇଁ ସେ ରାତାରାତି ଉତ୍ତମ ପାତ୍ର ହୋଇଗଲେ ନା କ'ଣ କହୁଛନ୍ତି ।

ପ୍ରେମାଞ୍ଜନ ଏ ପ୍ରସ୍ତାବରେ ଆପଣଙ୍କର କିଛି ଆପତ୍ତି ଅଛି ?
ମିତା ଚଳିବ । ତେବେ ଗୋଟିଏ ସର୍ତ୍ତରେ ।
ବ.ବାବୁ ସବୁବେଳେ ତୋର କିଛି ନା କିଛି ସର୍ତ୍ତ ରହୁଛି ଦେଖୁଛି । ଆରେ ଏ ଜୀବନଟା ଯାକ କେବଳ ସର୍ତ୍ତମୂଳକ ଭାବେ ଜୀଇଁବା ଉଚିତ ନୁହେଁ । ଏଠି କିଛି କର୍ତ୍ତବ୍ୟ ବି ଅଛି । ଆବେଗ, ଆବେଦନ, ଉତ୍ତର ଦାୟିତ୍ୱ ବି ଅଛି । ଏମାନଙ୍କୁ ଛାଡ଼ି ମଣିଷ କେବଳ ସର୍ତ୍ତମୂଳକ ଜୀବନ ବଞ୍ଚିପାରେ ନି ।
ପ୍ରେମାଞ୍ଜନ ଠିକ୍ ଅଛି ମୁଁ ରାଜି । ଆପଣ ଏବେ ସର୍ତ୍ତଟା କହନ୍ତୁ ।
ମିତା ଆପଣଙ୍କୁ ମୋର ଅତୀତର ପୁରା ଜୀବନ କାହାଣୀ ଶୁଣିବାକୁ ପଡ଼ିବ ।
ବ.ବାବୁ ଆହା । ସେ ଗୁଡ଼ା କାହିଁକି ଏଠି ଗପୁଛୁ ଶୁଣେ ।
ପ୍ରେମାଞ୍ଜନ କେଉଁ କାହାଣୀ ?
ମିତା ମୋ ପ୍ରେମ କାହାଣୀ ।
ବ.ବାବୁ ଆହା ମିତା ... ଏ ବୟସରେ ସେମିତି କାହାଣୀ ସବୁ ପ୍ରାୟ ସମସ୍ତଙ୍କର ଜୀବନରେ ହୁଏ ।
ମିତା ମୁଁ ଯଦି ମୋର ପ୍ରେମିକଙ୍କୁ ଛାଡ଼ି ଆପଣଙ୍କୁ ବାହା ହେବାକୁ ରାଜି ହୁଏ ତା'ହେଲେ ଆପଣଙ୍କର ଆପତ୍ତି ନାହିଁ ତ ?
ପ୍ରେମାଞ୍ଜନ (ଚିନ୍ତା କରି) ନା
ମିତା ପରେ କିନ୍ତୁ ମୋତେ ଦୋଷ ଦେବେନି । ଆଉ ଗୋଟିଏ ସର୍ତ୍ତ – ବାହାଘର ନିରାଡ଼ମ୍ବରରେ ଆଉ ବିନା ଯୌତୁକରେ ହେବ । ଦରକାର ପଡ଼ିଲେ କୋର୍ଟରେ କିମ୍ବା ମନ୍ଦିରରେ ଖାଲି ଫୁଲମାଳ ଅଦଳବଦଳ କରି ବାହାଘର ସରିବ । ରାଜିତ ?
ପ୍ରେମାଞ୍ଜନ ମୁଁ ରାଜି । ଆପଣ ରାଜି ତ ବଡ଼ବାବୁ ।
ବ.ବାବୁ ରାଜି ନ ହୋଇ ଚାରା ଅଛି ।
ମିତା ତୁମ ପାଇଁ ବି ସର୍ତ୍ତ ଅଛି । ରଖିବ ଯଦି କହିବି ।
ବ.ବାବୁ କହ...
ମିତା ସେମିତି କହିଲେ ହେବନି । ମୋ ମୁଣ୍ଡରେ ହାତ ରଖି କୁହ ।
ବ.ବାବୁ ରଖିବି ।
ମିତା ତୁମେ ବୋଉକୁ ଗାଳିମନ୍ଦ କରିବ ନାହିଁ ।
ବ.ବାବୁ ଏବେ ନା କେବେ ?
ମିତା ଜୀବନସାରା କେବେ ବି ଗାଳିମନ୍ଦ କରିବ ନାହିଁ । ନହେଲେ ମୁଁ ବି ଜୀବନସାରା ବାହା ହେବିନି ।
ବ.ବାବୁ ବଡ଼ କଠିନ ସର୍ତ୍ତ ଏଇଟା – ହଉ ହେଲା କେବେ ମୁଁ କଳିକଜିଆ ଆରମ୍ଭ କରିବି ନାହିଁ ।
ମିତା ନା– ସେମିତି ହେବନି ।
ବ.ବାବୁ ଆରେ କଳି କଜିଆ ପରା ସେ ପଟରୁ ଅଟୋମେଟିକ ଆରମ୍ଭ ହେବ । ଆରେ ଶୁଣ ସୀମାନ୍ତ ଆର ପଟୁ ଘନ ଘନ ଯୁଦ୍ଧବିରତି ଲଂଘନ ହେଲେ ଏପଟରୁ ପୁଣି ଗୋଟେ ଦି'ଟା ଗୁଳି ଫୁଟିବନା ନାହିଁ ?
ମିତା ନା ନା ଏପଟ ପୁରା ଶାନ୍ତ ରହିବା ଦରକାର । ତା'ହେଲେ ଆରପଟ ବି କିଛି ସମୟ ଢୋ ଢୋ କରି ବାଡ଼େଇ କଚାଡ଼ି ଆପେ ଶାନ୍ତ ପଡ଼ିଯିବ ବୁଝିଲ ।
ବ.ବାବୁ ତୋ କଥା ବୁଝିବା କଷ୍ଟ କେତେବେଳେ କହିବୁ ''ଯେସାକୁ ତେସା''ତ କେତେବେଳେ କହିବ ''ସବ୍‌ସେ

ନିରବ ଭଲ ।'' ହଉ ହେଲା ଯେ ହେଲେ ତୋ' ବୋଉ ପରା ଆଉ ଏଠିକି ଆସିବ ନାହିଁ ଶୁଣୁଛୁ । ଆଉ ଏସବୁ ସର୍ତ୍ତ ତୁ ରଖୁଛ କାହିଁକି ?

ମିତା — ସେ କଥା ମୁଁ ବୁଝିବି । ବୋଉ ଭିତରକୁ ଆସ (ବୋଉ ଆସିଲା) ଆମ ଘରେ ଏଇ କେତେ ଦିନ ଧରି ଯାହାସବୁ ଖେଳ ଚାଲିଥିଲା, ତୁମ ଦି'ଜଣଙ୍କ ଭିତରେ, ସେଥିପାଇଁ ଦାୟୀ ମୁଁ ।

ବ.ବାବୁ — ଆରେ ତୁ ଆମ ଝିଅ ହୋଇ ଆମ ସାଙ୍ଗରେ ଥଟ୍ଟା ଖେଳୁଛୁ ।

ମାଆ — ତୋ କାନ ଦେଖି । (କାନଧରି) ତୁ ତ ଗୋଟିଏ ଭେରି ନାଇଟି ଗାର୍ଲ ଦେଖୁଛି ।

ମିତା — ନାଇଟି ଗାର୍ଲ ନୁହେଁ ''ନଟି ଗାର୍ଲ ।'' ଆଃ କାନ ଛାଡ଼...ନହେଲେ ନାରୀ ନିର୍ଯ୍ୟାତନା କେଶ୍‌ରେ ଦୁହେଁ ଜେଲ୍ ଯିବ ଜାଣିଥା । (କାନ ଛାଡ଼ି ଦେଲେ) ।

ମାଆ — ତୁ ଏମିତି କାହିଁକି ଦୁଷ୍ଟାମୀ କଲୁ ?

ମିତା — ତୁମ ଦୁହିଁଙ୍କୁ ବୁଝେଇ ଦେବାକୁ ଚାହୁଁଥିଲି ଯେ ବାହାଘର ଯେମିତି ବି ହେଉନା କାହିଁକି । ସ୍ୱାମୀ ସ୍ତ୍ରୀ ମଧ୍ୟରେ ଥିବା ବିଶ୍ୱାସ ଯେମିତି କେବେ ସନ୍ଦେହ ଜାଲରେ ଛନ୍ଦି ହୋଇନଯାଏ । ଥରେ ମନରେ ସନ୍ଦେହ ଆସିଲେ ଖାଲି ସ୍ୱାମୀ, ସ୍ତ୍ରୀ କାହିଁକି, ପରିବାରର ସବୁ ସମ୍ପର୍କ, ସମାଜର ସବୁ ବନ୍ଧନ ବନ୍ଧୁତ୍ୱ, ଭାଙ୍ଗିରୁଜି ଛାରଖାର ହୋଇଯାଏ । କାରଣ ପୃଥିବୀର ସବୁ ସମ୍ପର୍କ ଆଉ ବିଶ୍ୱାସ, ପ୍ରେମ ଉପରେ ହିଁ ଗଢ଼ି ଉଠିଥାଏ । ଆଉ ତା' ଭିତରେ କିନ୍ତୁ ନାମକ ଶବ୍ଦର ସ୍ଥାନ ନାହିଁ ।

ବ.ବାବୁ — ହେଲେ ତୁ ମୋର ଏଇ ବାହାଘର ପ୍ରସ୍ତାବରେ ଏତେ ଶୀଘ୍ର ରାଜି ହୋଇଗଲୁ କେମିତି ?

ମିତା — କାରଣ ଶ୍ରୀଶ୍ରୀ ରାମକୃଷ୍ଣଙ୍କ ମତରେ ''ଯେତେ ମତ ସେତେ ପଥ'' । ପୁଣି ଜଗତଗୁରୁ ଶଙ୍କରାଚାର୍ଯ୍ୟଙ୍କ ମତରେ ''ଏକ ବ୍ରହ୍ମ ୨ୟ ନାସ୍ତି ।''

ମାଆ — ମାନେ...

ମିତା — ତୁମର ଏହି ପ୍ରସ୍ତାବିତ ବର ଆଉ ମୋର Boy friend ଦୁହେଁ ଏକ ଏବଂ ଅଭିନ୍ନ ।

ବ.ବାବୁ — ସେଇଥିପାଇଁ ତା'ହେଲେ ଏ ମିଠା ?

ମିତା — ମିଠାର ତିନୋଟି କାରଣ । ପ୍ରଥମରେ ମୁଁ ବି ବ୍ୟାଙ୍କ୍ ପି.ଓ. ପରୀକ୍ଷାରେ ପାଶ୍ କରି ଚାକିରି ପାଇଛି । ବ୍ୟାଙ୍କ ଅଫ୍ ବରୋଦାରେ ୨ୟରେ ମୋ ପ୍ରସ୍ତାବକୁ ତୁମେ ତୁମର ପ୍ରସ୍ତାବ ଭାବେ ଗ୍ରହଣ କରିଛ । ସେଥିରେ ମୁଁ ବହୁତ ଖୁସି । ୩ୟରେ ତୁମ ଦି'ଜଣଙ୍କ ମନରେ ସୃଷ୍ଟି ହୋଇଥିବା ସନ୍ଦେହ ବି ମୁଁ ଦୂର କରିପାରିଛି ।

ବ.ବାବୁ — ସନ୍ଦେହ ନୁହେଁ ସେଇଟା ଭୁଲ୍ ବୁଝାମଣା ଯାହା ତୁ ସୃଷ୍ଟି କରିଥିଲୁ ।

ମିତା — ଶୁଣ ବାପା, ବୋଉ । ଆମେ ଚାହିଁଥିଲେ ଘର ଛାଡ଼ି ପଳେଇଯାଇ ପାରିଥାନ୍ତୁ । ମାତ୍ର ଆମେ କାହା ମନରେ ଆମ ପ୍ରତି ସନ୍ଦେହ ସୃଷ୍ଟି ନ କରି ଆପଣା ବିଶ୍ୱାସରେ ବଞ୍ଚିବାକୁ ଚାହିଁଲୁ । ଯେଉଁଥିରେ ଆପଣମାନେ ବି ଖୁସି ହେବେ ଆଉ ଆମେ ବି ଆନନ୍ଦରେ ବଞ୍ଚିପାରିବୁ । ଅତଏବ ଆଜିଠାରୁ ଆମ ଭିତରେ ଥିବା ସବୁ ସନ୍ଦେହ ଆଉ ଅବିଶ୍ୱାସର ଅନ୍ତ ହେବ ଏବଂ ବିଶ୍ୱାସ ଓ ପ୍ରେମର ହେଉ ଜୟ ଜୟ କାର ଏବଂ କିନ୍ତୁର ହେଉ Bye Bye...କାରଣ

କୋରସ୍ : କିନ୍ତୁ ଏକ ଶବ୍ଦ...

(ଏହାପରେ ସ୍ୱର୍ଗତ ଅକ୍ଷୟ ମହାନ୍ତିଙ୍କର ''କିନ୍ତୁ ଏକ ଶବ୍ଦ ଛୋଟ ଅର୍ଥ ତା ଅନେକ , କିନ୍ତୁ ଏକ ବହୁପଥ ବାହାରିଥିବା ଛକ'' ଗୀତ ବାଜିବ ।)

♦♦♦

# ଗଳି ଅର୍ଗଳି

## ପାତ୍ର ପରିଚୟ

| | |
|---|---|
| ଗୁରୁଦେବ | ଶ୍ରୀ ମନୋରଞ୍ଜନ ସାମନ୍ତରାୟ |
| ଆନନ୍ଦ | ଶ୍ରୀ ଅମୀୟ କୁମାର ଦାସ |
| ସଦାନନ୍ଦ | ଶ୍ରୀ ଅମରେନ୍ଦ୍ର ଆଚାର୍ଯ୍ୟ |
| ପ୍ରେମାନନ୍ଦ | ଶ୍ରୀ ରାମ ପ୍ରକାଶ ମହାନ୍ତି |
| ସେବାନନ୍ଦ | ଶ୍ରୀ ରଞ୍ଜନ କୁମାର ପ୍ରଧାନ |
| ମହାରାଜ | ଶ୍ରୀ ନାରାୟଣ ଚନ୍ଦ୍ର ତ୍ରିପାଠୀ |
| ମହାମନ୍ତ୍ରୀ | ଶ୍ରୀ ନିରଞ୍ଜନ ସାହୁ |
| ସେନାପତି | ଶ୍ରୀ ବିବେକ କୁମାର ସାମଲ |
| ଭଣ୍ଡବାବା | ଶ୍ରୀ ଅଶୋକ କୁମାର ମହାନ୍ତି |
| ବସନ୍ତ | ଶ୍ରୀ ରମାକାନ୍ତ ଗୋଡ଼ି |
| ମାଧବ | ଶ୍ରୀ ନିରଞ୍ଜନ ରଣା |
| ମାତା | କୁମାରୀ ସୋନିକା ସାହୁ |
| ମାୟା-ମାୟାଧର | କୁମାରୀ ଅର୍ପିତା ନନ୍ଦ |
| ନିର୍ଦ୍ଦେଶନା | ଶ୍ରୀ ଶୁଭ୍ରାଂଶୁ ଶେଖର ପରିଡ଼ା |
| ଆଲୋକ | ଶ୍ରୀ ସଞ୍ଜୟ ପ୍ରଧାନ |
| ପୋଷାକ ଓ ମଞ୍ଚ | ଶ୍ରୀ ପ୍ରଜ୍ଞାଦତ୍ତ ସାହୁ |
| ସଙ୍ଗୀତ | ଶ୍ରୀ ମାରୁତି ପୁହାଣ |
| ଶବ୍ଦ | ରବୀନ୍ଦ୍ର ମଣ୍ଡପ, ଭୁବନେଶ୍ୱର |
| ପ୍ରଯୋଜନା | ସାଧାରଣ ପ୍ରଶାସନ ବିଭାଗ, ସାଂସ୍କୃତିକ ଓ କ୍ରୀଡ଼ା ସଂସଦ |
| ପ୍ରଥମ ପରିବେଷଣ | ରାଜ୍ୟ ସଚିବାଳୟ ମିଳିତ ସାଂସ୍କୃତିକ ପରିଷଦ ଦ୍ୱାରା ଆୟୋଜିତ ନାଟକ ପ୍ରତିଯୋଗିତା |
| ସ୍ଥାନ ଓ ତାରିଖ | ରବୀନ୍ଦ୍ର ମଣ୍ଡପ ତା ୨୬.୦୮.୨୦୧୫ |
| ସଫଳତା | ନାଟକ ପ୍ରତିଯୋଗିତାରେ<br>ଶ୍ରେଷ୍ଠ ପ୍ରଯୋଜନା-ତୃତୀୟ<br>ଶ୍ରେଷ୍ଠ ପାର୍ଶ୍ୱ ଅଭିନେତା-ଦ୍ୱିତୀୟ (ଭଣ୍ଡବାବା)<br>ଶ୍ରେଷ୍ଠ ସଙ୍ଗୀତ ନିର୍ଦ୍ଦେଶନା-ଦ୍ୱିତୀୟ |

# ଗଳି ଅର୍ଗଳି

(ଦୃଶ୍ୟ ଆରମ୍ଭ ବେଳକୁ ଦେଖାଗଲା ଗ୍ରାମ ସୀମାନ୍ତ ସକାଳର ଦୃଶ୍ୟ। ଗୀତ ଗାଇ ଗାଇ ଆସୁଛି ବସନ୍ତ (ନପୁଂସକ) ଅନ୍ୟପଟରୁ କାନ୍ଧରେ ହଳ ଧରି ବାହାରିଛି ମାଧବ ଜଣେ ଚାଷୀ)

ମାଧବ (ହଳିଆ ଗୀତ ଗାଇ ଗାଇ ଚାଲିଛି)

ବସନ୍ତ (ଛାନ୍ଦଟିଏ ଗାଇ ଚାଲିଛି)

ମାଧବ କ'ଣ କିରେ ବାସନ୍ତୀ, ସକାଳେ ସକାଳେ ଷ୍ଟେସନ ଆଡ଼େ ନ ଯାଇ ଏଆଡ଼େ ଚାଲିଛୁ ?

ବସନ୍ତ ହଇରେ ମାଧିଆ, ତୁ ମୋ ସାଙ୍ଗ ହୋଇ ତୁ ବି ଶେଷରେ ମୋତେ ଟାହି ଟାପରା କରୁଛୁ ? ମୋ ନାଁ ବସନ୍ତ ବୋଲି କ'ଣ ତୁ ଜାଣିନୁ ?

ମାଧବ ନାଇଁମ, ମଜାରେ କହଦେଲିନା ? ଏଇ ଯେମିତି ଗୀତରେ ନାହିଁ ଦିନରେ ବସନ୍ତ ଆମେ, ରାତିରେ ବାସନ୍ତୀ।

ବସନ୍ତ କହିବୁନି କାହିଁକି ? ଦଇବ ତ ମୋତେ ଦଣ୍ଡ ଦେଇଛି ତୁମମାନଙ୍କ ଟାହି ଟାପରା ଶୁଣି ସହିଯିବି ସିନା, ହେଲେ ଆତ୍ମହତ୍ୟା କରିପାରିବି ନାହିଁ।

ମାଧବ (ହଳ ରଖିଦେଇ) ଆରେ ଭାଇ, ମୋର ଭୁଲ୍ ହୋଇଗଲା। ତୋତେ ଏମିତି ବାଧିବ ବୋଲି ଜାଣିଥିଲେ ବିଲ୍‌କୁଲ୍ କହିନଥା'ନ୍ତି।

ବସନ୍ତ ଏକା କ'ଣ ତୁ କହୁଛୁ, ଗାଁରେ ପିଲା ଠାରୁ ବୁଢା ପର୍ଯ୍ୟନ୍ତ, ସାହି ପଡ଼ିଶା, ଆଖପାଖ ଗାଁ ସମସ୍ତଙ୍କର ଟାହି ଟାପରା ଶୁଣି ଆଉ କେତେ ସହିବି ? ତେଣୁ ଆଜି ବାହାରିଛି ଭଦ୍ରକ ପଳେଇବି।

ମାଧବ କ'ଣ ଗାଁ ଛାଡ଼ି ପଳେଇବୁ ? କାହିଁକି ? ଏଇ ଆମେ ଥଟ୍ଟା କରୁଛୁ ବୋଲି।

ବସନ୍ତ ନୁହେଁ ତ ଆଉ କ'ଣ ?

ମାଧବ ଭଦ୍ରକ କାହିଁକି ?

ବସନ୍ତ ଶୁଣିନୁ କି, ସେଠି ଜଣେ ବାବା ବାହାରିଛନ୍ତି। ଅଦ୍ଭୁତ ଅଦ୍ଭୁତ କାରନାମା କରି ଦେଖାଉଛନ୍ତି।

ମାଧବ ହଁ ହଁ ଶୁଣିଛି, କିନ୍ତୁ ବିଶ୍ୱାସ କରିନି।

ବସନ୍ତ ଆମେ କେତେଜଣ କିନ୍ନର ପରା ସେଇଠିକି ବାହାରିଛୁ।

ମାଧବ କ'ଣ ପାଇଁ ?

ବସନ୍ତ ବାବାଙ୍କୁ ଗୁହାରି ହେବୁ। ସେ ଆମକୁ ଏ କୂଳ ନ ହେଲେ ସେ କୂଳ ଗୋଟାଏ କୂଳରେ ଲଗେଇ ଦେବେ। ଆମେ ଏ ଜନ ଅପବାଦରୁ ମୁକ୍ତି ପାଇବୁ।

ମାଧବ ସତେ ନା କ'ଣ ? ଆଚ୍ଛା ଆଚ୍ଛା, ଏମିତି କଥା ତୁ କେମିତି ଜାଣିଲୁ ଯେ ବାବା ଝିଅଙ୍କୁ ପୁଅ ଆଉ ପୁଅଙ୍କୁ ଝିଅ କରିଦେଇ ପାରିବେ ବୋଲି ?

ବସନ୍ତ ସମସ୍ତେ କହୁଛନ୍ତି ବାବାଙ୍କ ହାତରୁ ଗୋଡ଼ରୁ ମହୁ, ବିଭୂତି ଝରୁଛି। ସେଇ ବିଭୂତିରୁ ସେ ଗୋଟିଏ ପୁଅକୁ ଜନ୍ମ କରିଛନ୍ତି। ଷଣ୍ଢକୁ ଦୁହିଁ କ୍ଷୀର ବାହାର କରୁଛନ୍ତି। ତାଙ୍କ ଆଶ୍ରମରେ ପଥରର ଗଣେଶ ଠାକୁର ମଧ୍ୟ କ୍ଷୀର ପିଉଛନ୍ତି। ସେ ଆଶୀର୍ବାଦ କଲେ ନ ହେବା କଥା ହେବ ଲୋ ମାଧିଆ।

ମାଧବ ତୋତେ ଏକଥା ଯିଏ ସବୁ କହିଛନ୍ତି, ସେମାନେ ନିଜ ଆଖିରେ ବାବାଙ୍କ କାରନାମା ଦେଖିଛନ୍ତି ନା କାହାଠୁ ଶୁଣିଛନ୍ତି କହିଲୁ ?

ବସନ୍ତ ସବୁଲୋକ କଥା ହେଉଛନ୍ତି ପରା, ସମସ୍ତେ କ'ଣ ମିଛୁଆ । ରାତି ପାହିଲେ ସେଠି ପରା ମେଳା ଲାଗୁଛି । ହଜାର ହଜାର, ଲକ୍ଷ ଲକ୍ଷ ଲୋକ ଆସୁଛନ୍ତି ?

ମାଧବ ଆରେ ଲୋକଙ୍କ କଥା କାହିଁକି କହୁଛୁ ? ସେମାନେ ପରା କୁଆ ଉଡ଼ିଗଲେ ଛୁଆ ଉଡ଼ିଗଲା ବୋଲି ପ୍ରଚାର କରିଦେବେ । ତିଳକୁ ତାଳ କରିବା ଏମାନଙ୍କର ସ୍ୱଭାବ । ତୁପରା ପାଠଶାଠ ଦିଅକ୍ଷର ପଢିଛୁ, ତୁ ବି ସେମାନଙ୍କ କଥାରେ ପଡ଼ି ବାଇଆ ହେଉଛୁ । ଆଗରୁ ବି ଏମିତି କେତେ ବାବାଙ୍କ କଥା ଟେଲିଭିଜନରୁ ଦେଖିଥିବୁ, ଖବରକାଗଜରୁ ପଢିଥିବୁ, ତଥାପି ବୁଝିପାରୁନୁ । ଏ ସବୁ କୁହୁକ ବିଦ୍ୟା କିମ୍ବା ଅନ୍ଧବିଶ୍ୱାସ ହୋଇଥାଇପାରେ । ବୁଝି ସାବ୍‌ଧାନ । ନ ହେଲେ ତୁ ସେଥିରେ ପଡ଼ି ଶେଷରେ ଏମିତି ହଟହଟା ହେବୁ ଯେ ଏ ଦୁଃଖ ଠୁଁ ସେ କଷ୍ଟ ବଳିପଡ଼ିବ ଜାଣିଥା । ମୋ କଥା ମାନ୍, ତୁ ବରଂ କଟକ ଯାଇ ଡ଼ାକ୍ତରଙ୍କ ପରାମର୍ଶ କର ।

ବସନ୍ତ ମାସେ ତଳେ କଟକ ଯାଇଥିଲି । ଡ଼ାକ୍ତର କହିଲେ ୪/୫ଥର ଅପରେସନ କରିବାକୁ ପଡ଼ିବ, ବହୁତ ପଇସା ଖର୍ଚ୍ଚ ହେବ । ମୋ ବାପା ମା' କହିଲେ ଆମେ ଖଟି ଖାଇବା ଲୋକ, ଏତେ ପଇସା ପାଇବୁ କେଉଁଠୁ ? ତୁ କହ ମୁଁ କ'ଣ କରିବି, କେମିତି ଏ ଗଞ୍ଜଣାରୁ ମୁକ୍ତି ପାଇବି ? ଠାକୁରଙ୍କ ଉପରେ ଭରସା କରି ଯାଉଛି, ଯଦି ବାବା କିଛି ଚମତ୍କାର କରିଦେଲେ, ତାହା ହେଲେ ବାକି ଜୀବନ ଖଟି ଖାଇ ଦିନ ବିତେଇ ଦେଇ ପାରିବି । ଏମିତି ଟ୍ରେନ୍‌ରେ ତାଳି ମାରି ଲୋକଙ୍କ ଟାହି ଟାପରା ସହି ଭିକ ମାଗି ବଞ୍ଚିବାକୁ ଆଉ ଭଲ ଲାଗୁନି ।

ମାଧବ କେମିତି ତୋତେ ବୁଝେଇବି ଜାଣିପାରୁନି । ଗୋଟିଏ ଗପ କହୁଛି ଶୁଣ । ବହୁ ଦିନ ତଳର କଥା । ସୁନ୍ଦର ଗଡ଼ ରାଜ୍ୟର ସୀମାରେ ଥିଲେ ପ୍ରଜ୍ଞାନାନନ୍ଦ ନାମକ ଜଣେ ଋଷି । ସେ ବହୁ ବିଦ୍ୟାର ଅଧିକାରୀ ଥିଲେ । ଆଖପାଖ ରାଜ୍ୟରୁ ଶିକ୍ଷାଲାଭ ଆଶାରେ ଅନେକ ବାଳୁତ ସେଠାକୁ ଆସୁଥିଲେ ଆଉ ଋଷି ଜଣକ ଯୋଗ୍ୟତା ଅନୁସାରେ ସମସ୍ତଙ୍କୁ ବେଦ, ବେଦାନ୍ତ, ନୀତିଶାସ୍ତ୍ର, ଅର୍ଥଶାସ୍ତ୍ର, ଅସ୍ତ୍ରବିଦ୍ୟା ଶିକ୍ଷା ଦେଇ ପ୍ରାପ୍ତ ବୟସ୍କ ହେଲେ ବ୍ରହ୍ମଚର୍ଯ୍ୟ ତ୍ୟାଗ କରି ଗୃହସ୍ଥାଶ୍ରମ ବ୍ରତ ପାଳନ କରିବା ପାଇଁ ସଂସାରକୁ ଫେରାଇ ଦେଉଥିଲେ ।

*ଦୃଶ୍ୟାନ୍ତର...*

**(ଆଶ୍ରମର ଦୃଶ୍ୟ । ଦେଖାଗଲା ଛାତ୍ରମାନେ ସୂର୍ଯ୍ୟ ନମସ୍କାର ଓ ଯୋଗାସନରେ ବ୍ୟସ୍ତ) (ତା ପରେ ଅସ୍ତ୍ରବିଦ୍ୟା ଶିକ୍ଷା, ଧନୁର୍ଚ୍ଚାଳନା ଓ ଧ୍ୟାନ, ତାପରେ ଶଙ୍ଖନାଦ)**

ଗୁରୁଦେବ ଏଇଠି ପ୍ରାତଃ ଅଭ୍ୟାସର ପରିସମାପ୍ତି । ଆର୍ଯ୍ୟମାତା ପୁତ୍ରମାନଙ୍କର ପ୍ରାତଃ ଭୋଜନର ବ୍ୟବସ୍ଥା କରନ୍ତୁ ।

ମାତା ଆସ ଭୋଜନ ପ୍ରସ୍ତୁତ... (ସମସ୍ତେ ଆସିଲେ ଓ ଭୋଜନ ମନ୍ତ୍ର ପାଠ କଲେ) ଓଁ ସହନା ଭବତୁ ସହନୌ ଭୁନକ୍ତୁ, ସହବିର୍ଯ୍ୟାଂ କରବା ବହୈ, ତେଜୋସ୍ୱୀନା ବଧିତବସ୍ତୁ, ମାଂ ବିଦ୍ୱେଷାମ୍ ବହୈ । ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ.. (ଭୋଜନ ପରେ) ମହାଭାଗ, ଆଶ୍ରମରେ ଅନ୍ନଦାନା ସମାପ୍ତ ହେବାକୁ ଯାଉଛି, ତେଣୁ... ।

| | |
|---|---|
| ଗୁରୁଦେବ | ଭିକ୍ଷାନ୍ନ ସଂଗ୍ରହ କରିବାକୁ ପଡ଼ିବ। ବତ୍ସଗଣ ତୁମ୍ଭମାନଙ୍କ ମଧ୍ୟରୁ କେବଳ ଚରିଜଣଙ୍କର ବ୍ରହ୍ମଚର୍ଯ୍ୟ ବ୍ରତ ଉଦ୍‌ଯାପନ ହେବାକୁ ଯାଉଛି। ଆଉ କିଛିଦିନ ପରେ ସେମାନେ ଆଶ୍ରମ ତ୍ୟାଗ କରି ସ୍ୱଗୃହକୁ ପ୍ରସ୍ଥାନ କରି ଗାର୍ହସ୍ଥ୍ୟ ଜୀବନ ଯାପନ କରିବେ। ଅତଏବ ଆଶ୍ରମର ପ୍ରଥା ଏବଂ ନିୟମ ଅନୁସାରେ ସେମାନଙ୍କୁ ବିଭିନ୍ନ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିବ। ଅତଏବ ପ୍ରଥମ ପରୀକ୍ଷାର ସମୟ ଉପସ୍ଥିତ। ଆନନ୍ଦ, ସଦାନନ୍ଦ, ପ୍ରେମାନନ୍ଦ ଓ ସେବାନନ୍ଦ ତୁମ୍ଭେ ପରୀକ୍ଷା ପାଇଁ ପ୍ରସ୍ତୁତ ହୁଅ। |
| ୪ଜଣ | ଆମ୍ଭେ ପ୍ରସ୍ତୁତ ଅଛୁ ଗୁରୁଦେବ, ଆଦେଶ କରନ୍ତୁ। |
| ଗୁରୁଦେବ | ତୁମ୍ଭେମାନେ ଭିକ୍ଷା ପାତ୍ର ଧରି ଆଶ୍ରମର ଚରିଦିଗକୁ ଯାଅ, ଭିକ୍ଷା ସଂଗ୍ରହ କରି ସନ୍ଧ୍ୟା ପୂର୍ବରୁ ଆଶ୍ରମକୁ ଫେରିଆସିବ। |
| ୪ଜଣ | ଯଥା ଆଜ୍ଞା ଗୁରୁଦେବ। |
| ଗୁରୁଦେବ | ତେବେ ମନେ ରଖ, ତୁମ୍ଭେ ପ୍ରତ୍ୟେକ କେବଳ ୩ଜଣ ବ୍ୟକ୍ତିଙ୍କ ଠାରୁ ହିଁ ଭିକ୍ଷା ଗ୍ରହଣ କରିବ। |
| ଆନନ୍ଦ | ଯଦି ସେମାନେ ଭିକ୍ଷାଦାନରେ କୁଣ୍ଠିତ ହୁଅନ୍ତି ? |
| ଗୁରୁଦେବ | ତାହେଲେ ତୁମ୍ଭକୁ ଖାଲି ହାତରେ ଫେରି ଆସିବାକୁ ପଡ଼ିବ। |
| ସଦାନନ୍ଦ | ଯଦି କିଞ୍ଚିତ୍ ଦାନ କରନ୍ତି। |
| ଗୁରୁଦବେ | ବିନା ଦ୍ୱିଧାରେ ଅକୁଣ୍ଠିତ ଚିତ୍ତରେ ତାହା ଗ୍ରହଣ କରିବ। କୌଣସି ପରିସ୍ଥିତିରେ ମଧ୍ୟ ଦାତାଙ୍କର ଅସମ୍ମାନ ଯେପରି ନ ହୁଏ, ସେଥିପ୍ରତି ସାବଧାନ ରହିବ। |
| ପ୍ରେମାନନ୍ଦ | କେହି ଆମ୍ଭଙ୍କୁ ତିରସ୍କାର କଲେ ? |
| ଗୁରୁଦେବ | ସହାସ୍ୟ ବଦନରେ ତାଙ୍କୁ ଆଶୀର୍ବାଦ କରି ଫେରିଆସିବ ଏବଂ ମନେ ରଖ କୌଣସି କ୍ଷେତ୍ରରେ ୪ର୍ଥ ବ୍ୟକ୍ତିଙ୍କ ଠାରୁ ଭିକ୍ଷା ଗ୍ରହଣ ନିଷିଦ୍ଧ। ଏହା ଅଧର୍ମ ବୋଲି ମନେ କରିବ। ଏହା ମୋର ଆଦେଶ। ଆଉ କିଛି ପଚରିବାକୁ ଚହଁ ? |
| ସମସ୍ତେ | ନାଁ ଗୁରୁଦେବ। |
| ଗୁରୁଦେବ | (୪ର୍ଥ ଜଣଙ୍କୁ) ଆଉ ତୁମ୍ଭେ ? |
| ସେବାନନ୍ଦ | ଗୁରୁଦେବଙ୍କ ଆଦେଶ ଶିରୋଧାର୍ଯ୍ୟ। ଏହା ଉପରେ କୌଣସି ପ୍ରଶ୍ନ କରିବାର ଅଧିକାର ମୋର ନାହିଁ। ଗୁରୁବ୍ରହ୍ମା, ଗୁରୁବିଷ୍ଣୁ, ଗୁରୁଦେବ ମହେଶ୍ୱର, ଗୁରୁସାକ୍ଷାତ୍ ପରଂବ୍ରହ୍ମ ତସ୍ମୈଶ୍ରୀ ଗୁରୁବେ ନମଃ। (ମାତା ଭିକ୍ଷା ଝୁଲି ଦେଲେ)। |
| ମାତା | ଶୁଭମ ଅସ୍ତୁ। ମନେରଖ ପୁତ୍ର ସମସ୍ତ କାର୍ଯ୍ୟ ସର୍ବଦା ଈଶ୍ୱରମୁଖୀ ହୋଇ ନିର୍ବାହ କରିବ। ସମସ୍ତ ଭିକ୍ଷା ଈଶ୍ୱରଙ୍କର ଆଶୀର୍ବାଦ ଭାବି ଗ୍ରଣ କରିବ। ଆଉ ଏକଥା ମଧ୍ୟ ସ୍ମରଣ ରଖିବ ଯେ ପ୍ରତ୍ୟେକ ଦାତା ସ୍ୱୟଂ ଈଶ୍ୱର ସଦୃଶ। |
| ସମସ୍ତେ | ଆପଣଙ୍କ ଆଶୀର୍ବାଦ ଶିରୋଧାର୍ଯ୍ୟ। |
| ମାତା | ବିଜୟୀ ଭବଃ.... |
| ଗୁରୁଦେବ | ଶୁଣ ବତ୍ସ, ମୋର ଆଉ ଏକ ନିର୍ଦ୍ଦେଶ। ୧ମ ବ୍ୟକ୍ତିଙ୍କର ଭିକ୍ଷା ଗୁରୁଦେବଙ୍କ ପାଇଁ, ୨ୟ ବ୍ୟକ୍ତିଙ୍କ ଭିକ୍ଷା ଆଶ୍ରମ ଉଦ୍ଦେଶ୍ୟରେ ଏବଂ ୩ୟ ଭିକ୍ଷା ନିଜ ଉଦ୍ଦେଶ୍ୟରେ ଗ୍ରହଣ କରିବ। |
| ସମସ୍ତେ | ଯଥା ଆଜ୍ଞା ଗୁରୁଦେବ। (ପ୍ରସ୍ଥାନ) |
| ମାତା | ଗୁରୁଦେବ, ଶିଷ୍ୟମାନଙ୍କୁ ଭିକ୍ଷାବୃତ୍ତିରେ ନିଯୁକ୍ତି କରିବା ଶୋଭନୀୟ ବୋଧ ହେଉନାହିଁ। |

| | |
|---|---|
| ଗୁରୁଦେବ | ଏହା ଆଶ୍ରମର ପ୍ରଥା ଓ ପରୀକ୍ଷାର ନିୟମ। ଆପଣ ଏହାକୁ ବୃତ୍ତି ବୋଲି କାହିଁକି ଭାବୁଛନ୍ତି ବରଂ ଏହା ନିବୃତ୍ତି। ସେମାନଙ୍କ ମନରେ ଥିବା ଅହଙ୍କାର, କ୍ରୋଧ ଆଦିର ନିବୃତ୍ତି ହୋଇ ତାଙ୍କର ସହନଶୀଳତା, ଧୈର୍ଯ୍ୟ ଓ ବ୍ୟକ୍ତିତ୍ୱର ପରିପ୍ରକାଶ ହେବ। ଏହାର ଉଦ୍ଦେଶ୍ୟ ମହତ୍। ଏହା ଏକ ସାମୟିକ ପରୀକ୍ଷା, ଦୈନନ୍ଦିନ ବୃତ୍ତି ନୁହେଁ। |
| ମାତା | ଉଚିତ୍ କହି ଅଛନ୍ତି ଗୁରୁଦେବ। ତଥାପି ସେମାନଙ୍କ ପାଇଁ ମୋ ମନରେ ବ୍ୟାକୁଳତା ବଢୁଛି। ଗ୍ରାମ ଗ୍ରାମ ବୁଲି ଭିକ୍ଷା କରିବାର କ୍ଳେଶ ମୋତେ ଦୁଃଖିତ କରୁଛି। |
| ଗୁରୁଦେବ | କେବଳ କ୍ଳେଶ ନୁହେଁ ମାତା। ସାଧାରଣ ଜନଜୀବନର ଅନୁଭୂତି, ଉପଲବ୍ଧି ସବୁ ଭବିଷ୍ୟତ ପାଇଁ ତାଙ୍କର ମୋହ ଭଙ୍ଗ କରି ସମାଜର ବାସ୍ତବ ଜୀବନ ଚିତ୍ର ତାଙ୍କ ସମ୍ମୁଖରେ ଉନ୍ମୋଚିତ କରିବ। ଆପଣ ନିଶ୍ଚିତ ରୁହନ୍ତୁ, ଈଶ୍ୱରଙ୍କ କୃପାରୁ ସେମାନେ ଏ ପରୀକ୍ଷାରେ ଅବଶ୍ୟ କୃତକାର୍ଯ୍ୟ ହୋଇ ଫେରିବେ। |
| ମାତା | କ୍ଷମା କରିବେ ଗୁରୁଦେବ। ମୁଁ ଏହା ବୁଝିପାରିଲି ନାହିଁ ଯେ ଆପଣ କାହିଁକି ସେମାନଙ୍କୁ ମାତ୍ର ୩ଜଣଙ୍କ ଠାରୁ ଭିକ୍ଷା ଗ୍ରହଣ କରିବାକୁ କହିଲେ। ସେଥିରେ କ'ଣ ଯଥେଷ୍ଟ ଭିକ୍ଷାନ୍ନ ସଂଗୃହୀତ ହେବ। |
| ଗୁରୁଦେବ | ଭିକ୍ଷା ସଂଗ୍ରହ କରିବା ଆମର ଉଦ୍ଦେଶ୍ୟ ନୁହେଁ। ଏହା ଏକ ପ୍ରତୀକ ମାତ୍ର। ଏହା ମାଧ୍ୟମରେ ସେମାନଙ୍କ ମୁଁ-ତ୍ୱର ବିନାଶ ହିଁ ଏହି ପରୀକ୍ଷାର ଅସଲ ଉଦ୍ଦେଶ୍ୟ। ବାକି କଥା ସେମାନେ ପ୍ରତ୍ୟାବର୍ତ୍ତନ କଲେ ଆପଣ ସ୍ୱୟଂ ଉପଲବ୍ଧି କରିପାରିବେ। |
| | (ବାହାରୁ ଅନ୍ୟ ଜଣେ ଶିଷ୍ୟର ପ୍ରବେଶ) |
| ଶିଷ୍ୟ-୧ | ଗୁରୁଦେବ ! ମହାରାଜ ସଦଳବଳେ ଆଶ୍ରମକୁ ଆସୁଛନ୍ତି। |
| ଗୁରୁଦେବ | ମାତା ! ଅତିଥି ସତ୍କାରର ଆୟୋଜନ କର... |
| ମାତା | (ଶଙ୍ଖନାଦ କରି ହୁଳହୁଳି ଦେଲେ) |
| ଗୁରୁଦେବ | ସ୍ୱାଗତମ୍ ସ୍ୱାଗତମ୍ |
| ଶିଷ୍ୟମାନେ | ସ୍ୱାଗତମ୍ ମହାରାଜଙ୍କର ଜୟ ହେଉ... |
| ମହାରାଜ | (ପ୍ରଣାମ କରି) ଗୁରୁଦେବଙ୍କର ଜୟ ହେଉ। |
| ମନ୍ତ୍ରୀ | ଗୁରୁଦେବଙ୍କର ପାଦ ବନ୍ଦନା କରୁଛି। |
| ସେନାପତି | ଗୁରୁଦେବଙ୍କୁ ପ୍ରଣାମ ଜଣାଉଛି। |
| ଗୁରୁଦେବ | ସମସ୍ତଙ୍କର ସର୍ବାରିଷ୍ଟ ଶାନ୍ତି ଭବ। ଏଥର ଉପବେଶନ କରନ୍ତୁ ଏବଂ ଆଗମନର ଉଦ୍ଦେଶ୍ୟ ବ୍ୟକ୍ତ କରନ୍ତୁ। |
| ମହାରାଜ | ଆଶ୍ରମ ନିମନ୍ତେ ଖାଦ୍ୟାନ୍ନ ଘେନି ଆସିଛୁ ଗୁରୁଦେବ। |
| ମନ୍ତ୍ରୀ | ଗ୍ରହଣ କଲେ ଧନ୍ୟ ହେବୁ। |
| ସେନାପତି | ଏହା ବ୍ୟତୀତ ଆଶ୍ରମର ଶାନ୍ତି ଶୃଙ୍ଖଳା, ପାରିପାର୍ଶ୍ୱିକ ଅବସ୍ଥାର ନିରୀକ୍ଷଣ କରିବା ମଧ ମହାରାଜଙ୍କର ଉଦ୍ଦେଶ୍ୟ। |
| ଗୁରୁଦେବ | ସାଧୁ ସାଧୁ। ତେବେ ଏ କାର୍ଯ୍ୟ ତ ଅନ୍ୟ କେହି ସେବକଙ୍କ ଦ୍ୱାରା ମଧ କରାଯାଇ ପାରିଥାନ୍ତା। |

ମନ୍ତ୍ରୀ ଗୁରୁଦେବ ଆପଣ ତ ସର୍ବଜ୍ଞ, ତ୍ରିକାଳଦର୍ଶୀ। ଆପଣଙ୍କୁ ଲୁଚାଇବା ଅର୍ଥ ନିଜକୁ ଲୁଚାଇବା ଭଳି କଥା ହେବ। ଅସଲ ଉଦ୍ଦେଶ୍ୟ ହେଲା କଦଳୀ ବିକ୍ରି କରିବା ଏବଂ ଯାତ୍ରା ଦେଖିବା ଦୁଇଟି ଉଦ୍ଦେଶ୍ୟ ଏକା ସାଙ୍ଗରେ ପୂରଣ ହେବ। ସେଥିପାଇଁ ଆମର ଏ ପ୍ରଚେଷ୍ଟା।

ମହାରାଜ ଆପଣଙ୍କ ଅନୁମତି ହେଲେ ଆମ୍ଭେ ଆମ୍ଭର ପୁତ୍ରମାନଙ୍କୁ ଦର୍ଶନ କରିଥାନ୍ତୁ।

ଗୁରୁଦେବ ମହାରାଜ ଆପଣ ନିଶ୍ଚୟ ଅବଗତ ଥିବେ ଯେ ଆଉ କିଛି ଦିନ ଅନ୍ତେ ପୁତ୍ରମାନଙ୍କର ବ୍ରହ୍ମଚର୍ଯ୍ୟ ବ୍ରତ ଉଦ୍‌ଯାପନ ହେବ। ତା ପ'ରେ ସେମାନେ ଗାର୍ହସ୍ଥ୍ୟ ଜୀବନ ଯାପନ ପାଇଁ ସ୍ୱଗୃହକୁ ଅବଶ୍ୟ ପ୍ରସ୍ଥାନ କରିବେ। ଏବେ ସେମାନଙ୍କର ଶିକ୍ଷାର ଅନ୍ତିମ ପର୍ଯ୍ୟାୟ। ଅତଏବ ତାଙ୍କର ପରୀକ୍ଷା ଆରମ୍ଭ କରାଯାଇଛି। ସେହି କ୍ରମରେ ଆଜି ପ୍ରଥମ ପରୀକ୍ଷା ସଦୃଶ ସେମାନେ ଭିକ୍ଷାପାତ୍ର ଧାରଣ କରି ବିଭିନ୍ନ ଜନପଦକୁ ଗମନ କରିଅଛନ୍ତି। ତେବେ ସନ୍ଧ୍ୟା ପୂର୍ବରୁ ସେମାନଙ୍କୁ ଅବଶ୍ୟ ଫେରିବାକୁ ନିର୍ଦ୍ଦେଶ ମଧ୍ୟ ଦିଆଯାଇଛି।

ମହାମନ୍ତ୍ରୀ କ୍ଷମା କରିବେ ଗୁରୁଦେବ। ଏହି ପରୀକ୍ଷାର ଉଦ୍ଦେଶ୍ୟ ଅବଗତ ହୋଇପାରିଲି ନାହିଁ।

ଗୁରୁଦେବ ଏହା ଗୁରୁଙ୍କର ଅଧିକାରର ପରିଧି। ଏହା ମଧ୍ୟକୁ ରାଜ ଅଧିକାରର ପ୍ରବେଶର ଅର୍ଥ ଅନଧିକାର ଚର୍ଚ୍ଚା ବୋଲି ମୁଁ ଗ୍ରହଣ କରିବି। ଆପଣ ଯେଉଁ ପୁତ୍ରମାନଙ୍କ କଥା କହୁଛନ୍ତି ସେମାନେ ଆପଣଙ୍କର ପୁତ୍ର ହୋଇପାରନ୍ତି ମାତ୍ର ଏ ରାଜ୍ୟର ଉତ୍ତରାଧିକାରୀ। ଏଣୁ ଏଠାରେ ମୁଁ ରାଜପୁତ୍ର କିମ୍ବା କୃଷକର ପୁତ୍ର ଭାବି କାହାକୁ ଶିକ୍ଷାଦାନ କରିନଥାଏ। ସେମାନେ ସମସ୍ତେ କିପରି ରାଜ୍ୟର ସୁନାଗରିକ ଏବଂ ଉଚିତ୍ ଉତ୍ତରାଧିକାରୀ ହୋଇପାରିବେ ସେହି ଉଦ୍ଦେଶ୍ୟରେ ସେମାନଙ୍କୁ ମୁଁ ଶିକ୍ଷା ପ୍ରଦାନ କରିଥାଏ। କାରଣ ସୁଶିକ୍ଷା ମଣିଷକୁ ବିଜ୍ଞ, ଚିନ୍ତନଶୀଳ ଏବଂ ସଦ୍‌ମାନବ କରି ଗଢି ତୋଳିବାରେ ସାହାଯ୍ୟ କରେ। ସେ ରାଜପୁତ୍ର ହୁଅନ୍ତୁ ବା କୃଷକର ପୁତ୍ର। କାରଣ ସ୍ୱଦେଶେ ପୂଜ୍ୟତେ ରାଜା, ବିଦ୍ୱାନ ସର୍ବତ୍ର ପୂଜ୍ୟତେ।

ସମସ୍ତେ କ୍ଷମା କରିବେ ଗୁରୁଦେବ।

ଗୁରୁଦେବ ସର୍ବେ ସୁଖିନଃ ଭବ।

ସେନାପତି ତା'ହେଲେ ଏବେ କ'ଣ ପ୍ରସ୍ଥାନ କରିବା ମହାରାଜ।

ମହାରାଜ ଗୁରୁଦେବଙ୍କର ଅନୁମତି ମିଳିଲେ ଆମ୍ଭେ ପ୍ରସ୍ଥାନ କରିବୁ।

ଗୁରୁଦେବ ମହାରାଜ ଚିନ୍ତାର କିଛି କାରଣ ନାହିଁ। ଆପଣ ଯାଇ ପାରିବାରବର୍ଗଙ୍କୁ ଆଶ୍ୱସ୍ତ କରାନ୍ତୁ।

ମହାରାଜ ଆଜକୁ ଦୀର୍ଘ ବର୍ଷ ଧରି ମାତାମାନେ ସେମାନଙ୍କର ପୁତ୍ରମାନଙ୍କର ମୁଖ ଦର୍ଶନ କରିପାରି ନାହାଁନ୍ତି। ପ୍ରତିବର୍ଷ ଆମ୍ଭେମାନେ ନାନା କାର୍ଯ୍ୟର ବାହାନା କରି ପୁତ୍ରମାନଙ୍କୁ ଦର୍ଶନ ନିମନ୍ତେ ଆପଣଙ୍କ ଆଶ୍ରମରେ ଉପସ୍ଥିତି ମଧ୍ୟ ହେଉ। କିନ୍ତୁ...

ଗୁରୁଦେବ ନୀରବ ରହିଲେ କାହିଁକି ?

ମହାମନ୍ତ୍ରୀ ଆପଣ କିଛି ନା କିଛି ଛଳନା କରି ଆମ୍ଭକୁ ପୁତ୍ର ଦର୍ଶନରୁ ବଞ୍ଚିତ କରିଥାନ୍ତି। ଆମ୍ଭେ ନିରାଶ ହୋଇ ଫେରିଯାଉ। କିନ୍ତୁ ଗୁରୁଦେବ କାହିଁକି ?

ଗୁରୁଦେବ ଆପଣଙ୍କର ବ୍ୟସ୍ତତା ସ୍ୱାଭାବିକ ମାତ୍ର ଏଠାରେ ଶିକ୍ଷାଧାରୀମାନେ ବ୍ରତଧାରଣ କରି ସେମାନଙ୍କର ଶିକ୍ଷାଗ୍ରହଣ କରିଥାନ୍ତି। ତେଣୁ ଏଠାରେ ରାଜପୁତ୍ର ଓ ସାଧାରଣ ନାଗରିକ ପୁତ୍ରମାନଙ୍କ ମଧ୍ୟରେ ମାନସିକ ବିଭେଦ ସୃଷ୍ଟି ହେଉ ଏହା ମୁଁ ଚାହେଁନା। କାରଣ ଏପରି ଘଟିଲେ ସେମାନଙ୍କ ମଧ୍ୟରେ

ଥିବା ଅନାବିଳ ଭାତୃତ୍ୱ, ବନ୍ଧୁତ୍ୱ ଏବଂ ପରସ୍ପରର ପ୍ରେମଭାବରେ ବିଘ୍ନ ଘଟିବ ଏବଂ ଶିକ୍ଷା ବାଧାପ୍ରାପ୍ତ ହେବ। ଏଣୁ ତାଙ୍କର ପିତୃଦତ୍ତ ନାମକୁ ମଧ୍ୟ ମୁଁ ପରିବର୍ତ୍ତନ କରିଦେଇଥାଏ। ଯେପରି ଏବେ ଆପଣମାନଙ୍କର ପୁତ୍ରମାନଙ୍କ ନାମ ମଧ୍ୟ ପରିବର୍ତ୍ତନ କରାଯାଇଛି। ଯାହାକୁ ଶୁଣିଲେ ଆପଣ ମଧ୍ୟ ଆପଣଙ୍କ ପୁତ୍ରକୁ ଚିହ୍ନିବା ସମ୍ଭବପର ନୁହେଁ। ଯେମିତି ଆନନ୍ଦ, ସଦାନନ୍ଦ, ପ୍ରେମାନନ୍ଦ ଓ ସେବାନନ୍ଦ। ଏଥର କୁହନ୍ତୁ, ଏମାନଙ୍କ ମଧ୍ୟରୁ କିଏ କାହାର ପୁତ୍ର ବୋଲି ଆପଣମାନେ ଭାବୁଛନ୍ତି ?

ମନ୍ତ୍ରୀ — ଆଶ୍ଚର୍ଯ୍ୟ !

ମହାରାଜ — ଯଥା ଆପଣଙ୍କ ଇଚ୍ଛା। ଆମେ ଆପଣଙ୍କ କାର୍ଯ୍ୟ ଓ ନିୟମ ଶୃଙ୍ଖଳାରେ ବିଘ୍ନ ଘଟାଇବାକୁ ଚାହୁଁନା... ତଥାପି ସେମାନଙ୍କ ଶିକ୍ଷାର ପରିସମାପ୍ତି ହେଲେ ଆମ୍ଭଙ୍କୁ ସମାଚାର ଅବଶ୍ୟ ପ୍ରଦାନ କରିବେ।

ଗୁରୁଦେବ — ସେମାନଙ୍କର ଶିକ୍ଷାନ୍ତ ଉତ୍ସବରେ ଆପଣମାନେ ଅବଶ୍ୟ ଉପସ୍ଥିତ ରହିବେ।

ମହାରାଜ — ଶିକ୍ଷାନ୍ତ ଉତ୍ସବର ନିର୍ଘଣ୍ଟ ପ୍ରସ୍ତୁତ କଲେଣି କି ଗୁରୁଦେବ।

ଗୁରୁଦେବ — ଆସନ୍ତା ପୂର୍ଣ୍ଣମୀ ତିଥିରେ ହିଁ ଦୀକ୍ଷାନ୍ତ ଉତ୍ସବ ଆୟୋଜିତ ହେବ।

ସେନାପତି — ତା ପୂର୍ବରୁ ଆଶ୍ରମର ସୁରକ୍ଷା ଏବଂ ସାଜସଜ୍ଜାର ଦାୟିତ୍ୱ ଆମ୍ଭକୁ ବହନ କରିବାର ଆଦେଶ ହେଉ ଗୁରୁଦେବ।

ଗୁରୁଦେବ — ଉତ୍ସବ ଏକାନ୍ତ ନିରାଡ଼ମ୍ବର ଏବଂ ଆତ୍ମିକ ହେବ। ଏଣୁ ଏଠାରେ କେବଳ ଛାତ୍ରମାନଙ୍କ ପରିଜନ ହିଁ ଉପସ୍ଥିତ ରହିବେ। ଅତଏବ ସେଠାରେ ରାଜା, ମନ୍ତ୍ରୀ କିମ୍ବା ସେନାପତିଙ୍କର ଆବଶ୍ୟକତା ରହିଲା କେଉଁଠି ?

ମହାରାଜ — ବୁଝିଲେ ତ ମହାମନ୍ତ୍ରୀ, ସେନାପତି ଆମ ଗୁରୁଦେବଙ୍କ ନିକଟରେ ଆମ୍ଭର ସମସ୍ତ ବୁଦ୍ଧି ପରାସ୍ତ ହେବାକୁ ବାଧ୍ୟ। ଅତଏବ ଆମକୁ ସେଥିରେ ସାଧାରଣ ପ୍ରଜା ଭଳି ସାଧାରଣ ବେଶରେ ଉପସ୍ଥିତ ହେବାକୁ ପଡ଼ିବ।

ଗୁରୁଦେବ — ମହାରାଜ ଏ କଥା ସତ୍ୟ ଯେ, ରାଜାନୁଗ୍ରହ ବ୍ୟତିରେକେ ଏଭଳି ଏକ ଶିକ୍ଷାଶ୍ରମ ସଞ୍ଚାଳନ କରିବା ମୋ ପକ୍ଷେ ଆଦୌ ସମ୍ଭବ ନୁହେଁ। ଆପଣମାନଙ୍କର ସୁଦୃଷ୍ଟି ଅଛି ବୋଲି ତ ଶିକ୍ଷାଦାନ ସୁରୁଖୁରୁରେ ପରିଚାଳିତ ହୋଇପାରୁଛି। ଯେଉଁଦିନ ଆପଣମାନେ ମୋ ଉପରେ ରୁଷ୍ଟ ହୋଇଯିବେ ସେଦିନ ଏ ଅନୁଷ୍ଠାନ ଧ୍ୱଂସ ହେବାକୁ ବେଶୀ ବିଳମ୍ବ ଘଟିବ ନାହିଁ।

ମହାମନ୍ତ୍ରୀ — ଅନୁଷ୍ଠାନ ଗଢ଼ିବା ହୁଏତ ଆମ୍ଭ ପାଇଁ ସହଜ। ମାତ୍ର ତାକୁ ଦୀର୍ଘ ଦିନ ସୁଚାରୁ ରୂପେ ସଞ୍ଚାଳନା କରିବା ଅତ୍ୟନ୍ତ ଧୈର୍ଯ୍ୟପୂର୍ଣ୍ଣ କାର୍ଯ୍ୟ। ଆପଣ ସଦୟ ହୋଇ ଶିକ୍ଷାଦାନ ଯଜ୍ଞ ତୁଲାଉଛନ୍ତି। ତେଣୁ ଆମ୍ଭେ ଆପଣଙ୍କ ନିକଟରେ ଚିର ଋଣୀ।

ମହାରାଜ — ଉଚିତ୍ କହିଛନ୍ତି ମହାମନ୍ତ୍ରୀ। ଏ ରାଜ୍ୟରେ ରାଜପୁତ୍ର ଜଣେ। ମାତ୍ର ନାଗରିକ ମାନଙ୍କର ପୁତ୍ର ଅନେକ, ଆପଣ ସମସ୍ତଙ୍କୁ ଅକୁଣ୍ଠ ଚିତ୍ତରେ ଯେଉଁଭଳି ଭାବରେ ନିସ୍ୱାର୍ଥ ଶିକ୍ଷାଦାନ କରିଛନ୍ତି ତାହା ଆମ୍ଭ ରାଜ୍ୟ ପାଇଁ ଅତୀବ ଗୌରବର କଥା।

ଗୁରୁଦେବ — ଏହା ମୋର କର୍ତ୍ତବ୍ୟ। ଶିକ୍ଷାଦାନ ମହାପୂଣ୍ୟ ଭାବି ଶିକ୍ଷାଦାନ ଯଜ୍ଞ ପରିଚାଳନା କରୁଛି ମାତ୍ର।

ମହାରାଜ — ଆପଣଙ୍କୁ କୋଟି କୋଟି ପ୍ରଣାମ ଜଣାଇ ଆମ୍ଭେ ଏବେ ପ୍ରସ୍ଥାନ କରୁଛୁ ଗୁରୁଦେବ।

ମାତା — ମଧ୍ୟାହ୍ନ ଭୋଜନର ସମୟ ଉପସ୍ଥିତ। ଅତଏବ ଆପଣ ଜଳଗ୍ରହଣ ନ କରି ଫେରିଯିବା ଉଚିତ୍ ହେବ ନାହିଁ।

| | |
|---|---|
| ମହାମନ୍ତ୍ରୀ | ମହାରାଜାଙ୍କ ପାଇଁ ସମୟ ଖୁବ୍ ମୂଲ୍ୟବାନ୍ ମାତା। ଆମ୍ଭେ ବରଂ ରାଜନଅରରେ ଯାଇ ମଧ୍ୟାହ୍ନ ଭୋଜନ କରିବୁ। |
| ମହାରାଜ | ଉଚିତ୍ କହିଛନ୍ତି ମହାମନ୍ତ୍ରୀ। ଆମ୍ଭଙ୍କୁ ବିଦାୟ ଦଅନ୍ତୁ ମାତା, ପ୍ରଣାମ ଗୁରୁଦେବ, ପ୍ରଣାମ ମାତା। |
| ମାତା | ଯଶସ୍ୱୀଭବ। |
| ଗୁରୁଦେବ | ସର୍ବାରିଷ୍ଟ ଶାନ୍ତିଭବ। (ସମସ୍ତେ ପ୍ରସ୍ଥାନ) |
| ମାତା | ଗୁରୁଦେବ ମଧ୍ୟାହ୍ନ ଭୋଜନ ପାଇଁ ନିବେଦନ କରୁଛି। |
| ଗୁରୁଦେବ | ମାତା ! ଆପଣମାନେ ଭୋଜନ ସାରି ବିଶ୍ରାମ କରନ୍ତୁ। ମୁଁ ଶିଷ୍ୟମାନଙ୍କର ପ୍ରତ୍ୟାଗମନ ପାଇଁ ପ୍ରତୀକ୍ଷା କରିଛି। (କିଛି ସମୟ ପରେ) ଆପଣ ଅପେକ୍ଷା କଲେ କାହିଁକି ? |
| ମାତା | ମୁଁ ଏ ଆଶ୍ରମର ମାଆ। ସମସ୍ତଙ୍କୁ ଭୋଜନ କରାଇସାରି ତୃପ୍ତ କରିସାରିଲା ପରେ ଭୋଜନ କରିବା ମୋର୍ କର୍ତ୍ତବ୍ୟ। ଯେପର୍ଯ୍ୟନ୍ତ ଆପଣମାନେ ଭୋଜନ କରି ନାହାଁନ୍ତି ସେ ପର୍ଯ୍ୟନ୍ତ ଉପବାସ ରହିବାରେ ମୋର ମଧ ଅଭ୍ୟାସ ଅଛି। |
| ଗୁରୁଦେବ | ଯାହା ଆପଣଙ୍କ ଇଚ୍ଛା (ପ୍ରବେଶ କଲେ ୪ଜଣ ଶିଷ୍ୟ) |
| ସମସ୍ତେ | ଗୁରୁଦେବଙ୍କର ଜୟ ହେଉ, ମାତାଙ୍କର ଜୟ ହେଉ। |
| ଗୁରୁଦେବ | କ'ଣ ଭିକ୍ଷା ଆଣିଛ ବତ୍ସ ? |
| ଆନନ୍ଦ | ଏଇ ସ୍ୱର୍ଣ୍ଣମୁଦ୍ରାର ଥଳି। |
| ଗୁରୁଦେବ | ଏହା କ'ଣ ପ୍ରଥମ ବ୍ୟକ୍ତିର ଭିକ୍ଷା ? |
| ଆନନ୍ଦ | ନା। |
| ଗୁରୁଦେବ | ତା ହେଲେ ଏହା ମୋର ତ ପ୍ରାପ୍ୟ ନୁହେଁ। ମୋର ଭିକ୍ଷା କାହିଁ ? ଅର୍ଥାତ୍ ପ୍ରଥମ ବ୍ୟକ୍ତିର ଭିକ୍ଷା ? |
| ଆନନ୍ଦ | କ୍ଷମା କରିବେ ଗୁରୁଦେବ ପ୍ରଥମ ବ୍ୟକ୍ତି କେବଳ ଭସନା କଲେ ? |
| ଗୁରୁଦେବ | ତାହା ହିଁ ମୋର ପ୍ରାପ୍ୟ। କୁହ ସେ କ'ଣ କହିଲେ ? |
| ଆନନ୍ଦ | ତାହା ଅତ୍ୟନ୍ତ ଦୁଃଖଦାୟକ। |
| ଗୁରୁଦେବ | ତଥାପି ନିର୍ଭୟରେ କୁହ। ଗୀତାରେ ପରା ସ୍ୱୟଂ ଭଗବାନ କହିଛନ୍ତି "ଦୁଃଖେଷ୍ୱନୁଦ୍ ବିଗ୍ନମନାଃ, ସୁଖେଷୁ ବିଗତ ସ୍ପୃହଃ। ବୀତ, ରାଗ, ଭୟ, କ୍ରୋଧଃ ସ୍ଥିତଧିର୍ମୁ ନିରୁଚ୍ୟତେ। |
| ଆନନ୍ଦ | ସେ କହିଲେ ଶିକ୍ଷାଦାନ କରି ଭିକ୍ଷୁକ ସଜାଇବାକୁ କ'ଣ ତୁମ ଗୁରୁଦେବ ଉଚିତ୍ ମନେ କରନ୍ତି ? |
| ଗୁରୁଦେବ | ଉଚିତ୍ କହୁଛନ୍ତି ସିଏ। କାରଣ ଶିକ୍ଷାଦାନ କରି ତୁମକୁ ଭିକ୍ଷାପାତ୍ର ଦେବାର ଅର୍ଥ ଈଶ୍ୱରଙ୍କ ଏଇ ବିଶାଳ ସୃଷ୍ଟିରୁ ଭବିଷ୍ୟତରେ ଯାହା କିଛି ଆହରଣ କରିବ ବା ଉତ୍ପାଦନ କରିବ ସେ ସବୁକୁ ଅର୍ଥାତ୍ ପ୍ରକୃତିର ଦାନ ଅର୍ଥାତ୍ ଈଶ୍ୱରଙ୍କ ଠାରୁ ସଂଗୃହିତ ଭିକ୍ଷା ବୋଲି ଗ୍ରହଣ କରିବା ଉଚିତ୍। ଭଦ୍ରବ୍ୟକ୍ତି ଜଣକ ଜୋର ଯାର ମୁଲକ ତା'ର ନ୍ୟାୟରେ ବିଶ୍ୱାସ କରୁଥାଇ ପାରନ୍ତି ? |
| ଆନନ୍ଦ | ବାରମ୍ବାର ସେ କର୍ମ କରିବାକୁ କିନ୍ତୁ ଉପଦେଶ ଦେଉଥାନ୍ତି। |
| ଗୁରୁଦେବ | ଉଚିତ୍ ଉପଦେଶ ସେ ଦେଇଛନ୍ତି। କିନ୍ତୁ ଆମର କର୍ମ ମଧ ତଦନୁରୂପ ହେବା ଆବଶ୍ୟକ ଯେମିତି "କର୍ମଣ୍ୟେ ବାଧିକାରସ୍ତେ, ମା ଫଳେଷୁ କଦାଚନ" ଆମ କର୍ମର ଉଦ୍ଦେଶ୍ୟ ମଧ ସ୍ୱାର୍ଥଗତ ନ ହୋଇ ସମାଜ ଗଠନ ଏବଂ ରାଷ୍ଟ୍ର ହିତ ପାଇଁ ଉଦ୍ଦିଷ୍ଟ ହେବା ଆବଶ୍ୟକ। ଏଥର କୁହ ୨ୟ ଦାତା କ୍'ଣ ଦେଲେ ? |

ଆନନ୍ଦ — ତାଙ୍କୁ ଯେତେବେଳେ କହିଲି, ମହାଭାଗ ଆଶ୍ରମ ପାଇଁ କିଛି ଦାନ କରନ୍ତୁ, ସେ ସ୍ମିତହାସ୍ୟ କରି କେବଳ ଏଇ ମାଟି ଖଡି ଖଣ୍ଡେ ପ୍ରଦାନ କରି କହିଲେ ଏହା ହିଁ ଆଶ୍ରମକୁ ମୋର ସାମାନ୍ୟ ଭିକ୍ଷା।

ଗୁରୁଦେବ — ବାଃ ଚମତ୍କାର ଭିକ୍ଷା। ଗୁଣ ଚିହ୍ନେ ଗୁଣିଆ। ବ୍ୟକ୍ତିଜଣକ ନିଶ୍ଚିତ୍ ସଂସ୍କାରି ହୋଇଥିବେ। ଈଶ୍ୱର ତାଙ୍କୁ ଆଶୀର୍ବାଦ କରନ୍ତୁ। ଦିଅ ବତ୍ସ ଶିକ୍ଷାର ପ୍ରଚାର ପ୍ରସାର ପାଇଁ ତାଙ୍କର ଏ ମହତ୍ ଦାନ ଖୁବ୍ ଅମୂଲ୍ୟ। ଏହାକୁ ଆହରଣ କରି ତୁମେ ମଧ୍ୟ ଧନ୍ୟ ହୋଇଛ ଏଥର ତୃତୀୟ ଭିକ୍ଷା।

ଆନନ୍ଦ — ଏହି ସ୍ୱର୍ଣ୍ଣ ମୁଦ୍ରାର ଥଳି। ଗ୍ରହଣ କରନ୍ତୁ।

ଗୁରୁଦେବ — ଏହା ତୁମର ପ୍ରାପ୍ୟ। ଏଥିରେ ମୋର ବା ଆଶ୍ରମର କିଛି ଅଧିକାର ନାହିଁ।

ଆନନ୍ଦ — ଗୁରୁଦେବ ଆପଣ ଆଜ୍ଞା ପ୍ରଦାନ କଲେ ଏହାକୁ ମୁଁ ଆଶ୍ରମକୁ ପ୍ରଦାନ କରନ୍ତି।

ଗୁରୁଦେବ — ତୁମର ବିଚାର ଉଚିତ୍। ମାତ୍ର ଏ ଆଶ୍ରମରେ ଅର୍ଥର ଆବଶ୍ୟକତା ବା କ'ଣ ? କାରଣ ଆଶ୍ରମରେ ଆବଶ୍ୟକତା ସ୍ୱୟଂ ମହାରାଜ ଏବଂ ରାଜକୋଷ ତୁଲାଉ ଅଛି। ଏଣୁ ଏ ଅର୍ଥ ରାଜକୋଷକୁ ପ୍ରଦାନ କରାଯିବ। ସଦାନନ୍ଦ ତୁମର ଭିକ୍ଷା ପ୍ରଦାନ କର।

ସଦାନନ୍ଦ — ପ୍ରଥମ ଦାତା ଏଇ ବସ୍ତ୍ର ପ୍ରଦାନ କରି ଆପଣଙ୍କୁ ପ୍ରଣାମ ଜଣାଇଛନ୍ତି। ୨ୟ ଦାତା ଆଶ୍ରମ ନିମନ୍ତେ କମ୍ବଳ ଖଣ୍ଡିଏ ପ୍ରଦାନ କରି ଅଛନ୍ତି ଏବଂ ତୃତୀୟ ଦାତା କିଛି ଫଳମୂଳ ପ୍ରଦାନ କରିଛନ୍ତି, ଏହା ଗ୍ରହଣ କରନ୍ତୁ।

ଗୁରୁଦେବ — ପ୍ରଥମ ଓ ୨ୟ ଭିକ୍ଷା ଆଶ୍ରମକୁ ଘେନିଯାଅ। କିନ୍ତୁ ୩ୟ ଭିକ୍ଷା ତୁମର ପ୍ରାପ୍ୟ ବତ୍ସ।

ସଦାନନ୍ଦ — ଆଶ୍ରମ ତ ମୋର ଘର, ଆପଣମାନେ ମୋର ପିତାମାତା। ସହୋଦର। ଏଣୁ ଏହାକୁ ମୁଁ ଆଶ୍ରମ ଉଦ୍ଦେଶ୍ୟରେ ନୈବେଦ୍ୟ ଅର୍ପଣ କରୁଛି। ଦୟାକରି ଗ୍ରହଣ କଲେ କୃତାର୍ଥ ହେବି।

ଗୁରୁଦେବ — ତଥାସ୍ତୁ। ପ୍ରେମାନନ୍ଦ ! ଏବେ ତୁମର ପାଳି।

ପ୍ରେମାନନ୍ଦ — ଗୁରୁଦେବ ୧ମ ଦାତା ଗୃହକର୍ତ୍ତା ହୋଇ ମଧ୍ୟ ନିଜର ଅସାମର୍ଥ୍ୟ ପ୍ରକାଶ କରି, ନିଜ ପୁତ୍ର ପାଖରୁ ଭିକ୍ଷା ଯାଚନା ପାଇଁ କହିଲେ। ମାତ୍ର ମୁଁ ତାଙ୍କ ପୁତ୍ରକୁ ଭିକ୍ଷା ମାଗିବା ମାତ୍ରେ ସେ ତାଙ୍କ ପିତାଙ୍କୁ ନାନାଭାବେ ଅପମାନିତ କରି ମୋତେ ଆଘାତ ଦେଲେ ଏବଂ ଏହି ପୋଥିଟିକୁ ମୋ ଉପରକୁ ଫୋପାଡ଼ି ଅତ୍ୟନ୍ତ କ୍ରୋଧିତ ହୋଇ କହିଲେ ଯେ, ଏହାକୁ ନେଇଯାଅ। ଏହା ମୁଁ ଆଶ୍ରମରୁ ସଂଗ୍ରହ କରିଥିଲି। ମାତ୍ର ଏହା ଏବେ ମୋର କୌଣସି କାର୍ଯ୍ୟରେ ଆସୁନାହିଁ।

ଗୁରୁଦେବ — (ପୁସ୍ତକଟିକୁ ଦେଖି) ଆଦର୍ଶ ଗାର୍ହସ୍ଥ ଧର୍ମ। ବାଃ ନିଜେ ଜଣେ ଗୃହସ୍ଥ ହୋଇ ନିଜ ପିତାଙ୍କୁ ଧିକ୍କାର କରି ଯାଚକଙ୍କୁ ଆଘାତ କରୁଥିବା ବ୍ୟକ୍ତି ଗାର୍ହସ୍ଥ ଜୀବନର ଧର୍ମ କେମିତି ବୁଝିବ। ଆମର ଧର୍ମରେ ଯେଉଁ ଚାରି ଆଶ୍ରମ କଥା କୁହାଯାଇଛି, ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ, ବାନପ୍ରସ୍ଥ ଓ ସନ୍ୟାସ। ଏସବୁ ମଧ୍ୟରୁ ଗାର୍ହସ୍ଥ ଧର୍ମ ନିର୍ବାହ କରିବା ସବୁଠାରୁ କଷ୍ଟସାଧ୍ୟ ସମୟ। କାରଣ ଏହି ଅବସ୍ଥାରେ ମଣିଷ ସମାଜର ସେବା କରେ ଏବଂ ଆଉ ସମସ୍ତଙ୍କ ଖାଦ୍ୟ, ବସ୍ତ୍ର ଓ ଜୀବନ ଯୋଗାଏ। ଶୁଣ ବତ୍ସ, କେବଳ କଣ୍ଠସ୍ଥ କରି ବିଦ୍ୟା ଅଧ୍ୟୟନ କରାଯାଇ ପାରେ। ମାତ୍ର ବିଦ୍ୟାକୁ ଆହରଣ କରି ବିନିଯୋଗ କରାଯାଇ ପାରେନା। ଯେମିତି ଘରେ ସାଇତା ଧାନରୁ ଗଜା ବାହାରେ ନାହିଁ, ତାକୁ ଉପଯୁକ୍ତ କ୍ଷେତରେ ଉପଯୁକ୍ତଭାବେ ବପନ କଲେ ହିଁ ଅଙ୍କୁରୋଦମ ହୁଏ। ନିଅ ଏହାକୁ ଆଶ୍ରମର ଶିକ୍ଷା କକ୍ଷରେ ସଯତ୍ନେ ସାଇତି ରଖ। ଅନ୍ୟମାନଙ୍କର ଉପକାରରେ ଲାଗିବ। ତୃତୀୟ ଦାତା।

| | |
|---|---|
| ପ୍ରେମାନନ୍ଦ | ତୃତୀୟ ଦାତା ମୋତେ ଏଇ ପାତ୍ରଟି ଦେଇ କହିଲେ, ଏହା ଦ୍ରୌପଦୀଙ୍କ ଅକ୍ଷୟ ପାତ୍ର ଭଳି ସାରା ଜୀବନ ତୁମ୍ଭ କାର୍ଯ୍ୟରେ ଲାଗିବ। ମାତ୍ର ଗୋଟିଏ ସର୍ତ୍ତରେ। |
| ଗୁରୁଦେବ | ସର୍ତ୍ତ କହିଲ ନାହିଁ ତ ? |
| ପ୍ରେମାନନ୍ଦ | ଏହା ଏକ ଗୋପନୀୟ ଏବଂ ଭୟପ୍ରଦାନକାରୀ ସର୍ତ୍ତ। ମୋତେ କହିବା ପାଇଁ ନିଷେଧ କରାଯାଇଛି। |
| ଗୁରୁଦେବ | ବ୍ୟକ୍ତ କର। |
| ପ୍ରେମାନନ୍ଦ | ମୁଁ ଅତ୍ୟନ୍ତ ଭୟଭୀତ ଗୁରୁଦେବ। ନିଜ ଅପେକ୍ଷା ଯଦି ଆପଣଙ୍କର ଓ ଆଶ୍ରମର କ୍ଷତି ହୁଏ, ତାହାହେଲେ ମୁଁ ନିଜକୁ କ୍ଷମା କରିପାରିବି ନାହିଁ। |
| ଗୁରୁଦେବ | ନିର୍ଭୟରେ ବ୍ୟକ୍ତ କର। |
| ପ୍ରେମାନନ୍ଦ | ସେ କହିଛନ୍ତି ଏକ ଅମାବାସ୍ୟା ରାତ୍ରିର ନିର୍ଜନ ଅନ୍ଧକାର ମଧ୍ୟରେ ଏ ପାତ୍ରକୁ ଜଣେ କୁମାରୀ ବାଳିକାର କୋଳରେ ରଖି ପୂଜା କରି ତାକୁ ମାନବର ରକ୍ତରେ ପୂର୍ଣ୍ଣ କଲେ ସବୁ ମନସ୍କାମନା ପୂର୍ଣ୍ଣ ହେବ ଗୁରୁଦେବ। |
| ଗୁରୁଦେବ | (ହସିଲେ) ଏହା ତୁମ୍ଭର ପ୍ରାପ୍ୟ... ତୁମ୍ଭେ ଏହାକୁ ଗ୍ରହଣ କର। ଆଉ ଅମାବାସ୍ୟା ରାତ୍ରିରେ ରକ୍ତର ପ୍ରୟୋଜନ ହେଲେ ମୋ ନିକଟରୁ ତାହା ଗ୍ରହଣ କରି ପାତ୍ର ପୂର୍ଣ୍ଣ କର। ମୋର ଆପତ୍ତି ନାହିଁ। |
| ପ୍ରେମାନନ୍ଦ | କିନ୍ତୁ ଏ ପାତ୍ରରେ ମୋର ପ୍ରୟୋଜନ ନାହିଁ। ଆପଣ ଆଜ୍ଞା କଲେ, ମୁଁ ଆଶ୍ରମକୁ ଏହା ପ୍ରଦାନ କରିବି। |
| ଗୁରୁଦେବ | ତା'ହେଲେ ଏଥିରେ ରକ୍ତ ପୂର୍ଣ୍ଣ କରିବ କିଏ ? ତୁମ୍ଭର ପିତା, ମାତା, ନା ତୁମ୍ଭେ ନିଜେ ? |
| ପ୍ରେମାନନ୍ଦ | କ୍ଷମା କରିବେ ଗୁରୁଦେବ। ତାହା ଅସମ୍ଭବ। |
| ଗୁରୁଦେବ | ତୁମ୍ଭର ଅଥବା ତୁମ୍ଭର ପ୍ରିୟଜନଙ୍କ ରକ୍ତ ଭଳି ଅନ୍ୟ ଯେକୌଣସି ମନୁଷ୍ୟର ରକ୍ତ ଓ ଜୀବନ ମୂଲ୍ୟବାନ। ନିଜେ ଯଦି ଜଣେ ମଣିଷ ବା ପଶୁର ଜୀବନ ରକ୍ଷା କରିପାରିବ ନାହିଁ, ତାହେଲେ ଜଣେ ବ୍ୟକ୍ତିକୁ ହତ୍ୟା କରିବ କେଉଁ ସ୍ପର୍ଦ୍ଧାରେ ମୂର୍ଖ। ନିଅ ଏହାକୁ ନଷ୍ଟ କରିଦିଅ। ଏହାର ସ୍ଥାନ ଆମ ଆଶ୍ରମରେ କେବଳ ନୁହେଁ, ସମଗ୍ର ବିଶ୍ୱରେ ମଧ୍ୟ ଏହାର ପ୍ରୟୋଜନ ନାହିଁ। ବସ୍ ମନେରଖ ଏ ଆଶ୍ରମ ଜ୍ଞାନ ବିତରଣର ସ୍ଥାନ। ଏଠାରେ କୌଣସି ପ୍ରକାର ଅନ୍ଧବିଶ୍ୱାସ ଓ ବର୍ବରତାର ସ୍ଥାନ ନାହିଁ। |
| ପ୍ରେମାନନ୍ଦ | ମୁଁ କିନ୍ତୁ ଏହାକୁ ମାଗି ନଥିଲି। ଦାତା ସ୍ୱଇଚ୍ଛାରେ ଅର୍ପଣ କରି ଯାହା କହିଥିଲେ ତହିଁରେ ମୁଁ ଆଶ୍ଚର୍ଯ୍ୟ ହୋଇ ଯାଇଥିଲି। |
| ଗୁରୁଦେବ | କ'ଣ ସେ କହିଥିଲେ। |
| ପ୍ରେମାନନ୍ଦ | ଆଶ୍ରମରେ କାଳେ ଜଣେ ରାଜକୁମାର ରହୁଛନ୍ତି। ତାଙ୍କରି ରକ୍ତରେ ଏ ପାତ୍ର ପୂର୍ଣ୍ଣ ହେଲେ ମହାକାଳ ଆନନ୍ଦିତ ହେବେ ଏବଂ ଇଚ୍ଛାମତେ ବର ପ୍ରଦାନ କରିବେ। |
| ଗୁରୁଦେବ | କିଏ ସେହି ପାଷଣ୍ଡ ? |
| ପ୍ରେମାନନ୍ଦ | ଜଣେ କାପାଳିକ ଭଳି ଦେଖା ଯାଉଥିଲେ। କେବେବି ସେ ହୁଏତ ଆଶ୍ରମକୁ ଆସିଯାଇ ପାରନ୍ତି। |
| ଗୁରୁଦେବ | ଭଣ୍ଡ କାପାଳିକ..... ଛାଡ଼ ସେ କଥା। ସେବାନନ୍ଦ ତୁମର ଭିକ୍ଷା କାହିଁ ? |
| ସେବାନନ୍ଦ | ମୋତେ ତିନିଜଣ ଦାତା କେବଳ ତିନିମୁଠା ଖାଦ୍ୟାନ୍ନ ପ୍ରଦାନ କରିଥିଲେ। ମାତ୍ର... |
| ଗୁରୁଦେବ | ପୁଣି ମାତ୍ର କାହିଁକି ? ଏହି ପାତ୍ର ତ ସମ୍ପୂର୍ଣ୍ଣ ଖାଲି, ଖାଦ୍ୟାନ୍ନ କ'ଣ କଲ। |

ସେବାନନ୍ଦ	ଖାଦ୍ୟାନ୍ନ ଗ୍ରହଣ କରି ଫେରୁଥିଲା ବେଳେ ଜଣେ ଅର୍ଥବ ଭିକ୍ଷୁକଙ୍କୁ ଭେଟିଲି। ୩ ଦିନ ଧରି ସିଏ ଉପବାସୀ, ଚଳନ ଶକ୍ତିହୀନ, ପଙ୍ଗୁ। ଅତଏବ ତାଙ୍କ ଦୁଃଖ ସହି ନ ପାରି ତାଙ୍କୁ ଖାଦ୍ୟାନ୍ନ ପ୍ରଦାନ କଲି ଓ ତାଙ୍କର ସାମାନ୍ୟ ସେବା ଶୁଶ୍ରୁଷା କରି ଫେରୁଛି। ମୋତେ କ୍ଷମା କରନ୍ତୁ ପ୍ରଭୁ। ଯାହା ଦଣ୍ଡ ପ୍ରଦାନ କରିବେ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛି।

ଗୁରୁଦେବ	ସେହି ଭିକ୍ଷୁକଙ୍କୁ କ'ଣ ସେଇଠି ଛାଡ଼ିଦେଇ ଚାଲିଆସିଲ ?

ସେବାନନ୍ଦ	କାନ୍ଧରେ ବସାଇ ଆଶ୍ରମ ପର୍ଯ୍ୟନ୍ତ ନେଇଆସିଛି ଗୁରୁଦେବ। ଆଜ୍ଞା ଦେଲେ...

ଗୁରୁଦେବ	ଏଥିପାଇଁ ଆଜ୍ଞାର ପ୍ରୟୋଜନ ନାହିଁ। ମାନବ ସେବା ହିଁ ମାଧବ ସେବା। ଅତିଥି ଦେବୋ ଭବଃ। ଅତିଶୀଘ୍ର ତାଙ୍କର ସେବାର ବନ୍ଦୋବସ୍ତ କର। ଶୁଣ ଆଜିର ପରୀକ୍ଷାରେ ତୁମ୍ଭେ ସମସ୍ତେ କୃତକାର୍ଯ୍ୟ ହୋଇଛ। ବିଶେଷତଃ ଭିକ୍ଷା ଗ୍ରହଣ କରିବା ସହିତ ମୋ ସମ୍ମୁଖରେ ସମସ୍ତ ସତ୍ୟ ପ୍ରକାଶ କରିଛ। ମାତ୍ର ଆନନ୍ଦ ସ୍ୱର୍ଣ୍ଣଥଳି ପାପ୍ତ ହୋଇ ତୁମ୍ଭ ମନରେ ଯେଉଁ ଅହଙ୍କାର ଓ ଖୁସିର ଉଦ୍ବେଳନ ହୋଇଥିଲା, ତାହା ଅନାବଶ୍ୟକ। ସେଥିପାଇଁ ସାବଧାନ ରୁହ। ସଦାନନ୍ଦ ତୁମ୍ଭେ ଅନାବିଳ ଭାବେ ସମସ୍ତ ପଦାର୍ଥ ଆଶ୍ରମ ଉଦ୍ଦେଶ୍ୟରେ ସମର୍ପଣ କରିଛ, ସେମିତି ନିଜ ଜୀବନ ମଧ୍ୟ ରାଷ୍ଟ୍ର ହିତ ପାଇଁ ଉତ୍ସର୍ଗ କରିବ। ପ୍ରେମାନନ୍ଦ, କାପାଳିକଙ୍କ ଠାରୁ ଯାଦୁକାରୀ ପାତ୍ର ଗ୍ରହଣ କରି ତୁମ୍ଭର ଯେତିକି ତ୍ରୁଟି ରହିଥିଲା ତାହା ମୋ ନିକଟରେ ପ୍ରକାଶ କରିବା ଦ୍ୱାରା ନିଜକୁ ଦୋଷମୁକ୍ତ କରିପାରିଛ। ମାତ୍ର ମନେଖ, ଜୀବନରେ ସର୍ବଦା ନିଜର ଶିକ୍ଷା ଓ ବିବେକ ବୁଦ୍ଧି ଅନୁଯାୟୀ ପରିଶ୍ରମ ମାଧ୍ୟମରେ ଜୀବନ ନର୍ବାହ କରିବାର ଶପଥ ନିଅ। ସୁଖ ଓ ଦୁଃଖକୁ ଆପଣାର ମନେ କର। ଅନ୍ଧବିଶ୍ୱାସକୁ ଜୀବନରେ ପ୍ରଶୟ ଦିଅନାହିଁ। ନଚେତ୍ ଅନେକ ଦୁଃଖ ଭୋଗି ସାରା ଜୀବନ ହା ହତାଶରେ କଟାଇବାକୁ ବାଧ ହେବ। ଆଜିର ପରୀକ୍ଷାରେ ସେବାନନ୍ଦର କାର୍ଯ୍ୟ ଅତ୍ୟନ୍ତ ଆନନ୍ଦଦାୟକ। କାରଣ ପରୋପକାର ସ୍ୱର୍ଗାୟଃ। ଏହା ଆମର ଧର୍ମ, ଆମର ଦର୍ଶନ, ଆମର ସଂସ୍କୃତି ଏହାକୁ କେବେବି ଭୂଲିବ ନାହିଁ। ଯାଅ ସନ୍ଧ୍ୟା କର୍ମ ସମାପନ କରି ପ୍ରାର୍ଥନା ପାଇଁ ପ୍ରସ୍ତୁତ ହୁଅ। ଆଉ ଶୁଣ, କାଲି ପ୍ରତ୍ୟୁଷରୁ ମୁଁ ତୀର୍ଥାଟନରେ ବାହାରିବି। ମୋ ଅନୁପସ୍ଥିତିରେ ଆଶ୍ରମର ରକ୍ଷଣାବେକ୍ଷଣ, ଅତିଥି ଚର୍ଚ୍ଚା ତଥା ସୁରକ୍ଷାର ଦାୟିତ୍ୱ ତୁମେମାନେ ହିଁ ଗ୍ରହଣ କରିବ। ଯାଅ.... *(ଅନ୍ଧକାର)*

## ୨ୟ ଦୃଶ୍ୟ

**(ସକାଳର ଦୃଶ୍ୟ, ଭଣ୍ଡବାବାଙ୍କ ସହିତ ମାୟାଧର ଚେଲାର ପ୍ରବେଶ)**

ଭଣ୍ଡବାବା	ଜୟ ମା କାଳୀ, ଭରିଦେ ସବୁରୀ ଥାଳି

ମାତା	(ପ୍ରବେଶୀ, ବାବାଙ୍କର ଜୟ ହେଉ, ଆଶ୍ରମକୁ ସୁସ୍ୱାଗତମ୍। ପୁତ୍ରଗଣ... !
(ପ୍ରବେଶ କଲେ ଚାରିଜଣ) ବାବାଙ୍କୁ ପ୍ରଣାମ କର ବତ୍ସ।

୪ଜଣ	ବାବାଙ୍କୁ ପ୍ରଣାମ

ଭଣ୍ଡବାବା	ଆଜି ମୁଁ ତୁମ୍ଭ ଆଶ୍ରମରେ ଅତିଥି ହେବାକୁ ଚାହେଁ।

ମାତା	ଏହା ତ ଆମର ଭାଗ୍ୟ... ଆପଣଙ୍କ ପରିଚୟ ପ୍ରଦାନ କରନ୍ତୁ ମହାଭାଗ।

ଭଣ୍ଡବାବା	ଏକଶତ ବର୍ଷ ହିମାଳୟର ହିମଗୁମ୍ଫାରେ ସାଧନା କରି ସିଦ୍ଧି ଲାଭ କରିଛି। ଏବେ ମାନବର ଉଦ୍ଧାର ପାଇଁ ଜନପଦ ଭ୍ରମଣରେ ବାହାରିଛି। ଚାଲି ଚାଲି ଥକି ଗଲେଣି, ଦେହରେ ମଧ୍ୟ ସାମାନ୍ୟ ଉତ୍ତାପ

| | |
|---|---|
| | ଦେଖା ଦେଇଛି। ତେଣୁ ଶରୀରକୁ ବିଶ୍ରାମର ଆବଶ୍ୟକତା ଅଛି। |
| ମାତା | ଆପଣ ଆନନ୍ଦରେ ଏଠାରେ ବିଶ୍ରାମ ଗ୍ରହଣ କରନ୍ତୁ, ଶିଷ୍ୟମାନେ ଆପଣଙ୍କ ସେବା କରି ଧନ୍ୟ ହେବେ। |
| ଭଣ୍ଡବାବା | ପ୍ରୟୋଜନ ହେଲେ ମୋତେ କିଛି ଦିନ ଏଇ ଆଶ୍ରମରେ ଅବସ୍ଥାନ କରିବାକୁ ପଡ଼ିପାରେ। |
| ମାତା | ସେଥିପାଇଁ ଚିନ୍ତା କରନ୍ତୁ ନାହିଁ। ଏଠାରେ ଆପଣଙ୍କର କିଛି ଅସୁବିଧା ହେବ ନାହିଁ। |
| ଭଣ୍ଡବାବା | ଆପଣମାନଙ୍କର ଗୁରୁଦେଙ୍କୁ ତ କାହିଁ ଦେଖୁନାହିଁ। ସେ କାହାଁନ୍ତି ? |
| ମାତା | ଗୁରୁଦେବ ତୀର୍ଥ ଭ୍ରମଣରେ ଯାଇଅଛନ୍ତି। ଫେରିଆସିବାକୁ କିଛି ଦିନ ବିଳମ୍ବ ଘଟିପାରେ। |
| ସେବାନନ୍ଦ | ତେବେ ସେଥିପାଇଁ ଆପଣ ଚିନ୍ତା କରନ୍ତୁ ନାହିଁ। ଆପଣ ଯେତେ ଦିନ ଇଚ୍ଛା, ଏଠାରେ ଅବସ୍ଥାନ କରନ୍ତୁ। |
| ପ୍ରେମାନନ୍ଦ | ଆମେ ସମସ୍ତେ ପାଳି କରି ଆପଣଙ୍କ ସେବା ଆତିଥ୍ୟ ପ୍ରଦାନ କରିବୁ। |
| ଭଣ୍ଡବାବା | ନା ନା ମୁଁ କୌଣସି ଗୋଟିଏ ସ୍ଥାନରେ ୩ଦିନରୁ ବେଶି ଅତିଥି ହୁଏ ନାହିଁ। ମାତ୍ର ଯେହେତୁ ଶରୀର ଅସୁସ୍ଥ ତେଣୁ ଆଉ କିଛି ଦିନ ଅଧିକ ଅବସ୍ଥାନ କରିପାରେ। |
| ସଦାନନ୍ଦ | ଆପଣ ସମ୍ପୂର୍ଣ୍ଣ ସୁସ୍ଥ ହେବା ପର୍ଯ୍ୟନ୍ତ ନିର୍ବିଘ୍ନରେ ଆନନ୍ଦ ମନରେ ଅବସ୍ଥାନ କରନ୍ତୁ। |
| ସେବାନନ୍ଦ | ଆପଣଙ୍କ ସେବା ଆମର ପରମ ଧର୍ମ। |
| ଭଣ୍ଡ | ମୋ ସେବା ମାୟାଧର କରିବ। |
| ମାତା | ସେ କିଏ ? |
| ଭଣ୍ଡ | ଏଇ ସେବକ ମୋ ତପସ୍ୟାର ଫଳ, ମୋ ପୁତ୍ର ସଦୃଶ। ଏହାକୁ ମୁଁ ମୋର ସାଧନାର ବିଭୂତିରୁ ସୃଷ୍ଟି କରିଛି। |
| ମାତା | ଆଶ୍ଚର୍ଯ୍ୟ ! ବିଭୂତିରୁ ପୁତ୍ର ସୃଷ୍ଟି ? ତା'ହେଲେ ତ ଆପଣ ସ୍ୱୟଂ ସ୍ରଷ୍ଟା। |
| ଭଣ୍ଡ | ଓଁ ହ୍ଲିଂ କ୍ଲିଂ କାଳିକାୟେ ନମଃ। ଏଇ ନିଅ ବିଭୂତି। ସମସ୍ତଙ୍କୁ ପ୍ରଦାନ କର। |
| ମାତା | ଏଥିରୁ ସନ୍ତାନ ଉତ୍ପତ୍ତି ହେବ ନାହିଁ ତ ବାବା। |
| ଭଣ୍ଡ | ମୋତେ ତାଚ୍ଛଲ୍ୟ କରୁଛ ? |
| ମାତା | କ୍ଷମା କରିବେ ମହାରାଜ। କେବଳ ଜିଜ୍ଞାସା । କାରଣ ଏଭଳି ଅଦ୍ଭୁତ କଥା ପୂର୍ବରୁ ଶୁଣି ନାହିଁ କେବେ ? |
| ଭଣ୍ଡ | କୂପ ମଣ୍ଡୁକ ତୁମେ। ଜୀବନରେ କେବେ ହିମାଳୟ ଦେଖିଛ କି ? |
| ମାତା | ନାଁ... |
| ଭଣ୍ଡ | ତା'ହେଲେ ସେଠାକାର ସାଧକମାନଙ୍କର ଚମତ୍କାରିତା ବା ଦେଖିବ କେମିତି ? ସେଇଥି ପାଇଁ ତ ମୋର ଏ ଭ୍ରମଣ। ତୁମର ପରମ ଭାଗ୍ୟ ଯେ ମୋ ଦର୍ଶନ ପାଇଛ। |
| ମାତା | ଉଚିତ୍ କହିଛନ୍ତି ମହାଭାଗ। ଯାଅ ସମସ୍ତେ । ଅତିଥିଙ୍କୁ ବିଶ୍ରାମ ଗୃହକୁ ଘେନିଯାଇ ଜଣେ ଜଣେ କରି ତାଙ୍କର ସେବା କର। |
| ସଦାନନ୍ଦ | ଚାଲନ୍ତୁ ମହାରାଜ... (ଅନ୍ୟମାନଙ୍କ ସହ ଭଣ୍ଡବାବା ପ୍ରସ୍ଥାନ) |
| ମାତା | (ସେବାନନ୍ଦକୁ ଡ଼ାକି) ସାବଧାନ ଥିବ ସେବାନନ୍ଦ, ଅତିଥିଙ୍କର ବ୍ୟବହାର ଅତ୍ୟନ୍ତ ସନ୍ଦେହଜନକ। ଏଣୁ ସେମାନଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖ। ଏହା ଯେମିତି ବାବାଜୀ ବା ତାଙ୍କର ସେବକ ଜାଣି ନ ପାରନ୍ତି। |

ସଦାନନ୍ଦ ଆପଣ ନିଶ୍ଚିତ ରୁହନ୍ତୁ ମାତା।

ମାତା ମନେ ହୁଏ ଅତିଥି ଜଣେ ତାନ୍ତ୍ରିକ କାପାଳିକ। ଅନେକ ସମୟରେ ସେମାନେ ନରବଳି ଦେଇ ତାଙ୍କର ମନସ୍କାମନା ପୂର୍ଣ୍ଣ କରିବାର ପ୍ରୟାସ କରିଥାନ୍ତି।

ସଦାନନ୍ଦ ତାହେଲେ ସେ ଭଣ୍ଡ ମଧ୍ୟ ହୋଇଥାଇ ପାରନ୍ତି ?

ମାତା ଯାଦୁ ଖେଳ, ମନ୍ତ୍ର, ତନ୍ତ୍ର କରି ଲୋକଙ୍କୁ ବିଶ୍ୱାସରେ ଆୟତ୍ତ କରି ତାପରେ ନାନା ପ୍ରକାର କୁକାର୍ଯ୍ୟ କରନ୍ତି। ଅବଶ୍ୟ ସମସ୍ତ ସାଧକ ସେପରି ନୁହଁନ୍ତି। ମାତ୍ର ସେ ଭଣ୍ଡ କି ନୁହେଁ ଆମକୁ ସେ କଥା ପ୍ରଥମେ ପରୀକ୍ଷା କରି ଜାଣିବାକୁ ପଡ଼ିବ। ତେଣୁ ସତର୍କ ଥିବ ଏବଂ ପ୍ରୟୋଜନ ହେଲେ ମୋତେ ସମ୍ବାଦ ଦେବାକୁ ବିଳମ୍ବ କରିବ ନାହିଁ।

ସଦାନନ୍ଦ ଯଥା ଆଜ୍ଞା ମାତା। *(ଦୃଶ୍ୟାନ୍ତର)*

## ୩ୟ ଦୃଶ୍ୟ

### ରାଜପ୍ରସାଦ

ମହାରାଜ ମହାମନ୍ତ୍ରୀ ହଠାତ୍ ଗୁରୁଦେବଙ୍କର ଆଗମନର କାରଣ କ'ଣ ହୋଇପାରେ ?

ମହାମନ୍ତ୍ରୀ କେମିତି ଜାଣିବି ମହାରାଜ। ଆଶ୍ରମର ଆଉ କିଛି ଅସୁବିଧା ଉତ୍ପନ୍ନ ହୋଇନାହିଁ ତ ? ଏଇ କିଛି ଦିନ ତଳେ ଆମ୍ଭେ ଆଶ୍ରମରୁ ଫେରିଛୁ। ଖାଦ୍ୟାନ୍ନ ମଧ୍ୟ ଯଥେଷ୍ଟ ଗଚ୍ଛିତ ଅଛି।

ଗୁରୁଦେବ ମହାରାଜଙ୍କର ଜୟ ହେଉ। ସର୍ବେ କୁଶଳମ ଅସ୍ତୁ।

ମହାରାଜ ପ୍ରଣାମ ଗୁରୁଦେବ। ଆଗମନର ଅଭିପ୍ରାୟ।

ଗୁରୁଦେବ ପରିଭ୍ରମଣ ଏବଂ ପରୀକ୍ଷାର୍ଥୀ ମାନଙ୍କର କର୍ତ୍ତବ୍ୟ ସମ୍ପାଦନ କରିବାର ଗୁରୁଦାୟିତ୍ୱର ପରୀକ୍ଷା ଗ୍ରହଣ।

ମହାମନ୍ତ୍ରୀ ସେମାନେ ବାଳକ। ଅଦ୍ୟାବଧି ପରିପକ୍ୱ ନୁହଁନ୍ତି। ତାଙ୍କ ଉପରେ ଆଶ୍ରମର ଭାର ନ୍ୟସ୍ତ କରିବା....

ଗୁରୁଦେବ ପିତାଙ୍କ ଦୃଷ୍ଟିରେ ପୁତ୍ର ସବୁବେଳେ ଶିଶୁ ସଦୃଶ୍ୟ। କିନ୍ତୁ ମହାମନ୍ତ୍ରୀ ଆପଣ କ'ଣ ଜାଣନ୍ତି ନାହିଁ "ଲାଳୟେତ ପଞ୍ଚ ବର୍ଷାଣି, ଦଶବର୍ଷାଣୀ ତାଡ଼ୟେତ, ପ୍ରାପ୍ତେତୁ ଷୋଡଶ ବର୍ଷେ ପୁତ୍ରମିତ୍ର ମେବାଚରେତ୍" ଆପଣଙ୍କ ପୁତ୍ରମାନେ ସବୁ ପ୍ରାପ୍ତ ବୟସ୍କ ହୋଇ ସାରିଲେଣି ଏଣିକି ତାଙ୍କୁ ସକ୍ରିୟ କରିବାକୁ ଚାହିଁଲେ ତାଙ୍କ ଉପରେ କ୍ରମେ କ୍ରମେ ଦାୟିତ୍ୱ ନ୍ୟସ୍ତ କରିବାକୁ ପଡ଼ିବ। ପ୍ରତ୍ୟେକ ପିତାର ତାହା ହିଁ କର୍ତ୍ତବ୍ୟ। ଆପଣ ବୋଧ ହୁଏ ଜାଣନ୍ତି ନାହିଁ ଯେ ବ୍ୟାଘ୍ର ତା ସନ୍ତାନମାନଙ୍କୁ ସନ୍ତରଣ ଶିଖାଇବାକୁ ଚାହିଁଲେ ନଦୀକୁ ଠେଲି ଦେଇଥାଏ। ପକ୍ଷୀର ଶାବକକୁ ବସାରୁ ଫିଙ୍ଗି ଦେଇ ହିଁ ପକ୍ଷୀ ତାକୁ ଉଡ଼ିବାର କୌଶଳ ଶିଖାଇ ଥାଏ।

ମହାରାଜ ଆପଣ ଉଚିତ୍ କହିଛନ୍ତି ଗୁରୁଦେବ। ଆଉ କିଛି ଦିନ ପରେ ସେମାନେ ସେମାନଙ୍କର ଶିକ୍ଷା ସମାପନ କରି ରାଜ୍ୟକୁ ଫେରି ଆସିଲେ ସେମାନଙ୍କୁ ଏ ରାଜ୍ୟର ଗୁରୁଦାୟିତ୍ୱ ଗ୍ରହଣ କରିବାକୁ ପଡ଼ିବ।

ମହାମନ୍ତ୍ରୀ ସେଥିପାଇଁ କଣ ପୁତ୍ରମାନେ ଉପଯୁକ୍ତ ହେଲେଣି ଗୁରୁଦେବ ?

ଗୁରୁଦେବ ସେଇ ପ୍ରୟାସରେ ମୁଁ ତାଙ୍କର ଚରିତ୍ର ଓ କାର୍ଯ୍ୟ କୁଶଳତାକୁ ତନ୍ନ ତନ୍ନ କରି ଗଢି ତୋଳିଛି। ଏବେ ପରୀକ୍ଷାର ବେଳ। ଆଶା କରେ ସେମାନେ କୃତୀତ୍ୱର ସହ ଉତ୍ତୀର୍ଣ୍ଣ ହେବେ।

ମହାରାଜ ସେମାନେ ଦାୟିତ୍ୱ ଗ୍ରହଣ କରିବା ପୂର୍ବରୁ ଏଠାରେ ଅର୍ଥାତ୍ ରାଜ ଉଆସରେ ମଧ୍ୟ ସେମାନଙ୍କର ପରୀକ୍ଷା ଗ୍ରହଣ କରାଯାଇପାରେ।

| | |
|---|---|
| ଗୁରୁଦେବ | ମୋର ଆପତ୍ତି ନାହିଁ। ତେବେ ତା'ପୂର୍ବରୁ ମୁଁ ମୋର ଆସିବାର କାରଣ ଘୋଷଣା କରୁଛି। ଆଗାମୀ ଅମାବାସ୍ୟା ତିଥିରେ ଆପଣ ଆଶ୍ରମରେ ଉପସ୍ଥିତ ରହି ପୁତ୍ରମାନଙ୍କର କୃତିତ୍ୱ ଦର୍ଶନ କରିବେ। |
| ମହାରାଜ | ଗୁରୁଦେବ ଆଦେଶ ହେଲେ ଆମ୍ଭେ ଏକ ଅନୁରୋଧ କରିବାକୁ ମନ ବଳାଇଛୁ। |
| ମହାମନ୍ତ୍ରୀ | ଆଶ୍ରମ ନିମନ୍ତେ କେବଳ ଖାଦ୍ୟାନ୍ନ ବ୍ୟତୀତ ଆପଣ କେବେ କିଛି ରାଜ ନଅରରୁ ଗ୍ରହଣ କରିନାହାଁନ୍ତି। ଯଦି କିଛି ବିଶେଷ ପ୍ରୟୋଜନ ଥାଏ, ତା'ହେଲେ ଆଦେଶ କରନ୍ତୁ। ଆମ୍ଭେ ତାହା ଦକ୍ଷିଣା ଆକାରରେ ପ୍ରଦାନ କରିବା ପାଇଁ ପ୍ରତିଶ୍ରୁତିବଦ୍ଧ। |
| ଗୁରୁଦେବ | ଉଚିତ୍ କହିଛନ୍ତି ଆପଣମାନେ। ମୋର ମଧ୍ୟ ରାଜ ଦରବାରକୁ ଅନେକ ଦ୍ରବ୍ୟ ପ୍ରଦାନ କରିବା କଥା। ଏଇ ନିଅନ୍ତୁ (ଥଳି ଦେଲେ) |
| ରାଜା | ଏହା କ'ଣ ଗୁରୁଦେବ ? |
| ଗୁରୁଦେବ | ସ୍ୱର୍ଣ୍ଣ ମୁଦ୍ରାର ଥଳି। ଭିକ୍ଷା ଗ୍ରହଣ କରିବା ହେତୁ ଶିଷ୍ୟମାନଙ୍କୁ ପ୍ରାପ୍ତ ହୋଇଅଛି। |
| ମହାରାଜ | ଏହା ଆପଣଙ୍କର ସମ୍ପତ୍ତି। |
| ଗୁରୁଦେବ | ନା ଆଶ୍ରମରେ ଅର୍ଥର ଆବଶ୍ୟକତା ନାହିଁ। ବରଂ ପ୍ରଜାମାନଙ୍କର ହିତ କାର୍ଯ୍ୟ ପାଇଁ ଏହାର, ଯଥେଷ୍ଟ ଆବଶ୍ୟକତା ଯଥେଷ୍ଟ ରହିଛି। ଏଣୁ ଏହା ରାଜାଙ୍କର ପ୍ରାପ୍ୟ। |
| ମହାମନ୍ତ୍ରୀ | ମାତ୍ର ଗୁରୁଦେବ... |
| ଗୁରୁଦେବ | ଏହା ମୋର ଆଦେଶ । |
| ମହାରାଜ | ଗୁରୁଦେବଙ୍କର ଜୟ ହେଉ.... |

## ୪ର୍ଥ ଦୃଶ୍ୟ

**(ଦୃଶ୍ୟାନ୍ତର, ଆଶ୍ରମର ଦୃଶ୍ୟ)**

| | |
|---|---|
| ଭଣ୍ଡ | ଜୟମା କାଳୀ... ଓଁ ହ୍ଲିଂ କ୍ଲିଂ ସ୍ୱାହା। |
| ଆନନ୍ଦ | ଅତିଥି ବାବାଙ୍କର ଜୟ ହେଉ। |
| ଭଣ୍ଡ | ଆସିଗଲ ବତ୍ସ। ତୁମର ନାମ। |
| ଆନନ୍ଦ | ଆନନ୍ଦ... |
| ଭଣ୍ଡ | ପ୍ରଥମ ପ୍ରହରର ସେବକ... ଆସ ବତ୍ସ। ଜୟମା କାଳୀ। ଆନନ୍ଦରେ ଭରି ଦିଅ ଆନନ୍ଦଙ୍କ ଝୁଲି। ଓଁ ହ୍ଲିଂ କ୍ଲିଂ। ଶୁଣ ବାବା ତୁମ କପାଳ ଦେଖି ମୁଁ ଜାଣିପାରୁଛି ତୁମେ ଜଣେ ଖୁବ୍ ଭାଗ୍ୟବାନ ମଣିଷ। ତୁମେ ଚାହିଁଲେ ଏ ରାଜ୍ୟର ରାଜା ମଧ୍ୟ ହୋଇପାର। |
| ଆନନ୍ଦ | ଏ କ'ଣ କହୁଛନ୍ତି ବାବା। ମୁଁ ତ ସାମାନ୍ୟ ଜଣେ ଶିଷ୍ୟ, ଏଯାବତ୍ ମୋର ଶିକ୍ଷା ସମାପ୍ତ ହୋଇନି ଅଥଚ ଆପଣ କହୁଛନ୍ତି ମୁଁ ଅଧିପତି ହେବି। |
| ଭଣ୍ଡ | ଅର୍ବାଚିନ ବାଳକ। ମୋ ବାକ୍ୟକୁ ତୁ ସନ୍ଦେହ କରୁଛୁ। ସାଧକର ବାକ୍ୟ ଉପରେ ତୋର ବିଶ୍ୱାସ ନାହିଁ ଦେଖୁଛି। ଏଇ ଦେଖ କହ ମୋ ହାତରେ କ'ଣ ଦେଖୁଛୁ। |
| ଆନନ୍ଦ | ଶୂନ୍ୟ ହସ୍ତ। |
| ଭଣ୍ଡ | ରେ ରେ ଅର୍ବାଚିନ। ଜୟ ମା କାଳୀ ଭରିଦେ ସବୁରି ଝୁଲି। (ହାତ ଖୋଲି) ଏଥର କହ କ'ଣ ପାଇଲୁ ? |

ଆନନ୍ଦ (ଚାଖିଲା) ମଧୁ ଭଳି ମଧୁର ଏବଂ ସ୍ୱାଦଯୁକ୍ତ।

ଭଣ୍ଡ ମଧୁ ଭଳି ନୁହେଁ ମୂର୍ଖ। ମଧୁ, ପଦ୍ମ ମଧୁ।

ଆନନ୍ଦ ଧନ୍ୟ ବାବା। ଧନ୍ୟ ତୁମର କରୁଣା... ବାବାଙ୍କର ଜୟ ହେଉ। ପ୍ରଭୁ ଆପଣ ମୋତେ ଶିଷ୍ୟ କରିନିଅନ୍ତୁ। ମୋତେ ଅଧିପତି ହେବାର ବାଟ ବତେଇ ଦିଅନ୍ତୁ ପ୍ରଭୋ।

ଭଣ୍ଡ ଉଚିତ୍ ସମୟ ଆସିଲେ ଉଚିତ୍ ମାର୍ଗ ତୁମକୁ ବତାଇଦେବି। ଏବେ କୁହ ତୁମେ ଅଧିପତି ହେଲେ ଗୁରୁ ଦକ୍ଷିଣା ମୋତେ କ'ଣ ଦେଇ ପାରିବ ?

ଆନନ୍ଦ ଯାହା ଆଦେଶ କରିବେ, ସବୁ କିଛି ଦେଇ ପାରିବି ବାବା।

ଭଣ୍ଡ ଉଚିତ୍ କହିଛ। ସମୟ ଆସିଲେ ନିଶ୍ଚୟ କହିବି। ଏଥର ଦେଖ (ପତ୍ର ଖୋଲି ଦେଲେ ନାରୀ ମୂର୍ତ୍ତିର ଆବିର୍ଭାବ) ଏ ମୋର ମାନସ ଜାତ ମାନସୀ କନ୍ୟା ମୋହିନୀ କନ୍ୟା। ଏ ହେବ ତୁମର ମହାରାଣୀ। ମହାରାଣୀ ଏ ରାଜ୍ୟର ଭାବି ମହାରାଜଙ୍କର ପରିଚର୍ଯ୍ୟା କର।

ନାରୀ ଆସନ୍ତୁ ମହାରାଜ। ବିନୋଦନ ଗୃହକୁ ଆଗମନ କରନ୍ତୁ।

ଭଣ୍ଡ ଜୟ ମା କାଳୀ ନରମୁଣ୍ଡ ମାଳୀ।

ନାରୀ ନିଅନ୍ତୁ ମହାରାଜ ପାନ କରନ୍ତୁ।

ଆନନ୍ଦ ଏ କ'ଣ ମଦିରା ?

ନାରୀ ନା, ପଦ୍ମ ମଧୁର ଆକର। ଅମୃତ ସଦୃଶ ସ୍ୱାଦଯୁକ୍ତ। ଏହାକୁ ପାନ କଲେ ହିଁ ଜାଣିପାରିବେ ଏହାର ରସମାଧୁର୍ଯ୍ୟ। ଅନୁଭବ କରିପାରିବେ ଏହାର ବିଲକ୍ଷଣ ଅନୁଭୂତି।

ଆନନ୍ଦ ଏହାର ଆଉ ଆବଶ୍ୟକତା କ'ଣ ସୁନ୍ଦରୀ। ତୁମର ଏଇ ଅନିନ୍ଦ ରୂପଶ୍ରୀର ମଦିରା ପାନ କରି ମୁଁ ତ ସମ୍ମୋହିତ ହୋଇସାରିଛି। ଆସ ମୋ ନିକଟକୁ ଆସ। ତୁମର ସାନ୍ନିଧ ବିନା ମୁଁ ଯେ ଅପୂର୍ଣ୍ଣ।

ନାରୀ ଆସିବି ତ ନିଶ୍ଚୟ, କିନ୍ତୁ ତା' ପୂର୍ବରୁ ଏ ଅମରାବତୀର ଧାରାପାନ କରିବାକୁ ପଡ଼ିବ ମହାରାଜ। (ଦେଲେ ଓ ପିଇଲେ)

ଆନନ୍ଦୟ ଆଃ... ଏ ସଂସାରର ଦୃଶ୍ୟପଟ୍ଟ ଯେପରି ପରିବର୍ତ୍ତିତ ହେଉଛି, ପରିବର୍ତ୍ତିତ ହେଉଛି ମୋ ଚିନ୍ତା ଓ ଚେତନା। ସବୁ ଯେମିତି ପ୍ରହେଳିକାମୟ ହୋଇ ଯାଉଛି।

ନାରୀ ଏଥର ମୁଁ ଜାଣିପାରେ କି ଆପଣଙ୍କ ବଂଶ ପରିଚୟ... ? ଆପଣଙ୍କ ଅତୀତ।

ଆନନ୍ଦ ବଂଶ ପରିଚୟ ମୋର ଅଦ୍ୟାବଧି ଅଜ୍ଞାତ। ହେତୁ ହେଲା ଦିନରୁ ଜାଣିଛି ଗୁରୁଦେବ ହିଁ ମୋର ପିତାମାତା।

ନାରୀ ନିଅନ୍ତୁ ଆଉ ଟିକିଏ ପାନ କଲେ ପରମାନନ୍ଦ ଲାଭ କରିବେ। (ପିଇଲେ ଓ ଚେତାଶୂନ୍ୟ ହେଲେ) ବାବା ଏ ତ ସମ୍ପୂର୍ଣ୍ଣ ରୂପେ ଚେତାଶୂନ୍ୟ।

ଭଣ୍ଡ ଓଁ ହ୍ଲିଂ କ୍ଲିଂ ଫଟ, କୁହ କିଏ ତୁମର ପିତା ମାତା....

ଆନନ୍ଦ ଏ ରାଜ୍ୟର ବଣିକ ଶ୍ରେଷ୍ଠ। ଧନାନନ୍ଦଙ୍କ ପୁତ୍ର ନାମ ଶ୍ରଦ୍ଧାନନ୍ଦ।

ଭଣ୍ଡ ଉଚିତ୍ କହିଛ। ଏବେ ତୁମେ ବିଶ୍ରାମ କର। ଏହାକୁ ସ୍ଥାନାନ୍ତରିତ କର, ଶୀଘ୍ର ଧର.... ୨ୟ ପ୍ରହର ଆସନ୍ନ ପ୍ରାୟ।

(ଆନନ୍ଦକୁ ଉଠାଇ ନେଲେ) (ପ୍ରବେଶ କଲେ ସଦାନନ୍ଦ)

ସଦାନନ୍ଦ ବାବାଙ୍କର ଜୟ ହେଉ। ପ୍ରଣାମ ବାବା।

ଭଣ୍ଡ — ତେଜସ୍ୱୀ ଭବ। ମୁଁ ଦେଖିପାରୁଛି ଆଗାମୀ ଦିନର ମହାରାଜ ପଦାର୍ପଣ କରୁଛନ୍ତି। ମହାରାଜଙ୍କର ଜୟ ହେଉ।

ସଦାନନ୍ଦ — ମହାରାଜ କାହାନ୍ତି ?

ଭଣ୍ଡ — ତୁମେ ହିଁ ଆସନ୍ତା କାଲିର ଭାବିସମ୍ରାଟ। ସମ୍ରାଟ ପ୍ରତାପଚଣ୍ଡ ବ୍ୟାଘ୍ରପତି ଦେବ।

ସଦାନନ୍ଦ — ଏ ଆପଣ କ'ଣ କହୁଛନ୍ତି ବାବାଜୀ ମହାରାଜ। ଏପର୍ଯ୍ୟନ୍ତ ମୁଁ ମୋର ଅତୀତ ଜାଣିନି, ପିତୃ ପରିଚୟ ଏବେ ବି ଅଜ୍ଞାତ, ଅଥଚ...।

ଭଣ୍ଡ — ମୁଁ ଜାଣିଛି ତୁମର ପରିଚୟ ଏବଂ ପିତୃ ପରିଚୟ। ମୋତେ କାଳୀମାତା ସ୍ୱପ୍ନାଦେଶ ଦେଇ ତୁମ୍ଭଙ୍କୁ ସାକ୍ଷାତ୍ କରି ଏ ରାଜ୍ୟର ଭାର ତୁମ୍ଭ ହସ୍ତରେ ଅର୍ପଣ କରିବାକୁ ଆଦେଶ ଦେଇଛନ୍ତି। ବିଶ୍ୱାସ ହେଉନି, ଏଇ ଦେଖ... (ହାତ ଝାଡ଼ିଦେଲେ ବିଭୂତି ବିଞ୍ଚି ହୋଇଗଲା) ଏଇ ମୋ ବିଭୂତି, ନିଅ ମସ୍ତକରେ ଧାରଣ କର ଅତିଶୀଘ୍ର ମହାରାଜ ହେବ।

ସଦାନନ୍ଦ — (ବିଭୂତି ଲଗାଇ) ଯଥା ଆପଣଙ୍କ ଇଚ୍ଛା। ଆଃ କି ସୁବାସିତ ବିଭୂତି, କି ଅପୂର୍ବ ତା'ର ସୁଗନ୍ଧ।

ଭଣ୍ଡ — ତା'ଠୁ ଆହୁରି ଅପୂର୍ବ ଏଇ ରାଜକୁମାରୀ... ସ୍ୱର୍ଗର ଅପସରୀ... ଓଁ ହ୍ଲିଂ କ୍ଲିଂ ସ୍ୱାହା.... (ନାରୀ ମୂର୍ତ୍ତିର ଆବିର୍ଭାବ)

ନାରୀ — ଆସନ୍ତୁ ମହାରାଜ, ଏଇ ଅପୂର୍ବ ପଦ୍ମ ମଧୁର ମନ୍ଦାକିନୀ ପାନ କରି ପରମାନନ୍ଦ ଲାଭ କରନ୍ତୁ। (ପିଇଲେ) ଉପବେଶନ କରନ୍ତୁ, ମୁଁ ଆପଣଙ୍କର ପଦସେବା କରିଦିଏ।

ସଦାନନ୍ଦ — ଆଃ... କି ଅପରୂପ ରୂପ ତୁମର ପ୍ରେୟସି। ଏଇଠି ବସ ମୁଁ ତୁମକୁ ମନଭରି ଦେଖିବାକୁ ଚାହେଁ।

ନାରୀ — ମୁଁ ଆପଣଙ୍କର ମହାରାଣୀ.... ମହାରାଜ ଆପଣଙ୍କ ସେବା ପାଇଁ ସମସ୍ତ ରାତ୍ରି ଅପେକ୍ଷା କରିଛି। ନିଅନ୍ତୁ ପାନ କରନ୍ତୁ, ଅମୃତଧାରା (ପିଆଇଲେ ଓ ସଦାନନ୍ଦ ବେହୋସ ହେଲେ)

ଭଣ୍ଡ — ଓଁ ହ୍ଲିଂ କ୍ଲିଂ ଫଟ୍ ସ୍ୱାହା...

ସଦାନନ୍ଦ — ଏ କ'ଣ ! କ୍ରମେ କ୍ରମେ ଏ ପୃଥିବୀର ଦୃଶ୍ୟ ସବୁ, ଦୃଶ୍ୟାନ୍ତର ହେଉଛି। ମୁଁ ଯେମିତି ଏକ ଭିନ୍ନ ରାଜ୍ୟକୁ ଚାଲିଯାଉଛି। ପ୍ରିୟେ ମୋତେ ଧର, ମୋତେ ସହାୟତ କର...।

ନାରୀ — କିଏ ଆପଣଙ୍କ ପିତା, କ'ଣ ଆପଣଙ୍କ ପରିଚୟ। ପ୍ରକାଶ କରନ୍ତୁ ମହାରାଜ।

ସଦାନନ୍ଦ — (ଧୀରେ) ଏ ରାଜ୍ୟର ସେନାପତି ଧରଣୀଧର ସେନାନାୟକଙ୍କ ମୁଁ ଏକୋଇର ବଳା ବିଶିକେଶନ। (ଆଉଥରେ ପିଆଇଦେଲେ)

ନାରୀ — ଗୁରୁଦେବ ସେନାପତିଙ୍କ ପୁତ୍ର।

ଭଣ୍ଡ — ଚମତ୍କାର... ଏହାକୁ ଘେନିଯାଅ........ (ପ୍ରସ୍ଥାନ ହେଲେ ନାରୀ ଓ ସଦାନନ୍ଦ)। ବାକି ଥିବା ଦୁଇଜଣଙ୍କ ମଧ୍ୟରୁ ଜଣେ ନିଶ୍ଚୟ ରାଜପୁତ୍ର ହୋଇଥିବା ଆବଶ୍ୟକ।

ପ୍ରେମାନନ୍ଦ — ଅତିଥି ମହାଶୟଙ୍କୁ ପ୍ରଣାମ।

ଭଣ୍ଡ — ରାଜ ଚକ୍ରବର୍ତ୍ତୀ ମହାରାଜଙ୍କର ଜୟ ହେଉ।

ପ୍ରେମାନନ୍ଦ — ମହାରାଜ କିଏ ମୁଁ ? କାହିଁକି ବ୍ୟଙ୍ଗ କରୁଛନ୍ତି ବାବା ?

ଭଣ୍ଡ — କ'ଣ କହିଲ ମୁଁ ବ୍ୟଙ୍ଗ କରୁଛି ? ମୋ କଥାରେ ତୁମର ବିଶ୍ୱାସ ନାହିଁ। ଓଁ ହ୍ଲିଂ କ୍ଲିଂ ସ୍ୱାହା.... ନିଅ ଏଇ ରୁଦ୍ରାକ୍ଷ... ଏହା ମୁଁ ବିଭୂତିରୁ ସୃଷ୍ଟି କରିଛି। ଏହାକୁ ବକ୍ଷରେ ଧାରଣ କଲେ ତୁମ୍ଭେ ଖୁବ୍ ଶୀଘ୍ର ମହାରାଜ ହେବ।

ପ୍ରେମାନନ୍ଦ ଏ ଯେ ଅବିଶ୍ୱାସ୍ୟ...।

ଭଣ୍ଡ ମୋର ଦେଇଥିବା ପାତ୍ର କାହିଁ ?

ପ୍ରେମାନନ୍ଦ ତାଙ୍କୁ ମୁଁ ଗୁରୁଦେବଙ୍କୁ ସର୍ମପଣ କରିଥିଲି।

ଭଣ୍ଡ ତୁମ ଗୁରୁଦେବ ତାକୁ ନଷ୍ଟ କରି ଦେଇଛନ୍ତି ନୁହେଁ (ହସିଲେ) ଏମିତି ହେବ ବୋଲି ମୁଁ ଜାଣିଥିଲି। ତେଣୁ ତୁମକୁ ସାଧାରଣ ପାତ୍ରଟିଏ ଦେଇଥିଲି ବତ୍ସ...। ଏଇ ସେହି ଅସାଧାରଣ ପାତ୍ର, ଏହି ପାତ୍ର ହିଁ ତୁମର ମନସ୍କାମନା ପୂର୍ଣ୍ଣ କରିବ। ଓଁ ହ୍ଲିଂ କ୍ଲିଂ ସ୍ୱାହା... (ମନ୍ତ୍ର କଲେ) (ପାତ୍ରରୁ ନାରୀ ବାହାରିଲା) ତୁମେ ମହାରାଜ ହେଲେ ଏହି ଅସାମାନ୍ୟା ରୂପସ୍ୱୀ ତୁମର ମହାରାଣୀ ହେବେ।

ପ୍ରେମାନନ୍ଦ ଆଃ କି ଅପରୂପ ରୂପଲାବଣ୍ୟ। ଏ ମାନବୀ ନା ଅପସରୀ... ? କିଏ ତୁମେ ରମଣୀ....

ନାରୀ ମୁଁ ଆପଣଙ୍କର ସହଧର୍ମିଣୀ ମହାରାଣୀ ପ୍ରେମଶୀଳା... ନିଅନ୍ତୁ ଆନନ୍ଦରେ ଏଇ ପଦ୍ମ ମଧୁ ପାନ କରନ୍ତୁ, ଶୌର୍ଯ୍ୟ ବୀର୍ଯ୍ୟଶାଳୀ ହେବେ ମହାରାଜ (ପିଇଲେ)

ପ୍ରେମାନନ୍ଦ ଏହା ପାନ କଲା ପରେ ମୋ ଚକ୍ଷୁରେ ତୁମର ରୂପ ଆହୁରି ଆକର୍ଷଣୀୟ ହୋଇଉଠୁଛି, ତୁମର ଆଚରଣ ଆହୁରି ଆତ୍ମୀୟ ହୋଇ ଉଠୁଛି। ତୁମର ସୁଗନ୍ଧ ମୋତେ ମତୁଆଲା କରି ତୋଳୁଛି....

ନାରୀ ଆଉ ଥରେ ପାନ କରନ୍ତୁ ମହାରାଜ, ଆପଣଙ୍କର ଚିନ୍ମୟ ଦର୍ଶନ ହେବ। ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଆଦି ସମସ୍ତ ଭୁବନ ନଖ ଦର୍ପଣରେ ଦେଖାଯିବ। (ପିଇଲେ) ମହାରାଜ ଆପଣଙ୍କର ଅତୀତ କ'ଣ ଆପଣ କହିପାରିବେ ?

ପ୍ରେମାନନ୍ଦ ନାଁ... ଗୁରୁଦେବ ଜାଣନ୍ତି। ଉଚିତ୍ ସମୟ ଆସିଲେ ସେ ତାହା ଉନ୍ମୋଚନ କରିବେ...।

ଭଣ୍ଡ ଓଁ ହ୍ଲିଂ କ୍ଲିଂ ସ୍ୱାହା ଫଟ। ନିଅ, ଏହାକୁ ପାନ କର.... ଏ ମୋର ବିଭୂତି (ପାନ କଲେ) କୁହ ତୁମର ପିତା କିଏ ? କହିବାକୁ ଚେଷ୍ଟା କର, ମନେ ପକାଅ।

ପ୍ରେମାନନ୍ଦ ମହାମନ୍ତ୍ରୀଙ୍କର ପୁତ୍ର ମହାଭାଷ୍ୟ.... ମୋ ନାମ....ମାତାଙ୍କ ନାମ।

ଭଣ୍ଡ ମାତୃ ପରିଚୟ ପ୍ରୟୋଜନ ନାହିଁ, ତୁମ ପିତୃ ପରିଚୟ ହିଁ ଯଥେଷ୍ଟ।

ଭଣ୍ଡ ଏଥର ବିଶ୍ରାମ କର ବତ୍ସ....। (ନାରୀକୁ) ତାକୁ ଏଠାରୁ ଅପସାରଣ କର...। ଏବେ ବୁଝୁଛି ୪ର୍ଥ ବ୍ୟକ୍ତିଜଣକ ନିଷ୍ଟୟ ରାଜପୁତ୍ର ହୋଇଥିବେ। ଅତଏବ ପରୀକ୍ଷାର ଆଉ ଆବଶ୍ୟକତା ନାହିଁ।

ନାରୀ କିନ୍ତୁ ଗୁରୁଦେବ। ସେ ଯଦି ଅନ୍ୟ କେହି ହୋଇଥାଆନ୍ତି ?

ଭଣ୍ଡ କ'ଣ କହବାକୁ ଚାହଁ ?

ନାରୀ ଗଙ୍ଗାକୂଳକୁ ଆସି ମଧ ଗଙ୍ଗା ପାଣି ପାନ ନ କଲେ ପୂଣ୍ୟ ମିଳିବ କେମିତି ? ଅତଏବ...

ଭଣ୍ଡ ବୁଝିଗଲି। ଉଚିତ୍ କହିଛୁ, ତେବେ ଯାଅ ଲୁଚିଯାଅ। ପ୍ରସ୍ତୁତ ହୋଇଯାଅ.... ୪ର୍ଥ ଶିଷ୍ୟର ଆସିବା ସମୟ ଉପସ୍ଥିତ... (ପ୍ରସ୍ଥାନ କରିବାକୁ ଗଲା ବେଳେ ସେବାନନ୍ଦ ଦେଖିଦେଇ ଲୁଚିଗଲେ)

ସେବାନନ୍ଦ (ପ୍ରବେଶ) ଅତିଥିଦେବୋ ଭବଃ। ଅତିଥି ଦେବଙ୍କୁ ପ୍ରଣାମ।

ଭଣ୍ଡ ସ୍ୱାଗତମ୍। ମହାମହୀମ ମହାରାଜ.... ଆପଣଙ୍କର ଜୟ ହେଉ।

ସେବାନନ୍ଦ ମହାରାଜ କାହାଁନ୍ତି ବାବାଜୀ....।

ଭଣ୍ଡ ଏଇତ ମୋ ସମ୍ମୁଖରେ। ଏ ରାଜ୍ୟର ଭାବି ମହାରାଜ। ଉପବେଶନ କରନ୍ତୁ ମଣିମା।

ସେବାନନ୍ଦ ଏ କି ଆଶ୍ଚର୍ଯ୍ୟ। ଆପଣ କ'ଣ ଜଣେ ଭବିଷ୍ୟତ ବକ୍ତା ?

ଭଣ୍ଡ କେବଳ ଭବିଷ୍ୟତ ନୁହେଁ ବତ୍ସ। ଅତୀତ, ବର୍ତ୍ତମାନ ଆଉ ଭବିଷ୍ୟତ ସବୁ ମୋର କରାୟତ୍ତ। ଓଁ ହ୍ଲିଂ

| | |
|---|---|
| | କ୍ଲିଂ ଫଟ ସ୍ୱାହା। ଜୟ ମା କାଳୀ, ଖୋଲି ଦେ ୟାର ଭାଗ୍ୟର ଡ଼ୋରୀ। ଓଁ ହ୍ଲିଂ କ୍ଲିଂ ଫଟ। (ଯାଦୁ କଲେ) (ହାତରୁ ବାହାର କଲେ ରତ୍ନ ପଥର)। ଏଇ ନେ ସୂର୍ଯ୍ୟରାଗ ମଣି। ଏହାକୁ ମସ୍ତକରେ ଧାରଣ କଲେ ନିଶ୍ଚୟ ଅବଶ୍ୟ ସମ୍ରାଟ ହେବୁ, ଏହା ସତ୍ୟ ସତ୍ୟ ସତ୍ୟ...। |
| ସେବାନନ୍ଦ | ବାଃ ବାଃ ଚମତ୍କାର...। ସାଧନା ଆପଣଙ୍କର। ମୁଁ ସମ୍ରାଟ ହେଲେ ଆପଣଙ୍କୁ ଏ ରାଜ୍ୟର ମହାମନ୍ତ୍ରୀ ପଦବୀରେ ଅଧିଷ୍ଠିତ କରିବି.... କିନ୍ତୁ... ମହାରାଜ ମୋର ଏକ ବିନୀତ ନିବେଦନ ଅଛି....। |
| ଭଣ୍ଡ | ପ୍ରକାଶ କର..... |
| ସେବାନନ୍ଦ | ମହାରାଜ, ଏଇ ସୂର୍ଯ୍ୟରାଗ ମଣିକୁ ଧାରଣ କଲେ ଯେକୌଣସି ବ୍ୟକ୍ତି କ'ଣ ସମ୍ରାଟ ହୋଇପାରିବେ ? |
| ଭଣ୍ଡ | ଉଚିତ୍ ଜିଜ୍ଞାସା କରିଛ ବତ୍ସ। ଜାଣିରଖ କେବଳ ରାଜବଂଶୀୟମାନେ ହିଁ ଏହାକୁ ଧାରଣ କରିପାରିବେ। ସାଧାରଣ ପ୍ରଜା ଏହାକୁ ସ୍ପର୍ଶ କଲା ମାତ୍ରେ ପ୍ରଳାପ କରିବାକୁ ଆରମ୍ଭ କରିବ। |
| ସେବାନନ୍ଦ | କିନ୍ତୁ ମୁଁ ତ ଜଣେ ସାଧାରଣ ପ୍ରଜା। ମୁଁ ଏହାକୁ ଧାରଣ କରିବି କିପରି ? |
| ଭଣ୍ଡ | ତୁମ୍ଭ ଅତୀତ ତୁମ୍ଭଠାରେ ଅଜ୍ଞାତ... ମୁଁ କିନ୍ତୁ ଦିବ୍ୟଦୃଷ୍ଟିରେ ଦେଖିପାରୁଛି ତୁମେ ଜଣେ ଉଚ୍ଚ ରାଜବଂଶୀୟ। ତୁମ୍ଭେ ହିଁ ଆସନ୍ତା ଦିନର ମହାରାଜ। |
| ସେବାନନ୍ଦ | କିନ୍ତୁ.... |
| ଭଣ୍ଡ | ସନ୍ଦେହ ଥିଲେ ଦୂର କରି ଦେଉଛି। ଓଁ ହ୍ଲିଂ କ୍ଲିଂ ଫଟ ସ୍ୱାହା। ଜୟ ମା କାଳୀ.... (ମନ୍ତ୍ର କଲେ) (ନାରୀ ମୂର୍ତ୍ତିର ଆବିର୍ଭାବ) ଏଇ ଦେଖ ମୋ ବିଭୂତିରୁ ସୃଷ୍ଟ ଅପସରା ପରି ସୁନ୍ଦରୀ ଏଇ ନାରୀ ତୁମ୍ଭର ମହାରାଣୀ ହେବାକୁ ଯୋଗ୍ୟ। ତା ହସ୍ତରୁ ପ୍ରସାଦ ଗ୍ରହଣ କଲେ ନିଜର ଅତୀତ ଓ ଭବିଷ୍ୟତକୁ ସ୍ୱଚକ୍ଷୁରେ ଦର୍ଶନ କରିପାରିବ....'। |
| ନାରୀ | ନିଅନ୍ତୁ ହଜୁର ପାନ କରନ୍ତୁ। ପ୍ରଭୁଙ୍କ ପ୍ରସାଦ ପଦ୍ମ ମଧୁ ମକରନ୍ଦ। |
| ସେବାନନ୍ଦ | ଏ କ'ଣ ସୋମରସ ନା ମଦିରା..... |
| ନାରୀ | ଛି... ଛି... ସେମିତି ଭାବନ୍ତୁ ନାହିଁ ମହାରାଜ। ଏହା ଗୁରୁଦେବଙ୍କର ତପସ୍ୟାର ଫଳ ସ୍ୱର୍ଗୀୟ ବିଭୂତି....। ଅମରାବତୀର ମକରନ୍ଦ...। |
| ସେବାନନ୍ଦ | ବାଃ... ଆହୋ ଭାଗ୍ୟ। ଅମରାବତୀର ଅମୃତ ଅନିନ୍ଦ ସୁନ୍ଦରୀ ଅପସରା ସମ ଦିବ୍ୟନାରୀ ହସ୍ତରୁ ପାନ କରିବାର ସୌଭାଗ୍ୟ ସମସ୍ତଙ୍କୁ କ'ଣ ମିଳେ। ଦିଅ ସୁନ୍ଦରୀ। |
| ନାରୀ | ନିଅନ୍ତୁ। ପାନ କରନ୍ତୁ (ଗ୍ରହଣ କଲେ ଓ କାଶିଲେ)। |
| ସେବାନନ୍ଦ | ସାମାନ୍ୟ ପାଣିର ପ୍ରୟୋଜନ ଅଛି ସୁନ୍ଦରୀ.... (ନାରୀ ପାଣି ପାଇଁ ଗଲାମାତ୍ରେ ସୁରା ଫିଙ୍ଗି ଦେଇ ନିଜେ ସ୍ଥିର ହେଲେ)। |
| ନାରୀ | ନିଅନ୍ତୁ ମହାରାଜ......। |
| ସେବାନନ୍ଦ | ନା..ନା.. ଆଉ ପ୍ରୟୋଜନ ନାହିଁ (ମଦିରା ପିଇବାର ଅଭିନୟ କଲେ)। ଆଃ କି ଅଫୁରନ୍ତ ଆନନ୍ଦ.... ସତେ ବା ସ୍ୱର୍ଗ ସୁଖ ଦର୍ଶନ ଅନୁଭବ ହେଉଛି। ଆଃ କି ଚମତ୍କାର। ଏପରି ପାନୀୟ ତ ପୂର୍ବରୁ କେବେ ପାନ କରିନାହିଁ। ପ୍ରକୃତରେ ଆପଣ ଅତିଥି ରୂପରେ ଭଗବାନ। ଆଉ ଆପଣ ତ ଅତିବ ସୁନ୍ଦରୀ । ଉର୍ବଶୀ କି ମେନକା ହୋଇଥାଇପାରନ୍ତି। ମୁଁ ଅତିବ ଭାଗ୍ୟବାନ... ଆଃ ଏ ସଂସାର ଯେମିତି ମୋ ଚକ୍ଷୁ ସମ୍ମୁଖରୁ ଅର୍ନ୍ତଧାନ ହୋଇଯାଉଛି। ଏ କ'ଣ ମୁଁ କ'ଣ, ଦେଖୁଛି ? |

ନାରୀ — ଆପଣଙ୍କର ଅତୀତ ମହାରଜ.... ଏଥର କୁହନ୍ତୁ ଆପଣ କ'ଣ ଦେଖୁଛନ୍ତି ? ଆପଣଙ୍କର ପିତାମାତା.... ।

ସେବାନନ୍ଦ — ସେମିତି କିଛି ଦୃଶ୍ୟମାନ ହେଉଛି, ମାତ୍ର ସମ୍ପୂର୍ଣ୍ଣଭାବେ ଉଦ୍‌ଭାସିତ ନୁହେଁ।

ନାରୀ — ଏକ ରାଜପ୍ରାସାଦ ଦୃଷ୍ଟିଗୋଚର ହେଉଛି ନିଶ୍ଚୟ।

ସେବାନନ୍ଦ — ହଁ ସମ୍ଭବତଃ ରାଜପ୍ରାସାଦ..... ତାରି ଭିତରେ ସିଂହାସନରେ ଉପବିଷ୍ଟ ଜଣେ ଦେବପ୍ରତୀମ ବ୍ୟକ୍ତି।

ନାରୀ — ଆପଣଙ୍କ ପିତା...... ମହାରାଜ ପ୍ରବୀଣାନନ୍ଦ।

ସେବାନନ୍ଦ — ହଁ ହଁ ଉଚିତ୍ କହିଛନ୍ତି ଏବଂ ତାଙ୍କ ନିକଟରେ ଉପବିଷ୍ଟା ଜଣେ ସୁଦର୍ଶନା ଦେବୀ।

ନାରୀ — ଆପଣଙ୍କ ମାତା ମହାରାଣୀ ପ୍ରତିଜ୍ଞା ମଞ୍ଜରୀ।

ସେବାନନ୍ଦ — ତାଙ୍କ ପାର୍ଶ୍ୱରେ ଜଣେ ବାଳକ, ବେଶ୍ ଡ଼ଉଲ ଡ଼ାଉଲ, କୌତୁକିଆ।

ନାରୀ — ସେ ହିଁ ଆପଣଙ୍କର ବାଲ୍ୟରୂପ । ରାଜକୁମାର..... ।

ଭଣ୍ଡ — ସୌର୍ଯ୍ୟସେଣ......ବାଃ ଚମତ୍କାର। ଯାଅ ଏଥର ବିଶ୍ରାମ କର କାରଣ ଏବେ ତୁମ୍ଭର ଅତୀତର ପୃଷ୍ଠା ଉନ୍ମୋଚିତ ହୋଇଛି। ଆସନ୍ତା କାଲିଠାରୁ ମୁଁ ତୁମ୍ଭର ରାଜ୍ୟାଭିଷେକର ପ୍ରସ୍ତୁତି ଆରମ୍ଭ କରିବି। (ସଂଜ୍ଞାହୀନ ହୋଇପଡ଼ିଲେ)।

ନାରୀ — ଗୁରୁଦେବ ଏ ଯେ ସଂଜ୍ଞାହୀନ....

ଭଣ୍ଡ — ମାୟା.... ଏଇ ଋରିଜଣଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖ। ବିଶେଷତଃ ଏଇ ରାଜକୁମାର ଉପରେ ଆସନ୍ତା କାଲିଠାରୁ ପୂଜା ଆରମ୍ଭ କରି ଏମାନଙ୍କୁ ବଶୀକରଣ ମନ୍ତ୍ରରେ ଆୟତ୍ତ କରିବାକୁ ପଡ଼ିବ। ଆଉ ତିନିଦିନ ପରେ ଅମାବାସ୍ୟା। ସେଇଦିନ ନିଶାର୍ଦ୍ଧରେ ଏମାନଙ୍କୁ ବଳି ପ୍ରଦାନ କରି ମହାକାଳଙ୍କୁ ସନ୍ତୁଷ୍ଟ କଲେ ମୋତେ ତନ୍ତ୍ରର ଚରମ ସିଦ୍ଧି ପ୍ରାପ୍ତ ହେବ। ତା'ପରେ ମୁଁ ହେବି ଏ ରାଜ୍ୟର ରାଜ ରାଜେଶ୍ୱର, ଏହା ହିଁ ମହାମାୟାଙ୍କ ନିର୍ଦ୍ଦେଶ। ଯାଆ....

ନାରୀ — ଗୁରୁଦେବ ତା'ପରେ ମୋତେ ମୁକ୍ତ କରିଦେବ ତ ?

ଭଣ୍ଡ — କାହିଁକି ଏ ପ୍ରଶ୍ନ ? କାହିଁକି ତୁ ମୁକ୍ତି ଋହୁଁଛୁ ?

ନାରୀ — ମୁଁ ମୋ ବାପାମାଙ୍କ ନିକଟକୁ ଫେରିଯିବାକୁ ଋହେଁ ?

ଭଣ୍ଡ — କ'ଣ ଅଛି ସେଠି ?.... ଅନାହାର, ଦାରିଦ୍ର୍ୟ, ଲାଞ୍ଛନା ବ୍ୟତୀତ କ'ଣ ମିଳିବ ତୋତେ ସେଠି ?

ନାରୀ — ସେମାନେ ମୋର ବାପା, ମା। ସେଠି ପରିବାର ଅଛି, ସ୍ନେହ ମମତା ଅଛି।

ଭଣ୍ଡ — ଏଠି ପ୍ରାଚୁର୍ଯ୍ୟ ଅଛି, ସମ୍ଭୋଗ ଅଛି, ଆନନ୍ଦ ଅଛି। ଜୀବନକୁ ମନଭରି ଉପଭୋଗ କରିବାର ସବୁ ସାଧନ ଏଠି ମହଜୁଦ୍ ଅଛି। ଉପଭୋଗ କର, ସେଠି ଯାଇ ପାଇବୁ କ'ଣ ? ଖାଇବାକୁ ଦାନା ନାହିଁ, ପିନ୍ଧିବାକୁ କନା ନାହିଁ, ରହିବାକୁ ବାସଗୃହ ନାହିଁ ବୋଲିତ ସେମାନେ ତୋତେ ବିକ୍ରି କରିଦେଲେ। ସେମାନଙ୍କ ପାଇଁ ତୁ ମରିଛୁ, ପୁଣି ସେଠାକୁ ଫେରିଯିବାକୁ ଋହୁଁଛୁ କାହିଁକି ?

ନାରୀ — ସେଠାରେ ଜୀବନ ଅଛି। ମୁଁ ଜୀବନ ଋହେଁ, ମୁକ୍ତି ଋହେଁ।

ଭଣ୍ଡ — ଠିକ୍ ଅଛି। ମୁଁ ଆଗେ ସିଦ୍ଧିଲାଭ କରିସାରେ। ତା'ପରେ ତୁ ଋହିଁଲେ ତୋତେ ଏ ରାଜ୍ୟର ମହାରାଣୀ କରିଦେବି। ମୋ ସହିତ ରାଜ ଐଶ୍ୱର୍ଯ୍ୟ ଭୋଗ କରିବୁ। ନଚେତ୍ ତୁ ଋହିଁଲେ ତୋତେ ମୁକ୍ତି ଦେଇଦେବି, ପରମ ମୁକ୍ତି। ଯାହା ତୋର ଇଚ୍ଛା। (ହସିଲେ) (ଅନ୍ଧକାର)

**(ସକାଳର ଦୃଶ୍ୟ)**

(ଦେଖାଗଲା ଦୁଇଜଣ ଆଶ୍ରମବାସୀଙ୍କୁ ସେବାନନ୍ଦ କ'ଣ ସବୁ ବୁଝାଇ ଚିଠି ଦେଇ ପଠାଇଲା)

ସେବାନନ୍ଦ — ମନେ ରଖ, ଯଥାଶୀଘ୍ର କାର୍ଯ୍ୟ ସମ୍ପାଦନ କରି ଫେରିବ। ଯାଅ ଯେପରି କେହି ସନ୍ଦେହ ନ କରେ, ଅନ୍ୟ କାହା ହସ୍ତରେ ପତ୍ର ସମର୍ପଣ କରିବ ନାହିଁ। (ସେମାନେ ଚାଲିଗଲେ, ସେବାନନ୍ଦ ବୁଲିଲେ ଓ ଅନ୍ୟ ଜଣକୁ ଡ଼ାକି କ'ଣ ସବୁ କହିଲେ)।

ଆନନ୍ଦ — (ପ୍ରବେଶୀ) ମୋତେ ଡ଼ାକିଲେ ସେବାନନ୍ଦ ? (ଅନ୍ୟମାନେ ପ୍ରବେଶ)।

ସେବାନନ୍ଦ — ତୁମେ ପ୍ରକୃତିସ୍ଥ ହେଲଣି...

ଆନନ୍ଦ — କ୍ଷମା କରିବେ ବନ୍ଧୁ, ଗତକାଲି ରାତିରେ ବାବାଙ୍କର ପ୍ରସାଦ ପାଇବା ପରେ...

ସେବାନନ୍ଦ — ସମସ୍ତଙ୍କର ଅବସ୍ଥା ସେଇଆ। ସେଇଟା ପ୍ରସାଦ ନୁହେଁ ବନ୍ଧୁ, ସୋମରସ, ମଦିରା।

ସଦାନନ୍ଦ — ଆଉ ସେ ଅପରୂପା ନାରୀ..... ସେ କିଏ ?

ପ୍ରେମାନନ୍ଦ — ଅପସରା ପ୍ରତୀମ। ସତେ କି ସ୍ୱର୍ଗର ଉର୍ବଶୀ...।

ସେବାନନ୍ଦ — ମୋହିନୀ କନ୍ୟା। ତୁମ୍ଭକୁ ଅମୃତ ଛଳରେ ପଦ୍ମ ମଧୁ କହି ମଦିରା ସେବନ କରାଇଲେ। କାରଣ ଆସନ୍ତା ଅମାବାସ୍ୟା ତିଥିରେ ତୁମ୍ଭମାନଙ୍କୁ ରାହୁ କେତୁ ଭଳି ଦ୍ୱିଖଣ୍ଡିତ କରି ନିଜେ ଏ ରାଜ୍ୟର ଅଧିଶ୍ୱର ହେବେ।

ସମସ୍ତେ — ମିଥ୍ୟା କଥା। ତୁମ୍ଭେ କେମିତି ଜାଣିଲ ?

ସେବାନନ୍ଦ — କାରଣ ମୋତେ ମଧ ସେମିତି ପ୍ରସାଦ ପାନ କରିବାକୁ ଦିଆଯାଇଥିଲା। କିନ୍ତୁ ମୁଁ ଚଞ୍ଚଳତା କରି ତାକୁ ସେବନ କରିନଥିଲି ଏବଂ ଅଜ୍ଞାନ ହେବାର ଅଭିନୟ କରି ସେମାନଙ୍କ କଥାବାର୍ତ୍ତା ସବୁ ଶୁଣି ପାରିଲି। ତେଣୁ ତୁମ୍ଭମାନଙ୍କୁ ସତର୍କ କରାଇ ଦେଉଛି, ସତର୍କ ରୁହ, ନହେଲେ ଆମ୍ଭ ସମସ୍ତଙ୍କ ଜୀବନ ଯାଇପାରେ। ଆଉ ଆଶ୍ରମ ମଧ ଧ୍ୱଂସ ହୋଇପାରେ। ହଁ ଶୁଣ, ଅନ୍ୟ କେହି ଯେପରି ଏ କଥା ନ ଜାଣନ୍ତି। ନହେଲେ ସମସ୍ତେ ଭୟଭୀତ ହେବେ ଏବଂ ଆମ୍ଭର ଯୋଜନା ମଧ ପଣ୍ଡ ହେବ (ଅନ୍ୟମାନେ ଚାଲିଗଲେ)। ମୁଁ ଯାଏ ମାତାଦେବୀଙ୍କୁ ଏ ସମ୍ବାଦ ଅବିଳମ୍ବେ ଦେବାକୁ ପଡ଼ିବ। (ସେବାନନ୍ଦ ଯିବାକୁ ବାହାରିଲେ ଓ ଦୂରରୁ ମାୟାଧରକୁ ଦେଖି) କିଏ ସେଠି... କିଏ... (ମାୟାଧର ଧାଇଁଲା ଓ ସେବାନନ୍ଦ ଯାଇ ଧରିଲା)। କିଏ ମାୟାଧର ଏମିତି ଲୁଚି ଲୁଚି କ'ଣ ଶୁଣୁଥିଲୁ।

ମାୟାଧର — (ଘୁଙ୍ଗା ଭଳି) କିଛି ନାହିଁ।

ସେବାନନ୍ଦ — ଏଠାକୁ କାହିଁକି ଆସିଥିଲୁ ?

ମାୟାଧର — ମାତାଙ୍କ ପାଖରୁ ଫେରୁଥିଲି।

ସେବାନନ୍ଦ — ତୋତେ କ'ଣ କଥା କହି ଆସେନା....। ମିଥ୍ୟାବାଦୀ। ରାତିରେ ତ ମୋହିନୀ ରାଣି ହୋଇ ବେଶ୍ ପ୍ରେମାଳାପ କରୁଥିଲୁ। ଚାଲ୍ ମାତାଙ୍କ ପାଖକୁ (ଧରିଲେ)।

ମାୟାଧର — (ପାଟିକରି) ଆଃ ମୋତେ ଛାଡ଼ିଦିଅ.... (ଧାଇଲା) (ରାସ୍ତାରେ ମାତାଙ୍କୁ ଦେଖି) ମାତା ରକ୍ଷା କରନ୍ତୁ ମାତା।

ସେବାନନ୍ଦ — ଦେଖନ୍ତୁ ମାତା....

ମାତା — ମୁଁ ସବୁ ଜାଣେ ପୁତ୍ର। ଆଜି ପ୍ରତ୍ୟୁଷରେ ମାୟା ଆସି ମୋତେ ସବୁ କଥା କହିସାରିଛି।

ସେବାନନ୍ଦ — ଗୁରୁଦେବଙ୍କୁ ଯଥାଶୀଘ୍ର ସୂଚନା ଦେବା ପ୍ରୟୋଜନ ନୁହେଁ କି ?

ମାତା — ଗୁରୁଦେବ ତ ତୀର୍ଥାଟନରେ ଯାଇଛନ୍ତି ତାଙ୍କୁ ପାଇବ କେଉଁଠି ପୁତ୍ର। ବରଂ ନିଜେ ଏ ସମସ୍ୟାର

ସମ୍ମୁଖୀନ ହୁଅ। ଏହା ତ ତୁମର ବ୍ୟକ୍ତିତ୍ୱର ପରାକାଷ୍ଠା ଦେଖାଇବା ପାଇଁ ଉଚିତ୍ ସମୟ।

ମାୟା — ଉଚିତ୍ କହିଛନ୍ତି ମାତା। କଣ୍ଟାକୁ କଣ୍ଟା ହୋଇ ବାହାର କରିବା ଦରକାର।

ଆନନ୍ଦ — କିନ୍ତୁ ଅତିଥିଙ୍କୁ ହତ୍ୟା କରିବା ଶାସ୍ତ୍ର ବିରୁଦ୍ଧ।

ମାୟା — ବନ୍ଦୀ କରିବା...।

ସେବାନନ୍ଦ — ସେ ଖୁବ୍ ଶକ୍ତିଶାଳୀ ଏବଂ ଛଳନାମୟ, ପ୍ରବଞ୍ଚକ। ତାଙ୍କୁ ଆୟତ୍ତ କରିବା ପାଇଁ ବୁଦ୍ଧି ଓ ଯୋଜନାର ଆବଶ୍ୟକତା ଅଛି।

ମାୟା — ସମସ୍ତେ ମିଳିମିଶି ଯୋଜନା କଲେ ନିଶ୍ଚୟ ସମ୍ଭବ।

ମାତା — ଏକତା ହିଁ ବଳ। ଏ କଥା ପ୍ରମାଣ କରି ଦଖାଇବାକୁ ପଡ଼ିବ (ମାୟାକୁ) ଯାଅ ମାୟା ଆମର ଯୋଜନା ଅନୁସାରେ ତୁମ୍ଭେ ଗୁରୁସେବା କର ଓ ସତର୍କତା ସହ ଆମ୍ଭଙ୍କୁ ସୂଚନା ପ୍ରଦାନ କର। ଯାଅ (ମାୟା ପ୍ରସ୍ଥାନ)।

ସେବାନନ୍ଦ — ମାୟାଧର ସହିତ କ'ଣ ଆଲୋଚନା କଲେ ମାତା।

ମାତା — ସେ ମାୟାଧର ନୁହେଁ, ମାୟା। ସେ ତା'ର ସମସ୍ତ କାହାଣୀ ମୋତେ କହି ସାରିଛି। ସେ ଆମକୁ ଭଣ୍ଡ ବାବାଜୀର ସମସ୍ତ କାର୍ଯ୍ୟକଳାପ ଗୋପନୀୟ ଭାବେ ସୂଚନା ଦେବ ଏବଂ ଆମେ ସେହି ଅନୁସାରେ ଯୋଜନାବଦ୍ଧ ଭାବେ ତା'ର ପ୍ରତିରୋଧ କରିବା।

ସେବାନନ୍ଦ — କିନ୍ତୁ ମାତା ମନେ ରଖନ୍ତୁ, ସେ ଜଣେ ମାୟାବୀ।

ମାତା — ମନେ ରଖିଲି ବତ୍ସ। ସାହସ ଓ ବୁଦ୍ଧିର ସହିତ ଆମକୁ ସମସ୍ୟାର ସମାଧାନ କରବାକୁ ହେବ।

ସେବାନନ୍ଦ — ମାତା! ଆପଣଙ୍କ ସହ ପରାମର୍ଶ ନ କରି ମୁଁ ଏକ ଗର୍ହିତ କାର୍ଯ୍ୟ କରିସାରିଛି। ଦୁଇଜଣ ବାଳକ ଶିଷ୍ୟଙ୍କୁ ପତ୍ର ଦେଇ...

ମାତା — ଜାଣେ....। ମୋରି ଇଙ୍ଗିତରେ ହିଁ ସେମାନେ ତୁମ୍ଭ ନିକଟକୁ ଆସିଥିଲେ। ତୁମ୍ଭେ ଉଚିତ୍ କାର୍ଯ୍ୟ କରିଛ.. ଯାଅ ଭବିଷ୍ୟତ ପାଇଁ ପ୍ରସ୍ତୁତ ରୁହ। (ରାତ୍ରି)

**(ଭଣ୍ଡ ବାବା ମଦିରା ସେବନ କରି ଡ଼ମ୍ବରୁ ବଜାଇ ନାଚୁଛନ୍ତି । ଶିଷ୍ୟ ୪ ଜଣ ବନ୍ଦୀ ହୋଇ ମଦିରାଶକ୍ତର ଅଭିନୟ କରୁଛନ୍ତି ।)**

ଭଣ୍ଡ — ମାୟା। ମୋର ପୂଜା ସମାପ୍ତ, କ୍ରିୟା ମଧ୍ୟ ସମାପ୍ତ। ନେ, ସେମାନଙ୍କ ବେକରେ ମନ୍ଦାର ଫୁଲର ମାଳ ପିନ୍ଧାଇଦେ। (ମାୟା ପିନ୍ଧାଇଲା) ଓଁ ହ୍ଲିଂ କ୍ଲିଂ ଫଟ ସ୍ୱାହା। ଦେ ମୋ ଖଡ଼୍‌ଗ ଦେ।

ନାରୀ — ଦେଉଛି ଗୁରୁଦେବ.... (ଶିଷ୍ୟମାନଙ୍କୁ) ଆପଣମାନେ ପ୍ରସ୍ତୁତ ରୁହନ୍ତୁ। ବାବାଙ୍କର ମଦିରାରେ ନିଶାର ମିଶ୍ରଣ କରିସାରିଛି।

ସେବାନନ୍ଦ — ଆମେ ମଧ୍ୟ ପ୍ରସ୍ତୁତ.... ସଦାନନ୍ଦ....

ସଦାନନ୍ଦ — ଠିକ୍ ଅଛି। ଆନନ୍ଦ...

ଆନନ୍ଦ — ଚିନ୍ତା କରନାହିଁ। ମୁଁ ସଜାଗ ରହିଛି।

ନାରୀ — ନିଅନ୍ତୁ ବାବା ଖଡ଼୍‌ଗ। (ବାବା ଖଡ଼୍‌ଗ ଧାରଣ କଲେ, ମାରିବାକୁ ଉଦ୍ୟତ । ଶିଷ୍ୟମାନେ ଧରିନେଲେ । ନାରୀ ଶଙ୍ଖ ବଜାଇଲେ। ବାହାରୁ ମଧ୍ୟ ଶଙ୍ଖନାଦ ହେଲା। ପ୍ରବେଶ କଲେ ରାଜା, ମନ୍ତ୍ରୀ, ସେନାପତି ଓ ଗୁରୁଦେବ ଓ ମାତା)।

ସେବାନନ୍ଦ — ଆସନ୍ତୁ ଗୁରୁଦେବ, ଆସନ୍ତୁ ମାତେ। ମହାରାଜାଙ୍କ ଜୟ ହେଉ।

ଗୁରୁଦେବ — ତନ୍ତ୍ର ମନ୍ତ୍ର ନାମରେ ତୁମର ସବୁ ଭଣ୍ଡାମୀର ଏଇଠି ସମାପ୍ତି ହେଲା। ଭଣ୍ଡ ବାବାଜୀ, ବିଛାମନ୍ତ୍ର ନ ଜାଣି ସାପ ସହିତ ଖେଳିଲେ ଏମିତି ଅବସ୍ଥା ହୁଏ। ସାଧନା କରିବାର ଇଚ୍ଛା ଥିଲେ ଆଗେ କାୟା ଶୁଦ୍ଧି କର, ଆତ୍ମଶୁଦ୍ଧି କର। ନିଜର ସମସ୍ତ ଅହଂ ଆଉ ଶାରୀରିକ କ୍ଷୁଧାକୁ ଜଳାଞ୍ଜଳି ଦିଅ। ତା'ପରେ ପରଂବ୍ରହ୍ମର ସନ୍ଧାନ ପାଇବ। ଅହଂକାରକୁ ମାର୍ଗ କରି ପରମ ତତ୍ତ୍ୱର ଦର୍ଶନ କରିବା ଏକାନ୍ତ ଅସମ୍ଭବ। ସମର୍ପଣ ହିଁ ସାଧନାର ଏକମାତ୍ର ରାସ୍ତା। ଯାଅ, ଏଥର ମହାରାଜ ଆପଣଙ୍କର ବିଚାର କରିବେ।

ମହାରାଜ — ସେନାପତି ତାଙ୍କୁ ବନ୍ଦୀ କରି ରାଜ ଦରବାରକୁ ଘେନି ଚାଲନ୍ତୁ। ମହାମନ୍ତ୍ରୀ ଏଠାକାର ସମସ୍ତ କାର୍ଯ୍ୟକୁ ତନ୍ନ ତନ୍ନ କରି ବିଚାର କରି ରାଜଦରବାରରେ ତର୍କର ଉପସ୍ଥାପନା କରନ୍ତୁ।

ନାରୀ — ମାତା ମୋର ବିଚାର ଆପଣ କରନ୍ତୁ ମାତା।

ମାତା — ଗୁରୁଦେବ। ଏଇ ପାଶାଣ୍ଡ ନିଜର ଅର୍ଥ ଓ କୁହୁକର ଭୟ ଦେଖାଇ ଏହାର ପିତାମାତାଙ୍କ ଠାରୁ ଏହାକୁ କ୍ରୟ କରି ଏହିପରି ହୀନ କାର୍ଯ୍ୟରେ ନିଯୁକ୍ତ କରିଥିଲା ଏବଂ ଆଦେଶ ଅମାନ୍ୟ କଲେ ମୃତ୍ୟୁର ଭୟ ଦେଖାଉଥିଲା। ଏବେ ସେ ମୁକ୍ତି ଚାହେଁ।

ମନ୍ତ୍ରୀ — ସେ ଯେ ଦୋଷମୁକ୍ତ ତା'ର ପ୍ରମାଣ ?

ସେନାପତି — ସେ ରାଜଦଣ୍ଡ ଭୟରେ ମିଥ୍ୟା କାହାଣୀ କହୁଥାଇ ପାରେ।

ମାତା — ସେ ହିଁ ପ୍ରଥମେ ଭଣ୍ଡ ବାବାଜୀର ସମସ୍ତ ଗୋପନ ତଥ୍ୟ ମୋ ନିକଟରେ ପ୍ରକାଶ କରିଥିଲା।

ସେନାପତି — ମୁଁ ଆପଣଙ୍କ ନିକଟକୁ ସାହାଯ୍ୟ ପାଇଁ ପତ୍ର ଲେଖିଥିଲି ସତ୍ୟ। ମାତ୍ର କାପାଳିକଙ୍କ ନିକଟରୁ ମୁକ୍ତି ପାଇବା ପାଇଁ ସେହି ସବୁ ସୂଚନା ପ୍ରଦାନ କରି ଆମର ସହାୟତା କରିଥିଲା। ନ ହେଲେ ଆମେ ହୁଏତ ବପଦରେ ପଡ଼ିଥାନ୍ତୁ।

ରାଜା — ତୁମେ କ'ଣ ଚାହଁ ବାଳିକା ?

ନାରୀ — ପିତାମାତାଙ୍କ ନିକଟକୁ ଫେରିଯିବାକୁ ଚାହେଁ, ମୁକ୍ତି ଚାହେଁ।

ରାଜା — ତଥାସ୍ତୁ, ତୁମକୁ ମୁକ୍ତ କରାଗଲା।

ଗୁରୁଦେବ — ନା ମହାରାଜ...ଏଭଳି କନ୍ୟାମାନଙ୍କୁ ଆପଣ ମୁକ୍ତ କରିଦେଲେ ମଧ୍ୟ ସେମାନେ ମୁକ୍ତ ହୋଇପାରିବେ ନାହିଁ, ବରଂ ସେମାନଙ୍କର ପରିବାରର ଦାରିଦ୍ର୍ୟ ସେମାନଙ୍କୁ ପୁଣି ବିକ୍ରୟ କରିବ, ପୁଣି ଅର୍ଥର ପ୍ରଭାବରେ ସେମାନେ ଅନ୍ୟ କାହାର ବନ୍ଦୀ ହେବେ, କ୍ରିତଦାସର ଏହି ଜଘନ୍ୟ ପ୍ରଥାରୁ ଯଦି ଆପଣ ତାକୁ ମୁକ୍ତ କରିବାକୁ ଚାହାଁନ୍ତି, ତାହେଲେ ନାରୀ ଆଉ କନ୍ୟାମାନଙ୍କ ପାଇଁ ଏହିଭଳି ଆଶ୍ରମ ପ୍ରତିଷ୍ଠା କରି ଯଥାଯୋଗ୍ୟ ଶିକ୍ଷା ପ୍ରଦାନ କରି ସେମାନଙ୍କୁ ଶିକ୍ଷିତ କରାନ୍ତୁ। ତାହେଲେ ହିଁ ସେମାନେ ଶିକ୍ଷିତ ହୋଇ ଦାସତ୍ୱରୁ ମୁକ୍ତି ପାଇବେ, ଦାରିଦ୍ର୍ୟରୁ ମୁକ୍ତି ପାଇବେ, ସାମାଜିକ ମୁକ୍ତି ପାଇବେ ଓ ସ୍ୱାବଲମ୍ବୀ ହେବେ।

ରାଜା — ଉଚିତ୍ କହିଛନ୍ତି ଗୁରୁଦେବ। ମହାମନ୍ତ୍ରୀ ରାଜ୍ୟରେ ଏଭଳି ଭଣ୍ଡବାବାମାନଙ୍କୁ ଖୋଜି ସମସ୍ତଙ୍କୁ ବନ୍ଦୀ କରି ରାଜ ଦରବାରରେ ଉପସ୍ଥିତ କରାଅ। ରାଜ୍ୟରେ ବିଭିନ୍ନ ସ୍ଥାନରେ ନାରୀ ଶିକ୍ଷାର ଆଶ୍ରମମାନ ନିର୍ମାଣ କରି ରାଜ୍ୟର ଦାୟତ୍ୱରେ ସେମାନଙ୍କ ଶିକ୍ଷା ଦୀକ୍ଷା ଓ ନିଯୁକ୍ତିର ବ୍ୟବସ୍ଥା କରିବାର ଯୋଜନା ପ୍ରସ୍ତୁତ କରନ୍ତୁ।

ମହାମନ୍ତ୍ରୀ ମହାରାଜଙ୍କର ଜୟ ହେଉ।

ସେବାନନ୍ଦ ଗୁରୁଦେବଙ୍କର ଜୟ ହେଉ।

ଗୁରୁଦେବ ମନେ ରଖ ଶିଷ୍ୟଗଣ। ଜୀବନରେ ଏହି ଗଳି ପଥ ହିଁ ଦିନେ ଅର୍ଗଳି ହୋଇ ଦେଖାଦିଏ। ତେଣୁ କେବେ କେଉଁ ପରିସ୍ଥିତିରେ ମଧ୍ୟ କୌଣସି ଗଳି ପଥରେ ପଶିବ ନାହିଁ। ଆଉ ଥରେ ପଶିଲେ ଅର୍ଗଳିରେ ଛନ୍ଦି ହୋଇ ଆଜୀବନ ଯନ୍ତ୍ରଣା ଭୋଗିବା ହିଁ ସାର ହେବ।

(ପ୍ରଥମ ଦୃଶ୍ୟକୁ ପ୍ରତ୍ୟାବର୍ତ୍ତନ)

ମାଧିଆ ବୁଝିଲୁ ବସନ୍ତ ଆଜି କାଲି ପାଠ ଶାଠ ପଢି ତୋ'ରି ଭଳି ଅନେକ ଲୋକ ଅନ୍ଧ ବିଶ୍ୱାସ, ଯାଦୁମନ୍ତ୍ର, ଚମତ୍କାରିତାକୁ ବିଶ୍ୱାସ କରି ସାରା ଜୀବନ ନିଜେ କଷ୍ଟ ପାଉଛନ୍ତି ଓ ପରିବାରକୁ କଷ୍ଟ ଦେଇ ଚାଲିଛନ୍ତି। ଏମିତି ଭଣ୍ଡବାବାଙ୍କ ପାଲରେ ପଡ଼ି ଅନ୍ଧବିଶ୍ୱାସର ଜାଲରେ ଛନ୍ଦି ହୋଇ ନରବଳୀର ସାହାଯ୍ୟ ନେଇ ଆଜୀବନ ଜେଲ୍‌ରେ ମରୁଛନ୍ତି। ମୋ କଥା ମାନ୍, ବିଶେଷଜ୍ଞ ଡ଼ାକ୍ତରଙ୍କ ପରାମର୍ଶ ନେଇ ଚିକିତ୍ସା କର। ପଇସା ପତ୍ର କଥା ଗାଁ ବୈଠକ ଡ଼ାକି ଆଲୋଚନା କରିବା।

ବସନ୍ତ ତୁ ଠିକ୍ କହିଛୁ ମାଧିଆ। ମୁଁ ଆଜି କଟକ ଯିବି ଏବଂ ମୋର ସେଇ କିନ୍ନର ଭାଇମାନଙ୍କୁ ମଧ୍ୟ କଟକ ବଡ଼ ଡ଼ାକ୍ତରଖାନା ଯାଇ ଡ଼ାକ୍ତରଙ୍କ ପରାମର୍ଶ ନେବାକୁ ପରାମର୍ଶ ଦେବି।

ମାଧିଆ ତୁ କଟକ ଯାଆ, ମୁଁ ବିଲକୁ ଚାଲିଲି।

(ଗୀତ ଗାଇ ପ୍ରସ୍ଥାନ)

◆◆◆

# ଶୂନ୍ୟରୁ ଶୂନ୍ୟକୁ

## ଚରିତ୍ରମାନେ

| | | |
|---|---|---|
| ଅମର | - | ବୈଜ୍ଞାନିକ ଡାକ୍ତର |
| ଅଳସୀ | - | ଅମରଙ୍କ ସ୍ତ୍ରୀ |
| ନର୍ତ୍ତକୀ | - | କୋଣାର୍କର ଭଙ୍ଗା ପଥରର ନର୍ତ୍ତକୀ ମୂର୍ତ୍ତି |
| ମାଆ | - | ଅମରଙ୍କ ମାଆ |
| ଚାନ୍ଦିନୀ | - | ଅମରଙ୍କ ପ୍ରେମିକା |

# ଶୂନ୍ୟରୁ ଶୂନ୍ୟକୁ

## ପ୍ରଥମ ଦୃଶ୍ୟ

(ପରଦା ଉଠିଲା ବେଳକୁ ଦେଖାଗଲା ଚନ୍ଦ୍ରଭାଗା ବେଳାଭୂମିର ଦୃଶ୍ୟ । ଥୁଣ୍ଟା ମଲା ଝାଉଁ ଗଛଟିଏ । ରାତ୍ରିର ଅନ୍ଧକାର ମଧରେ ଜଣେ ୬୦ ବର୍ଷର ବୃଦ୍ଧ ଆସି ଠିଆହେଲେ । ବେଳାଭୂମିକୁ ଚାହିଁ ସେ ଯେମିତି ନିଜର ଅତୀତର ସ୍ମୃତି ସବୁକୁ ଖୋଜୁଥିଲେ ।)

ଅମର — ଆହା.... ଧନ୍ୟ ଚନ୍ଦ୍ରଭାଗା । ଧନ୍ୟ ତୁମର ଏଇ ବେଳାଭୂମି । ଧନ୍ୟ ମୁଁ ହତଭାଗ୍ୟ ଆଉ ଧନ୍ୟ ମୋର ଅତୀତର ପୃଷ୍ଠାସବୁ । ତୋର ଆଉ ମୋର ସମ୍ପର୍କ ଦୀର୍ଘ ୬୦ ବର୍ଷର ପୁରୁଣା କାହାଣୀ । ପିଲା ଥିଲି, ତୋର ଏଇ ବେଳାଭୂମିରେ ଧୂଳିଖେଳ ଶିଖିଥିଲି । ବିଶ୍ୱବିଖ୍ୟାତ କୋଣାର୍କକୁ ଦେଖି ନାଚିବାକୁ ଇଚ୍ଛା କଲି । ହେଲେ ନାଚିପାରିଲି ନାହିଁ । ପାଠ ପଢୁପଢୁ ଡାକ୍ତର ହୋଇଗଲି । ଧର୍ମପଦ ଭଳି ନିଜେ ଜୀବନରେ କିଛି କୀର୍ତ୍ତିମାନ ସ୍ଥାପନ କରିବାର ନିଶାରେ ଆମେରିକା ଚାଲିଗଲି ଆଉ ସେଠି ମଧ ଗବେଷଣାଗାର ଭିତରେ ବୁଡ଼ିରହି ମଝିରେ ମଝିରେ ତୋତେ ମନେ ପକାଇଲି । ଆମେରିକାର ଜଣେ ନର୍ତ୍ତକୀକୁ ବାହା ହେଲି ଆଉ ତା'ର ଶ୍ରଦ୍ଧା ନାଁ ଦେଲି ଅଳସୀ । ତାକୁ ଓଡ଼ିଶୀ ନାଚ ଶିଖାଇଲି । ତାରି ନୁପୂରର ଛନ୍ଦରେ ମୁଁ ତୋତେ ହିଁ ଖୋଜିଲି ଆଉ ତୋତେ ହିଁ ଦେଖିଲି।

ପ୍ରଥମ ପ୍ରଥମ ପ୍ରେମ ଆମର ଥିଲା ତୋରି ଏଇ ସମୁଦ୍ରର ଢେଉ ଭଳି ଉଚ୍ଛଳ, ଉତ୍ତାଳ । ସବୁ କିଛି ଠିକ୍‌ଠାକ୍ ଥିଲା ପ୍ରଥମ କିଛି ବର୍ଷ । ତା'ପରେ ତୋରି ଚୋରାବାଲିରେ ଅନେକଙ୍କ ପାଦ ଖସିଗଲା ପରି ଆମେରିକାର ପ୍ରାଚୁର୍ଯ୍ୟ ଭିତରେ ଆମର ପ୍ରେମ ବି ହଜିଗଲା । ଅଳସୀ, ପତ୍ନୀ ମୋର ବିଳାସୀ ହୋଇ ଉଠିଲା ଭିନ୍ନଭିନ୍ନ ମଣିଷକୁ ଆପଣାର କରି । ଅଥଚ ମୁଁ ଫେରିଆସିଲି ତୋରି କୋଳକୁ ରିକ୍ତ ହସ୍ତରେ ଏକପ୍ରକାର ନିଃସ୍ୱ ହୋଇ ।

ସେତେବେଳକୁ ମୋ ଦେହର ଯୌବନ ବି ଶ୍ରୀହୀନ ହୋଇ ଯାଇଥିଲା । ମନ ମଧ ଏକପ୍ରକାର ସନ୍ନ୍ୟାସ ନେଇ ସାରିଥିଲା ।

(ବାଲିରେ ଚାଲୁ ଚାଲୁ ଝୁଣ୍ଟି ପଡ଼ିଲେ) ଆଃ....।

(ଖୋଜି ଦେଖିଲେ) ବାଲି ଭିତରେ ପଥରମୂର୍ତ୍ତି । ଏ ବୋଧହୁଏ କୋଣାର୍କ ଗାତ୍ରରୁ ଖସିପଡ଼ିଥିବା ଅଳସୀ କନ୍ୟାର ଭଗ୍ନମୂର୍ତ୍ତି ହୋଇ ଥାଇପାରେ। (ଝାଡ଼ିଝୁଡ଼ି ଦେଲେ) ଜୀବନ୍ତ ହୋଇଯାଆନ୍ତା କି ମୂର୍ତ୍ତିଟା । ଅତୀତର ହଜିଗଲା ସ୍ମୃତିସବୁ କଥାରେ କଥାରେ ଜୀବନ୍ତ ହୋଇଉଠନ୍ତା ପୁଣି ଥରେ । (ମୂର୍ତ୍ତିଟି ଅନ୍ତର୍ଦ୍ଧାନ ହୋଇଗଲା ଓ ହସ ଶୁଭିଲା) ଏ ତ ମୋରି ଅଳସୀର ହସ ଭଳି.... କିଏ ତୁମେ ? କେଉଁଠି ?

ଅଳସୀ — ମୁଁ ତ ଏଇଠି....

ଅମର — ମୋ ସାମନାକୁ ଆସୁନ କାହିଁକି ?

ଅଳସୀ — କାହିଁକି ?

ଅମର — ମୁଁ ତୁମକୁ ଦେଖିବାକୁ ଚାହେଁ ।

ଅଳସୀ — କ'ଣ ପାଇଁ ମୋତେ ଏବେ ଦେଖିବାକୁ ଚାହାଁନ୍ତି ?

| | |
|---|---|
| ଅମର | ମୁଁ..... ମୁଁ..... ତୁମକୁ..... |
| ଅଳସୀ | ନୀରବ ରହିଗଲେ କାହିଁକି ? |
| ଅମର | ନା ଥାଉ । ମୁଁ ବୋଧହୁଏ ସମସ୍ତଙ୍କୁ ଅଳସୀ ବୋଲି ଭାବି ଦେଉଛି । ଆଉ ଦୁଃଖ ପାଉଛି । |
| ଅଳସୀ | କେଉଁ ଅଳସୀ କଥା କହୁଛନ୍ତି ଆପଣ ? ଯିଏ ଆମେରିକାରେ ହଜିଯାଇଥିଲା ? |
| ଅମର | ତୁମେ କେମିତି ଜାଣିଲ ? |
| ଅଳସୀ | ଏଇନେ ତ ଆପଣ କହୁଥିଲେ । |
| ଅମର | ହଁ କହୁଥିଲି । ମନେ ମନେ କହୁଥିଲି । |
| ଅଳସୀ | ଆମେରିକାରେ ହଜିଯାଇଥିବା ବସ୍ତୁ ଚନ୍ଦ୍ରଭାଗା କୂଳକୁ ଆସିବ କେମିତି ? |
| ଅମର | ବସ୍ତୁ ନୁହେଁ ମଣିଷ । ନାରୀ.... |
| ଅଳସୀ | ବସ୍ତୁବାଦୀ ଦୁନିଆରେ ସମସ୍ତେ ବସ୍ତୁ । ମଣିଷ, ନାରୀ, ପ୍ରେମ, ସ୍ନେହ, ମାୟା, ମମତା – ସମସ୍ତେ ଗୋଟିଏ ଗୋଟିଏ ବସ୍ତୁ । ଅନ୍ତତଃ ତୁମ ପାଇଁ । |
| ଅମର | ଏ କଥା ତୁମେ କହୁଛ ? ପୁଣି ମୋତେ ? ତୁମ ମୁହଁରୁ ଏକଥା ସବୁ ଶୁଣିବାକୁ ଭଲ ଲାଗୁନି । |
| ଅଳସୀ | ଛାଡ଼ନ୍ତୁ ସେ କଥା । ଏଥର କହନ୍ତୁ ଆପଣ ମୋତେ କାହିଁକି ଖୋଜୁଛନ୍ତି ? |
| ଅମର | ନାଇଁ ଏମିତି ଟିକିଏ ଦେଖିବାକୁ ଚାହୁଁଛି । |
| ଅଳସୀ | ମିଛ କଥା ? ମୋ ଠାରୁ ହୁଏତ ଆଉ କିଛି ପାଇବାକୁ ଆଶା ରଖିଛନ୍ତି ଆପଣ ? |
| ଅମର | (ନୀରବ) |
| ଅଳସୀ | ନୀରବ ରହିଲେ କାହିଁକି ? |
| ଅମର | କ'ଣ କହିବି ? ମରୀଚିକା ପାଖରୁ ପାଣିର ଆଶା ରଖିବା ନିରର୍ଥକ, ମୂର୍ଖତା । |
| ଅଳସୀ | ତଥାପି ମୋ ଭିତରେ ଆପଣା ମନର ପ୍ରିୟତମା ଅଳସୀକୁ ଆପଣ ଏକାନ୍ତରେ ଖୋଜୁନାହାନ୍ତି ତ ? |
| ଅମର | ଖୋଜିଲେ କ'ଣ ସେ ମିଳିଯିବ । |
| ଅଳସୀ | ହୁଏତ ବା ମିଳିଯାଇପାରେ । |
| ଅମର | କେମିତି ? |
| ଅଳସୀ | ଆଖି ବନ୍ଦ କରନ୍ତୁ । (ଅମର ଆଖି ବନ୍ଦ କଲେ) |
| ଅଳସୀ | ଏଥର ଆଖି ଖୋଲନ୍ତୁ । ଆଉ କୁହନ୍ତୁ ମୁଁ କ'ଣ ସିଏ ? |
| ଅମର | (ନିରେଖି ଦେଖିଲେ) ହୁଏତ ବା ହୋଇଥିବ ମୁଁ କିନ୍ତୁ ସଠିକ୍ ଭାବେ କହିପାରିବି ନାହିଁ । |
| ଅଳସୀ | ଏତେ ସନ୍ଦେହ କାହିଁକି ? ମୋ ପାଦରେ ତ ସେମିତି ଅଳତାର ଗାର । |
| ଅମର | ଆମ ଓଡ଼ିଶାର ସବୁ ଝିଅ ଅଳତା ନାଇବାକୁ ଭଲ ପାଆନ୍ତି । |
| ଅଳସୀ | ମୋ ପାଦରେ ରୁଣୁଝୁଣୁ ନୂପୁରର ଶବ୍ଦ । |
| ଅମର | ସବୁ ନର୍ତ୍ତକୀ ପିନ୍ଧନ୍ତି । |
| ଅଳସୀ | ମୋ ଦେହରେ.... |
| ଅମର | ଅପରୂପ ଅଙ୍ଗସୌଷ୍ଠଭ । ସବୁ ନାରୀର ଶରୀର ସେଇ ଏକା ଉପାଦାନ ନେଇ ଗଢା । |
| ଅଳସୀ | ମୋ ଆଖିରେ ଆକାଶର ନୀଳିମା । |
| ଅମର | ରୂପସୀଙ୍କ ଆଖିର ସେଇ କଜ୍ଜଳର କାଳିମା ବହୁ ସୁପୁରୁଷଙ୍କୁ କଳଙ୍କିତ କରାଏ । ପଥଭ୍ରଷ୍ଟ କରାଏ । |
| ଅଳସୀ | ତଥାପି ମୁଁ ତୁମର ପ୍ରେୟସୀ, ତୁମ ମନର, ହୃଦୟର ଇତ୍ୟାଦି ଇତ୍ୟାଦି । ନା କ'ଣ କହୁଛନ୍ତି ? |
| ଅମର | କେଜାଣି ହୋଇଥାଇପାରେ । ହୁଏତ ବା ମୁଁ ଭୁଲ୍ ଦେଖୁଛି ବା ଭୁଲ୍ କହୁଛି । |

ଅଳସୀ	ଅଥଚ ତୁମେ ବୃଦ୍ଧ ଆଉ ମୁଁ ଯୁବତୀ...
ଅମର	ଅନେକ ସମୟରେ ଶରୀର ବୃଦ୍ଧ ହୋଇଯାଇଥିଲେ ମଧ୍ୟ ମନ ଅକ୍ଷତ ରହିଥାଏ ।
ଅଳସୀ	(ହସି) କଣ କହିଲେ ମନ.... ମନ ? ସେ କିଏ, କେମିତି ତା ରୂପ, ଦେଖିଛନ୍ତି କେବେ ତାକୁ । ଦେଖେଇ ପାରିବ ମୋତେ ତା'ର ସ୍ୱରୂପ ?
ଅମର	କିନ୍ତୁ କହିପାରିବି, ବର୍ଣ୍ଣନା କରିପାରିବି ମୋର ମନର କଥା ସବୁ ତୁମକୁ ଗୋଟି ଗୋଟି କରି.... ଶୁଣିବ ?
ଅଳସୀ	ମୁଁ ଯଦି ସେ ସବୁକୁ ବିଶ୍ୱାସ ନ କରେ ।
ଅମର	ତୁମର କିନ୍ତୁ ବିଶ୍ୱାସ କରିବା ଉଚିତ ।
ଅଳସୀ	କାହିଁକି ବିଶ୍ୱାସ କରିବି ?
ଅମର	କାହିଁକି ବିଶ୍ୱାସ କରିବ ନାହିଁ ଶୁଣେ ?
ଅଳସୀ	ବିଶ୍ୱାସରୁ ହିଁ ପ୍ରତାରଣାର ଜନ୍ମ । ଅବିଶ୍ୱାସର ସୃଷ୍ଟି ।
ଅମର	ବିଶ୍ୱାସଘାତକର ମଧ୍ୟ..... ତଥାପି ବିଶ୍ୱାସ କରିବାକୁ ହୁଏ ।
ଅଳସୀ	କାହିଁକି ?
ଅମର	ବଞ୍ଚିବାକୁ ହେଲେ ସ୍ୱପ୍ନ ଦେଖିବା ଦରକାର, ସ୍ୱପ୍ନ ଦେଖିବାର ଅର୍ଥ ଭଲ ପାଇବା ଆଉ ଭଲ ପାଇବାକୁ ହେଲେ ବିଶ୍ୱାସ କରିବା ଏକାନ୍ତ ଆବଶ୍ୟକ ।
ଅଳସୀ	ବିଶ୍ୱାସ କରିଥିଲେ ପ୍ରତି ମୁହୂର୍ତ୍ତରେ ପ୍ରତାରିତ ହେବା ପାଇଁ ପ୍ରସ୍ତୁତ ରହିବା ମଧ୍ୟ ଦରକାର ।
ଅମର	ଏକାନ୍ତ ଜରୁରୀ ନୁହେଁ ।
ଅଳସୀ	ତମେ ବି' ତ ପ୍ରତାରିତ ହୋଇଛ । ଏଇନେ ତ କହୁଥିଲ ।
ଅମର	ସମସ୍ତେ କିନ୍ତୁ ପ୍ରତାରିତ ହୁଅନ୍ତି ନାହିଁ ।
ଅଳସୀ	ଏକଥା ତୁମେ ବିଶ୍ୱାସ କର ? କାହାକୁ ବିଶ୍ୱାସ କର ତୁମେ ? କହିପାରିବ ?
ଅମର	ନିଜକୁ, ଜୀବନକୁ, ପ୍ରକୃତିକୁ । ତୁମକୁ ଅଥବା ଆଉ କାହାକୁ । ବିଶ୍ୱାସ କରିଛି ବୋଲି ତ ବଞ୍ଚିଛି ।
ଅଳସୀ	(ହସି) ଏ ସବୁ ମିଛ, ଛଳନା, ବାହାନା । ତୁମକଥା ମୋତେ ଖୁବ୍ ଜଣା ।
ଅମର	ମିଛ କାହିଁକି ?
ଅଳସୀ	ଗପ କହିବାକୁ ଆଉ ଏକ ନୂଆଗପର ଅବତାରଣା, ଯାହା ହୁଏତ ମୋତେ ଆକୃଷ୍ଟ କରିବ ।
ଅମର	ଆଉ ଛଳନା ।
ଅଳସୀ	ଛଳନାର ମାୟାଜାଲରେ ମୋତେ ବାନ୍ଧି ରଖିବାରେ ଇଏ ଆଉ ଏକ ପ୍ରୟାସ ।
ଅମର	ଆଉ ବାହାନା....
ଅଳସୀ	ତା'ପରେ ଆରମ୍ଭ ହେବ ପ୍ରେମର ବାହାନା, ଭଲ ପାଇବାର ପ୍ରତିଶ୍ରୁତି, ବିବାହ ଇତ୍ୟାଦି ଇତ୍ୟାଦିର ଅବତାରଣା ବି କରିବସିବ ନୁହେଁ ?
ଅମର	ଠିକ୍ ଅଳସୀ ଭଳି ତୁମର କଥା ସବୁ....
ଅଳସୀ	ମୁଁ ବି ଜଣେ ନାରୀ–ଆପଣଙ୍କ ଭଳି ପୁରୁଷମାନଙ୍କୁ ମୁଁ ଖୁବ୍ ଭଲ କରି ଚିହ୍ନେ ।
ଅମର	ସବୁ ପୁରୁଷ ସମାନ ନୁହଁନ୍ତି ।
ଅଳସୀ	ପ୍ରମାଣ ବୋଧହୁଏ ତୁମେ ନିଜେ ।
	(ଥଟ୍ଟାକରି) ପୁରୁଷ ପୁଙ୍ଗବ !
ଅମର	(ଚିତ୍କାର କରି) ଅଳସୀ.... ଚୁପ୍ କର । ସତରେ ତୁମେ କ'ଣ ମୋତେ ଚିହ୍ନ ନାହିଁ । ମୁଁ ସୁପୁରୁଷ

କି ନୁହେଁ ଜାଣ ନାହିଁ । ସତ କୁହ ?
ଉତ୍ତର ଦିଅ..... ?

ଅଳସୀ କଥାଟା ବାଧିଗଲା ବୋଧହୁଏ ।
ଏଇନେ ଘାଇଲା ବାଘ ବେଶୀ ମାରାତ୍ମକ ହୋଇଯାଇପାରେ । କିନ୍ତୁ ଜାଣିରଖ ସଦ୍ୟ ମାତୃତ୍ୱ ଲାଭ କରିଥିବା ବାଘୁଣୀ ତା' ଠାରୁ ଅଧିକ ବିପଦଜନକ ।

ଅମର ତୁମେ ତ କେବେ ମାତୃତ୍ୱ ଲାଭ କରିନଥିଲ । ହୁଏତ ବନ୍ଧ୍ୟା ବି ନଥିଲ କେବେ । ଅଥଚ.....

ଅଳସୀ ବାକ୍ୟ ପୂର୍ଣ୍ଣ କର.... ଦ୍ୱିଧା କାହିଁକି ?

ଅମର ଅଥଚ ମୁଁ ପ୍ରତାରିତ ହେଲି....

ଅଳସୀ (ହସି) କିଏ ତୁମକୁ ପ୍ରତାରିତ କଲା ? ଅଥବା କାହା ଦ୍ୱାରା ତୁମେ ପ୍ରତାରିତ ହେଲ ବୋଲି ଭାବୁଛ ?

ଅମର ସେଇଆ ତ ଖୋଜୁଛି ?

ଅଳସୀ (ହସି) ଏଇ ବେଳାଭୂମିରୁ ? ସେ ପ୍ରଶ୍ନର ଉତ୍ତର କ'ଣ ଏଇଠି ଲେଖା ହୋଇଛି ? ଏଇ ଅତୀତର ବାଲିଘରେ ସେ ଉତ୍ତର ଖୋଜିବାର ଆଉ ଆବଶ୍ୟକତା ନାହିଁ ବରଂ ଭବିଷ୍ୟତ ଆଡ଼କୁ ଚାହିଁବା ଦରକାର ।

ଅମର ଭବିଷ୍ୟତର ସୌଧ ଗଢ଼ିବା ଆଗରୁ ଅତୀତ ଆଉ ବର୍ତ୍ତମାନର ଭିତ୍ତିଭୂମିକୁ ତଉଲି ନେବା ଏକାନ୍ତ ଆବଶ୍ୟକ । କାରଣ ଭିତ୍ତିଭୂମି ନିର୍ଣ୍ଣୟ ନ କରି କେବଳ ପବନରେ ତାସର ଘର ମଧ ନିର୍ମାଣ କରାଯାଇପାରେନା ।

ଅଳସୀ ତୁମ ପାଇଁ ଅତୀତ ବର୍ତ୍ତମାନ ଆଉ ଭବିଷ୍ୟତ ସବୁ ଯେମିତି ସେଇ ଗୋଟିଏ ବିନ୍ଦୁରେ ଲଟକି ଯାଇଛି ଠିକ୍ ବନ୍ଦ୍ କାନ୍ଥଘଣ୍ଟାର ପେଣ୍ଡୁଲମ୍ ଭଳି ।

ଅମର ଦିନେ ସେଇ ପେଣ୍ଡୁଲମ୍ ଉତ୍ତର ଗୋଲାର୍ଦ୍ଧରୁ ଦକ୍ଷିଣ ଗୋଲାର୍ଦ୍ଧକୁ ଛୁଇଁ ଦୋଳି ଖେଳୁଥିଲା । ତା'ର ଟିକ୍‌ଟିକ୍ ଶବ୍ଦରେ ତାଳ ଦେଇ ସମୟ ବି ଆଖିମିଟିକା ମାରୁଥିଲା । ଅଥଚ ଆଜି ସବୁ ଶାନ୍ତ, ନିର୍ଲିପ୍ତ । କାହିଁକି ?

ଅଳସୀ ନିଜକୁ ପଚାର ।

ଅମର ବାରମ୍ବାର ପଚାରିଛି ନିଜକୁ । ଉତ୍ତର ପାଇନି ଏବେ ନିଜକୁ ପଚାରିବାର ଅର୍ଥ ଏମାନଙ୍କୁ ପଚାରିବା । ଏଇ ତାରା, ଜହ୍ନ, ଆକାଶ ଆଉ ଆକାଶର ଏଇ ଶୂନ୍ୟତାକୁ ପଚାରିବା । (ପଚାରିଲା ଭଳି) ଏ ପ୍ରଶ୍ନର ଉତ୍ତର କହିପାରିବ କେହି ?...

ଅଳସୀ (ହସି) କ'ଣ ଉତ୍ତର ପାଇଲ ? କ'ଣ ଉତ୍ତର ଦେଲେ ସେମାନେ ?

ଅମର ସ୍...ସ୍....ସ୍... (ଚୁପ୍ ହେବାକୁ ଇଙ୍ଗିତ ଦେଇ ନିଜେ କିଛି ଶୁଣିଲେ) ଏଇ ଶୁଣ କିଏ କହୁଛି ଶୂନ୍ୟତାରୁ ଶୂନ୍ୟତାକୁ ଫେଡ଼ି ମହାଶୂନ୍ୟ ହୋଇଯିବାକୁ ତ କେହି କହୁଛି ଶୂନ୍ୟରେ ଶୂନ୍ୟକୁ ଯୋଡ଼ି ପରିପୂର୍ଣ୍ଣ ହୋଇଯିବାକୁ ।

ଅଳସୀ ତା'ହେଲେ ଆଉ ଅସୁବିଧା କେଉଁଠି ? ଶୂନ୍ୟ ହୋଇଯାଅ ।

ଅମର ଶତଚେଷ୍ଟା କରି ମଧ ମୁଁ ନିଜକୁ ଶୂନ୍ୟ କରିପାରୁନି । ମୋ ଅସ୍ତିତ୍ୱ, ମୋ ଅହଂକାର, ମୋର ମୁଁ ତ୍ୱ ରହିରହି କୁମ୍ଭକର୍ଣ୍ଣ ଭଳି ତା'ର ଉପସ୍ଥିତିକୁ ବାରମ୍ବାର ହୁଙ୍କାର କରି ଆଣି ମୋରି ଆଖି ସାମ୍ନାରେ ଛିଡ଼ା କରାଇ ଦେଉଛି ।

ଅଳସୀ ସେଥିପାଇଁ ଦାୟୀ କିଏ ?

ଅମର ଜାଣିନି । ତେବେ ଲାଭ କ'ଣ ଏବେ ସେ ସବୁର ତର୍ଜମା କରି ।

ଅଳସୀ ତାହେଲେ ଏଠିକି ଆସିଛି କାହିଁକି ? ଖୋଜୁଛ କ'ଣ ?

ଅମର ବଞ୍ଚିବାକୁ ଚାହେଁ ତେଣୁ ଏଠିକି ଆସିଛି । ମୃତ୍ୟୁ ପର୍ଯ୍ୟନ୍ତ ଚାଲିବାର ଶପଥ ନେଇଛି । ତେଣୁ ଚାଲୁଛି । ଖୋଜିବା ମୋର ବୃତ୍ତି ଓ ପ୍ରବୃତ୍ତି । ତେଣୁ ଖୋଜିଚାଲିଛି । ଜୀବନର ସବୁ ଛକ, ସବୁ ଚୌହଦି ଘୂରି ଘୂରି ମୁଁ ଖୋଜି ଚାଲିଛି । ଖୋଜିବାଟା ମୋର ନିଶା ପାଲଟିଯାଇଛି ।

ଅଳସୀ କିନ୍ତୁ ପ୍ରଶ୍ନ ନଥାଇ ଉତ୍ତର ତ ଖୋଜାଯାଏନି ? ତୁମର ପ୍ରଶ୍ନ କ'ଣ ?

ଅମର ବହୁ ପ୍ରଶ୍ନର ଉତ୍ତର ଜଣାଥିଲେ ବି ତାକୁ ଆହୁରି ତନ୍ନତନ୍ନ କରି ଖୋଜିବାକୁ ପଡ଼େ । ତା'ହେଲେ ହିଁ ଅଣୁରୁ ପରମାଣୁ ମିଳିବା ସମ୍ଭବ ହୁଏ । ସେଇଥିପାଇଁ ଖୋଜିଚାଲିଛି । ଅନେକ ପାଇଛି । ଅନେକ ହଜେଇ ଦେଇଛି । ଏବଂ ଆହୁରି ଅନେକ କିଛି ପାଇବାର ଆଶାରେ ଖୋଜିଚାଲିଛି । ତୁମର କିଛି ଆପତ୍ତି ଅଛି ?

ଅଳସୀ ହଁ ଅଛି । ତୁମର ଏଇ ଖୋଜିବାର ନିଶା, ତୁମ ଇଲାକାର ସୀମା, ସରହଦ ଡେଇଁ ମୋ ଇଲାକାର ସୀମାରେଖା ଅତିକ୍ରମ କରି ଧସେଇ ପଶି ଆସିବାର ପ୍ରୟାସ କରିଚାଲିଛି ।

ଅମର ସେଥିପାଇଁ ତ ତୁମେ ମୋତେ ଯଥେଷ୍ଟ ପରିଣାମ ମଧ୍ୟ ଦେଇଛ । ସେଇ ଯନ୍ତ୍ରଣାରେ ଆମେରିକା ଛାଡ଼ି ଏଇ ନିର୍ଜନ ବେଳାଭୂମିକୁ ମୁଁ ଫେରିଆସିଛି ।

ଅଳସୀ ତା'ହେଲେ ମୋତେ ଛାଡ଼ିଦେଉନ କାହିଁକି ? କାହିଁକି ମୋତେ ଏଠିକି ଫେରି ଆସିବାକୁ ବାଧ କରୁଛ ? ଏଇ ପ୍ରତିମୂର୍ତ୍ତି ଉପରେ ମୋର ସତ୍ତାକୁ ଆରୋପିତ କରି ମୋତେ ଧିକ୍କାର କରିଚାଲିଛ ।

ଅମର ଏ ଅଭିଯୋଗ ତୁମର ମିଥ୍ୟା । ମୁଁ ତୁମକୁ ଆଦୌ ବାଧ କରିନି ।

ଅଳସୀ ତାହେଲେ କାହାକୁ କହୁଥିଲ ଯେ ମୁଁ ତୁମକୁ ଆମେରିକାରୁ ବିତାଡ଼ିତ କରିଛି ।

ଅମର ସେଇଟା ମୋର ସ୍ୱଗତୋକ୍ତି । କେବଳ ନିଜ ପାଇଁ ଉଦ୍ଦିଷ୍ଟ । ସେଥିରେ ତୁମର ବା ଆଉ କାହାର ହସ୍ତକ୍ଷେପ କରିବା ଆଦୌ ଉଚିତ ନୁହେଁ ।

ଅଳସୀ ତୁମ ଚିନ୍ତା ହିଁ ମୋତେ ଏଠିକି ଆସିବାକୁ ବାଧ କରୁଛି । ଅଥଚ ମୁଁ ତୁମ ଠାରୁ ମୁକ୍ତି ଚାହେଁ ।

ଅମର ମୁକ୍ତି । (ହସି) ତା'ର ଆକାର, ପ୍ରକାର, ସ୍ୱରୂପ କ'ଣ ? 'Man born free but every where he is in chains' ତୁମେ ତ କେବେଠାରୁ ମୁକ୍ତି ପାଇସାରିଛ । ମୋ ପ୍ରେମର ବନ୍ଧନରୁ । ସାମାଜିକ ସମ୍ପର୍କରୁ । ତୁମ ପାଇଁ ମୋର ଆବଶ୍ୟକତା ଏକାନ୍ତ ନିରର୍ଥକ । ବାକି ରହିଲା ମୋର ଉତ୍ତରାଧିକାର... ସେଥିରୁ ତୁମେ ନିଜେ ମୁକ୍ତି ଚାହଁନା କିମ୍ବା ମୋତେ ମଧ୍ୟ ମୁକ୍ତି ଦେବାକୁ ତୁମର ଅଭିଳାଷା ନାହିଁ । କାରଣ...

ଅଳସୀ ଆଃ...ସେ କଥା ବନ୍ଦ କର । ପ୍ରଥମେ ମୋ ପ୍ରେମ ମୋ ସ୍ମୃତିକୁ ମୁକ୍ତି କରିଦିଅ ।

ଅମର କାହାର ସ୍ମୃତି ? (ହସିଲେ) ମୋର ସ୍ମୃତି ତ ବାରମ୍ବାର ଅତୀତର ଢେଉରେ ପହଁରି ପହଁରି ବୁମେରାଂ ଭଳି ମୋ ପାଖକୁ ଫେରିଆସୁଛି । ସେଥିରେ ତ ଆଉ ତୁମର ଅଧିକାର ନାହିଁ । ତାହା କେବଳ ମୋର । ଏକାନ୍ତ ଭାବେ ମୋର । ଏଇ ବେଳାଭୂମିର ସ୍ମୃତି ଭଳି ।

ଅଳସୀ ମୋର ଅତୀତ ମୋ ସ୍ମୃତିକୁ ତୁମେ ମୋ ସହିତ ଫେରାଇଦିଅ ।

ଅମର ଦେହରୁ ମନକୁ, ମନରୁ ପ୍ରେମକୁ, ଆଉ ପ୍ରେମରୁ ସ୍ମୃତି ସବୁକୁ ବିଚ୍ଛିନ୍ନ କରି ପୃଥକ କରିବା କ'ଣ ସମ୍ଭବ ? ମୁଁ ତ ପରମହଂସ ନୁହେଁ ।

ଅଳସୀ ଅଥଚ ସେତେବେଳେ ତ ତୁମେ ବେଶ୍ ପରମହଂସ ପାଲଟି ଯାଇଥିଲ ? ଦିନରାତି ଅହରହ ନିର୍ନିମେଷ ଚିତ୍ତରେ ଲୀନ ହୋଇଯାଇଥିଲ ତୁମ ଗବେଷଣାରେ । ପରୀକ୍ଷାଗାରର ଚାରିକାନ୍ଥ ଭିତରେ ।

ଅମର — ସେତେବେଳେ ମୁଁ ଗବେଷଣାର ପରମସତ୍ତାକୁ ଖୋଜିବାର ନିଶାରେ ଧ୍ୟାନସ୍ଥ ହୋଇ ଯାଉଥିଲି ।

ଅଳସୀ — ଏତେ ତଲ୍ଲୀନ ଯେ ଦେହ, ମନ, ପରିବାର ସବୁ ନିଷ୍ପ୍ରୟୋଜନ ହୋଇ ପଡ଼ିଥିଲେ ?

ଅମର — ସତ୍ୟକୁ ଖୋଜିବାକୁ ହେଲେ ଶୂନ୍ୟରେ ଲୀନ ହେବାକୁ ପଡ଼େ ଆଉ ସେତେବେଳେ ସାମାଜିକ କର୍ତ୍ତବ୍ୟ, ଆବେଗ ସବୁ ଆପେ ଆପେ ଶିଥିଳ ହୋଇଯାଇ ମନ ନିର୍ଲିପ୍ତ ହୋଇଯାଏ । କେବଳ ସତ୍ୟର ସନ୍ଧାନରେ ପ୍ରଲିପ୍ତ ହୋଇଉଠେ ଅନ୍ତରାତ୍ମା ।

ଅଳସୀ — ମୋ ପାଇଁ ଏ ଶବ୍ଦ ସବୁ ଅର୍ଥହୀନ ।

ଅମର — ସେ କଥା ମୁଁ ସ୍ୱୀକାର କରି ନେଇଥିଲି । ତେଣୁ ମୁଁ କେବେ ତୁମ ଜୀବନଶୈଳୀରେ ବାଧକ ସାଜିନି । ସେ ବିଷୟରେ ନିଜେ ସଚେତନ ହେବା ପରେ ବରଂ ତୁମ ପାଦର ନୂପୁର ଶବ୍ଦ ଶୁଣି କଇଁଛ ଭଳି ନିଶବ୍ଦରେ ମୁଁ ମୋର ପୁରୁଷାକାରକୁ ଗର୍ଭସ୍ଥ କରିନେଇଛି । ମୋର ଅସ୍ତିତ୍ୱକୁ ଚଳତ୍‌ହୀନ କରିନେଇଛି ।

ଅଳସୀ — ଭୀରୁ, କାପୁରୁଷ, ପଳାତକ ।

ଅମର — କାହାକୁ ଲକ୍ଷ୍ୟ କରି ଏ ଶବ୍ଦ ବାଣ ତୁମେ ନିକ୍ଷେପ କରୁଛ ଅଳସୀ ? ଭୀଷ୍ମ ତ ଏବେ ଶରଶଯ୍ୟାରେ ତାଙ୍କ ଉପରକୁ ତୁମର ଏ ଶରାଘାତର ମାନେ କିଛି ନାହିଁ । କେବଳ ଶକ୍ତିର ଅପଚୟ ମାତ୍ର ।

ଅଳସୀ — ମୁଁ ଜାଣେ ଯେ ତୁମେ ଜଣେ ଅବସରବାଦୀ ମଣିଷ । ନିଜର ଇଚ୍ଛା ବ୍ୟତୀତ ଅନ୍ୟ ଇଚ୍ଛା, ଅନ୍ୟର ଆଶା, ପ୍ରତ୍ୟାଶା ପ୍ରତି ତମର ତିଳେ ବି କର୍ତ୍ତବ୍ୟବୋଧ ନାହିଁ ।

ଅମର — ଅଥଚ ଅନ୍ୟ ପାଇଁ ମୁଁ ମୋର ସମଗ୍ର ଜୀବନର ସବୁ ସୁଖକୁ ଜଳାଞ୍ଜଳୀ ଦେଇସାରିଛି । ପରିତାପର ବିଷୟ ଏହି କି ଯେ ଯାହା ପାଇଁ ସର୍ବସ୍ୱ ଅର୍ପଣ କରିଦେଲି ତା'ରି ଅଭିଶାପରେ ମୁଁ ଆଜି ବୃହନ୍ନଳା ପାଲଟି ଯାଇଛି ।

ଅଳସୀ — ତୁମେ ଗବେଷଣା କରୁଥିଲ ମଣିଷକୁ ଚିରଯୌବନ ଦେବା ପାଇଁ ଅଥଚ ସେଥିରେ ନିତି ପ୍ରତିଦିନ ମୋରି ଯୌବନ ହିଁ ବଳି ପଡୁଥିଲା ।

ଅମର — ତୁମେ କୃତଜ୍ଞ ରହିବା କଥା ଯେ ମୋର ଗବେଷଣା ସଫଳ ହେଲା । ତା'ର ଫଳସ୍ୱରୂପ ତୁମେ ଆଜି ଚିରଯୌବନରେ ରୂପାନ୍ତରିତ ହୋଇସାରିଛ ।

ଅଳସୀ — ଏଇ କୃତ୍ରିମ ଯୌବନର ପ୍ଲାବନ ଆସିବା ପୂର୍ବରୁ ମୁଁ ମୋର ପ୍ରକୃତ ଯୌବନ ହରେଇ ସାରିଥିଲି । ମାତୃତ୍ୱର ସବୁ ସମ୍ଭାବନା ମୋ ଜୀବନର ସୀମା ଡେଇଁ ଅନ୍ତର୍ଦ୍ଧାନ ହୋଇ ସାରିଥିଲା ।

ଅମର — କାହିଁକି ନିଜକୁ ପ୍ରତାରିତ କରୁଛ ଅଳସୀ ? ମିଥ୍ୟା ଉପରେ ମିଥ୍ୟାର ଓଢଣୀ ପକାଇ କେତେଦିନ ତାକୁ ଆଉ ସତ୍ୟର କୁଳବଧୂ ଭଳି ସଜେଇ ରଖିବ । ସତ୍ୟକୁ ସାମ୍ନା କର ଆଉ ନିଜର ଔଦ୍ଧତ୍ୟକୁ ସ୍ୱୀକାର କର । ତୁମ ଜଠରକୁ ତୁମେ ଅମୃତର ଆହ୍ୱାନ ପାଇଁ ନୁହେଁ ବରଂ ଅମୃତ ସନ୍ତାନ ପ୍ୟୁପାମାନଙ୍କର ମରଣଯନ୍ତା ବନେଇ ଦେଇଥିଲ ।

ଅଳସୀ — ସେଥିପାଇଁ ଦାୟୀ କିଏ ? ଘରର ଚାରିକାନ୍ଥ ଭିତରେ ମୁଁ ଏକ ନିର୍ଜନ ମରୁଭୂମିର ଏକାନ୍ତ ଖଜୁରୀ ଗଛ ଭଳି କେତେଦିନ ନିଶୂନ୍ ଆକାଶକୁ ଚାହିଁ ଚାହିଁ ବର୍ଷାର ପ୍ରତୀକ୍ଷା କରିଥାନ୍ତି ? ଦୀର୍ଘଶ୍ୱାସର ହାହାକାର ଭିତରେ କେତେଦିନ ଚକୋରୀ ଭଳି ଶୂନ୍ୟକୁ ଚାହିଁ ବିଳାପ କରିଥାନ୍ତି ?

ଅମର — ଏବେ ତା'ହେଲେ ଆସିଛ କାହିଁକି ?

ଅଳସୀ — ତୁମକୁ ଫେରାଇ ନେବାକୁ ।

ଅମର — ମୁଁ ତ ଫେରିଆସିଛି, ଚାହଁ ଯଦି ତୁମେ ବି ଫେରିଆସ ।

ଅଳସୀ — ଏଠି ମୋତେ କ'ଣ ମିଳିବ ?

| | |
|---|---|
| ଅମର | ଜୀବନ ବଞ୍ଚିବାର ସବୁ ମୌଳିକ ଉପାଦାନ ମିଳିବ । ତା' ସାଙ୍ଗକୁ ପ୍ରେମ ସ୍ନେହ, ଶ୍ରଦ୍ଧା, ଭଲପାଇବା ଭଳି ନୈସର୍ଗିକ ଉପଲବ୍ଧି ମଧ୍ୟ ଅଯାଚିତ ଭାବେ ମିଳିଯିବ । ଯାହାକୁ ତୁମେ ତୁମ ଭାଷାରେ ବୋନସ୍ ବୋଲି କହିପାର । ସେଠି ଯାହା ଏକାନ୍ତ ଦୁଃପ୍ରାପ୍ୟ । ଦୁର୍ଲ୍ଲଭ । |
| ଅଳସୀ | ତଥାପି ତ ସେଠି ମଣିଷ ବଞ୍ଚିଛି, ସମାଜ ବଞ୍ଚିଛି । |
| ଅମର | ସେଠି ମଣିଷ କେବଳ କର୍ତ୍ତବ୍ୟସର୍ବସ୍ୱ । ସମ୍ପର୍କ ଓ ସମ୍ପର୍କଜନିତ ଆବେଗବୋଧ କେବଳ ଦୁର୍ବଳତା ମାତ୍ର । ମଣିଷ ସେଠାରେ କେବଳ ଗୋଟିଏ ଗୋଟିଏ ଯନ୍ତ୍ରମାନବ 'କମ୍ପ୍ୟୁଟର' କହିଲେ ଅତ୍ୟୁକ୍ତି ହେବନାହିଁ । |
| ଅଳସୀ | ସେଠାରେ ସମସ୍ତେ ଖୁବ୍ ଶୃଙ୍ଖଳିତ । |
| ଅମର | ଚିଡ଼ିଆଖାନାର ଜୀବଯନ୍ତୁମାନଙ୍କ ଭଳି । |
| ଅଳସୀ | ଏଠାରେ ସମସ୍ତେ ଘଞ୍ଚଛ.... |
| ଅମର | ମୁକ୍ତ ଆକାଶତଳର ମୁକ୍ତ ବିହଙ୍ଗ ଭଳି । |
| ଅଳସୀ | ତୁମେ ହିଁ ସେମିତି ଭାବୁଛ । କାରଣ ତୁମେ ଜଣେ Wild mad animal |
| ଅମର | ତାହେଲେ ତୁମେ ସେମିତି ଜଣେ ପାଗଳ ବଣ ମଣିଷ ପାଖକୁ ସୁଦୂର ଆମେରିକାରୁ କାହିଁକି ଧାଇଁ ଆସିଛ ? |
| ଅଳସୀ | ସେମିତି କିଛି କାରଣ ଥାଇପାରେ ବୋଲି ଭାବିପାରୁଛ ? |
| ଅମର | ବିନା କାରଣରେ ଯିଏ ସାତ ସାଗର ତେର ନଈ ଡେଇଁ ମୋ ପାଖକୁ ଧାଇଁଆସିଛି ସେ କେତେ ସତ୍ୟବାଦୀ ତା'ର ପ୍ରମାଣ ତା'ର Heartbeat ଦେଖିଲେ ଜଣାପଡ଼ିଯିବ । ଦେଖି ଦେଖି ତମର ହୃଦୟର ସ୍ପନ୍ଦନ (ତା ଆଡ଼କୁ ଆଗେଇ ଗଲେ) |
| ଅଳସୀ | Don't touch me. |
| ଅମର | ଜାଣିଥିଲି ତୁମେ ସେଇ କଥା ହିଁ କହିବ । ତୁମକୁ ଛୁଇଁବାରେ ମୋର ଆଗ୍ରହ କେବେଠାରୁ ସମାପ୍ତ ହୋଇସାରିଛି । ଖାଲି ତୁମର କପଟତାକୁ ମୁଁ ପରଖି ନେବାକୁ ଚାହୁଁଥିଲି । |
| ଅଳସୀ | କପଟତାରେ ତ ତୁମେ ସାଇଲକ୍ ଆଉ ବ୍ରୁଟସ୍ ଚରିତ୍ରକୁ ମଧ୍ୟ ବଳିଯାଇଛ । ତୁମକୁ ପୁଣି ଟପିଯିବ କିଏ ? |
| ଅମର | ତୁମେ ଆଉ କିଏ ? |
| ଅଳସୀ | ଛାଡ଼ ! ଯୁକ୍ତିତର୍କ ସେତିକିରେ ଥାଉ ମୋତେ ଖାଲି କୁହ ତୁମେ ଫେରିଯିବ କି ନାହିଁ ? |
| ଅମର | ସେ ସମ୍ଭାବନା ଆଦୌ ନାହିଁ । |
| ଅଳସୀ | ତାହେଲେ ମୋ ଅଧିକାର ମୋତେ ଫେରାଇଦିଅ । |
| ଅମର | କେବଳ ଛାଡ଼ପତ୍ର ଭଳି କାଗଜ ଖଣ୍ଡିଏକୁ ଛାଡ଼ିଦେଲେ ତୁମ ଉପରେ ମୋର ନା ମୋ ଉପରେ ତୁମର ଆଉ କିଛି ଅଧିକାର ଯେ ବାକି ନାହିଁ। ସେ କଥା ଭଲଭାବରେ ତୁମେ ଜାଣ । |
| ଅଳସୀ | ଚୁପ୍ କର । ଆଉ ଚୁପ୍‌ଚାପ ଫେରିଚାଲ । ନହେଲେ.... । |
| ଅମର | କ'ଣ ହତ୍ୟା କରିବ ! ମୁଁ ଜାଣେ ତୁମ ପାଇଁ ତାହା ଅସମ୍ଭବ ନୁହେଁ । ମାତ୍ର ତୁମେ ତାହା କରିବ ନାହିଁ । କାରଣ ମୋ ନିକଟରୁ ତୁମର ଆଉ କିଛି ହୁଏତ ପାଇବାର ଇଚ୍ଛା ବାକି ଥାଇପାରେ । |
| ଅଳସୀ | ମୋତେ ଅତିଶୀଘ୍ର ଫେରିଯିବାକୁ ହେବ । |
| ଅମର | ତୁମେ ତ ଏବେ ସମୟ ଠାରୁ ବି ଅଧିକ ଚଞ୍ଚଳ ହେଇପଡ଼ିଛ । ଗୋଟିଏ ସ୍ଥାନରେ ବାନ୍ଧି ହୋଇ ଅଧିକ କ୍ଷଣ ରହିପାରିବ କେଉଁଠୁ ? ଫେରିଯାଅ । |

| | |
|---|---|
| ଅଳସୀ | ଖାଲିହାତରେ ଫେରିଯିବାକୁ ମୁଁ ଆସିନି । |
| ଅମର | ତୁମ ହାତରେ ମୋର ସର୍ବସ୍ୱ ଅର୍ପଣ କରି ଅନେକ ଆଗରୁ ନିଃସ୍ୱ ଭାବେ ସ୍ୱେଚ୍ଛାକୃତ ନିର୍ବାସିତ ହୋଇ ମୁଁ ଏଠାକୁ ଫେରିଆସିଛି । ମୋ ନିକଟରୁ ତୁମର ତ ପାଉଣା କିଛି ବାକି ନାହିଁ ନିଶ୍ଚୟ ? |
| ଅଳସୀ | ଅନେକ କିଛି ଲୁଚେଇ ନେଇ ଆସଛ ମୋ ଅଜାଣତରେ । ସମୁଦ୍ରରେ ଭାସୁଥିବା ବରଫ ପାହାଡ଼ର ଚୂଡ଼ା ଦେଖି ତାକୁ ହିଁ ପାହାଡ଼ର ସର୍ବସ୍ୱ ବୋଲି ଭାବି ନେଇଥିଲି । କିନ୍ତୁ ପାଣି ଭିତରେ ଯେ ପାହାଡ଼ର ଏତେ ବିଶାଳ ଅସ୍ତିତ୍ୱ ଲୁଚି ରହିଥାଇପାରେ ସେ କଥା ମୁଁ ସେତେବେଳେ ଜାଣିପାରି ନଥିଲି । |
| ଅମର | ତୁମେ କେଉଁ ଅସ୍ତିତ୍ୱ କଥା କହୁଛ ? |
| ଅଳସୀ | ତୁମ ଆବିଷ୍କାରର ସତ୍ୱଲିପି ? |
| ଅମର | ଅଦ୍ୟାବଧି ମୋ ଆବିଷ୍କାରର ପ୍ରଥମ ଓ ଶେଷ ପରୀକ୍ଷାର ଫଳ ତୁମର ଏଇ ଶରୀର । ଯାହା ଏବେ ଚିରହରିତ ଅରଣ୍ୟରେ ରୂପାନ୍ତରିତ ହୋଇସାରିଛି । ଯାହା ଅଜର, ଅମର, ଅବିନଶ୍ୱର । |
| ଅଳସୀ | କ'ଣ ପ୍ରୟୋଜନ ସେ ଯୌବନର ଯାହା ଉପଭୋଗ୍ୟ ନ ହେଲା ? ଯୌବନକୁ ଉପଭୋଗ କରିବାର ଏକମାତ୍ର ରାସ୍ତା ଅର୍ଥ.... ମୋର ଅସରନ୍ତି ଅର୍ଥର ପ୍ରୟୋଜନ । |
| ଅମର | ସେମିତି ଅସରନ୍ତି ଅର୍ଥ ଯାହାକୁ ପଙ୍ଗପାଳ ମଧ୍ୟ ଦିନରାତି ବୋହି ଶେଷ କରିପାରିବେ ନାହିଁ । ଗୋଟିଏ ପଙ୍ଗପାଳ ଗୋଟିଏ ଧାନ... ଫୁର୍‌ର୍... (ହସିଲେ) ସେମିତି ଅସରନ୍ତି ଭଣ୍ଡାର ତ ତୁମର ଏଇ ଶରୀର... ଯାହାକୁ ଲୁଟିନେବାକୁ ଅସଂଖ୍ୟ ପୁରୁଷ ପଙ୍ଗପାଳ ଭଳି ଆକର୍ଷିତ ହୋଇ ଆସୁଥିବେ ଆଉ ଫେରିଯାଉଥିବେ ଅଥଚ ତୁମେ ରହିଥିବ ଅକ୍ଷୟ, ଅବ୍ୟୟ ପଦ ଭଳି କ୍ଷୟହୀନ, ନିର୍ବିକାର । |
| ଅଳସୀ | ସେ ବାଜେ କଥା ଛାଡ଼ ଆଉ ମୋତେ ତୁମର ସେ ଆବିଷ୍କାରର Formula ଗୋଟିକ ଦେଇଦିଅ । |
| ଅମର | କେଉଁ ଅଧିକାରରେ ? |
| ଅଳସୀ | ତୁମ ସ୍ତ୍ରୀ ହେବାର ନ୍ୟାୟିକ ଅଧିକାରରେ । |
| ଅମର | ସେ ଯେଉଁ ଅଧିକାର ମୁଁ ତୁମ ସୀମନ୍ତରେ ଭରି ଦେଇଥିଲି ଆଜକୁ ଦୀର୍ଘବର୍ଷ ତଳେ । ତୁମେ ତାକୁ ଫଗୁ ରଙ୍ଗ ବୋଲି ଭାବି ଆମେରିକାର ରାଜରାସ୍ତାରେ ଫିଙ୍ଗି ଦେଇଛ । ଆଉ ସ୍ୱାମୀର ପରିଚୟ ପତ୍ରକୁ ଏଟିଏମ୍ କାର୍ଡ ଭାବି Transfer କରିଦେଇଛ ଭିନ୍ନ ଭିନ୍ନ ଠିକଣାକୁ । |
| ଅଳସୀ | ସେଇଟା ମୋର ବ୍ୟକ୍ତିଗତ ଅଧିକାର । ତା' ଭିତରକୁ ଅନଧିକାର ପ୍ରବେଶର ଅଧିକାର ତୁମର ନାହିଁ । |
| ଅମର | ସେଇଟା ଏ ଦେଶର ଦୁର୍ଭାଗ୍ୟ ଯେ ସ୍ୱାଧୀନତାର ଅର୍ଥକୁ ତୁମ ଭଳି ଅନେକ ଅତ୍ୟାଧୁନିକ ମଣିଷ ସ୍ୱେଚ୍ଛାଚାର ଭଳି ବୁଝନ୍ତି । ସେମାନେ ଭାବନ୍ତି ଯେ ଏ ସୃଷ୍ଟିଟା କେବଳ ସେମାନଙ୍କ ଅଧିକାରକୁ ପରିପୁଷ୍ଟ କରିବା ହିଁ ସୃଷ୍ଟି ହୋଇଛି । ଏଠି ଅନ୍ୟମାନଙ୍କର ବଞ୍ଚିବାର ଅଧିକାରମାନେ ସେମାନଙ୍କ ସ୍ୱାଧୀନତାରେ ହସ୍ତକ୍ଷେପ କରିବା । |
| ଅଳସୀ | ସେ ମୂଲ୍ୟହୀନ କଥା ଶୁଣିବାକୁ ମୋର ଧୈର୍ଯ୍ୟ ନାହିଁ କି ସମୟ ବି ନାହିଁ । ଶୀଘ୍ର Formula ଦିଅ ଏବଂ ତାହାର ଉତ୍ତରାଧିକାର ସତ୍ତ୍ୱ ଲିପି ମୋ ନାଁରେ ବଣ୍ଡ ପେପର୍‌ରେ ଲେଖିଦିଅ । ହଁ.... ଆଉ ବଳକା ମହୌଷଧିର ଅବଶେଷ ଯାହା ତୁମ ପାଖରେ ଅବଶିଷ୍ଟ ଅଛି । ତାକୁ ମଧ୍ୟ ମୋତେ ଅର୍ପଣ କର । |
| ଅମର | ମୋର ସ୍ଥାବର ଅସ୍ଥାବର ସବୁ ସମ୍ପତ୍ତି ତ ତୁମକୁ ଅର୍ପଣ କରିଦେଇ ଆସିଲି । ତଥାପି ତୁମର କ୍ଷୁଧା ମେଣ୍ଟିନି, କାମନା ସରିନି । ଆହୁରି ଚାହଁ ? ତୁମେ କ'ଣ ଯଯାତି ? |

ଅଳସୀ — ସେ ପୁରୁ-ଯଯାତିର ଖେଳରୁ ମୁଁ ମୁକ୍ତ ହେବାକୁ ଚାହେଁ । ମୋ ଦେହ ଆଉ ମନକୁ ନେଇ ମୁଁ ବଞ୍ଚିବାକୁ ଚାହେଁ । ଏକ ସୁନ୍ଦର ପୃଥିବୀରେ, ଏକ ସମ୍ଭାବନାମୟ ପୃଥିବୀରେ ଯାହାର ଦିଗ୍‌ବଳୟରେ ନିତି ପ୍ରତିଦିନ ଉଇଁଆସିବ ନୂତନ ଆଶାର ଆଲୋକ, ନିତ୍ୟ ନୂତନ ଦିଗନ୍ତର ଲୋଭନୀୟ ଆଭା ଧରି ।

ଅମର — ମୁଁ ଫେରିଆସିବାବେଳେ ତୁମ ଡ୍ରେସିଂ ଟେବୁଲ ଉପରେ ଖଣ୍ଡିଏ ଚିଠି ଛାଡ଼ି ଦେଇ ଆସିଥିଲି ପାଇଥିବ ।

ଅଳସୀ — ପାଇଛି ।

ଅମର — ସେଥିରେ ତ ଲେଖାଥିଲା ମୋର ଅର୍ଥ, ମୋର ଓ୍ୱିଲ୍, ମୋର ଔଷଧ ଅବଶେଷର ଠିକଣା । ସବୁତ ସେଇଥିରୁ ତୁମେ ପାଇଥିବ ।

ଅଳସୀ — ଆଉ ସେ ଔଷଧ ପ୍ରସ୍ତୁତିର ଫର୍ମୁଲା ? ସେଇଟା କାହିଁ ?

ଅମର — ଏତେ ସବୁ ଅର୍ଥ ଆଉ ସମ୍ପତ୍ତି କ'ଣ ଇତିମଧ୍ୟରେ ବାଷ୍ପୀଭୂତ କରି ସାରିଲଣି ? (ହସି) ଯୌବନର ଉତ୍ତାପରେ ଅତୀତ, ବର୍ତ୍ତମାନ ଆଉ ଭବିଷ୍ୟତ ଭଳି ବହୁ ମୂଲ୍ୟ ଉପାଦାନ ସବୁ ଏମିତି ବାଷ୍ପୀଭୂତ ହୋଇଯାଏ । ଆଉଥରେ ଭଲକରି ସେ ଚିଠିକୁ ପଢ଼, ଜାଣିପାରିବ ସେଇ ଅସରନ୍ତି ସମ୍ପଦର ଠିକଣା । ନିଜେ ରୋଜଗାର ନ କଲେ ଅର୍ଥର ପ୍ରକୃତ ମୂଲ୍ୟ ବା ବୁଝିବ କେମିତି । ଶୁଣ ଅଳସୀ ଆଉ ଯେ ପର୍ଯ୍ୟନ୍ତ ସେସବୁ କଥା ତୁମେ ଉପଲବ୍ଧି ନ କରିଛ ସେ ପର୍ଯ୍ୟନ୍ତ ଅର୍ଥ ହିଁ ଅନର୍ଥ ହୋଇ ତୁମର ପଥରୋଧ କରିବ । ଏବେ ବି ସମୟ ଅଛି ନିଜକୁ ସଂଯତ କର । (ଦେଖିଲେ କେହି ନାହିଁ) ଅଳସୀ...ଅଳସୀ... ଅଳସୀ... କୁଆଡ଼େ ଗଲ...ତୁମକୁ ତୁମ ଫର୍ମୁଲାର ଠିକଣା ମିଳିଗଲା ବୋଧହୁଏ । (ଦୂରରେ ଶୁଣାଗଲା କ୍ରନ୍ଦନର ସ୍ୱର)

ଅମର — କିଏ କାନ୍ଦୁଛି ... (ମାଆକୁ ଦେଖିଲେ) ମାଆ ତୁ ଏଠି କାନ୍ଦୁଛୁ... କାହିଁକି ? ମୁଁ ଜାଣେ ତୋ ପ୍ରତି ମୁଁ ବହୁତ ଅନ୍ୟାୟ କରିଛି । ଅବହେଳା କରିଛି । ତୋ ବୁଢ଼ା ବୟସରେ ତୋ ପାଖରେ ରହି ମୁଁ ତୋର ସେବା କରିପାରିନି ।

ମାଆ — ନା... ସେଥିପାଇଁ କାନ୍ଦୁନିରେ ପୁଅ... ତୁ ପାଠ ପଢ଼ି ମଣିଷ ହେବୁ । କେତେ ନୂଆ ନୂଆ ଗବେଷଣା କରି ନୂଆ ନୂଆ ଔଷଧ ବାହାର କରିବୁ । କେତେ ରୋଗ ବଇରାଗ ଭଲ କରିବୁ, ସେଇ କଥା ତୁ ମୋତେ କହିଥିଲୁ । ସେଇଥିପାଇଁ ମୁଁ ତୋତେ ପାଠ ପଢାଇଲି । ଜମିବାଡ଼ି ଗହଣାଗାଣ୍ଠି ବିକି ତୋତେ ଟଙ୍କା ପଠାଇଲି । ତୁ ଆହୁରି ପାଠ ପଢିବୁ ଆମେରିକା ଯିବୁ ବୋଲି କହିଲୁ । ମୁଁ ମନା କଲି । କାହିଁକିନା ମୋ ପାଖରେ ଆଉ ତୋତେ ଦେବା ପାଇଁ କିଛି ଧନ ସମ୍ପତ୍ତି ନଥିଲା । ତୁ ଅଭିମାନ କରି ଚାଲିଗଲୁ । ଆଉ ମୋ ଆଡ଼କୁ ଫେରିଚାହିଁଲୁ ନାହିଁ ।

ଅମର — ସେଇଟା ବୋଧହୁଏ ମୋର ଭୁଲ୍ ନିଷ୍ପତ୍ତି ଥିଲା । ନୂଆ ଔଷଧ ଆବିଷ୍କାର କରିବି । ମଣିଷକୁ ଅମର କରିବି । ମୁଁ ନିଜେ ଅମର ହୋଇଯିବି । ସେଇ ନିଶାରେ ମୁଁ ସବୁ କିଛି ଭୁଲିଯାଇଥିଲି । ମୋ ମାଆ, ମୋ ଜନ୍ମମାଟି ପ୍ରତି ମୁଁ ଅବିଚାର କରିଥିଲି । ମୁଁ ଜାଣେ ସେଇଥିପାଇଁ ତୁ କାନ୍ଦୁଛୁ । ମୋତେ କ୍ଷମା କରିଦେ ମାଆ । ଏଇ ଦେଖ ମୁଁ ଫେରିଆସିଛି ।

ମାଆ — ନା ତୁ ଚାଲିଗଲୁ ସେଥିପାଇଁ ମୁଁ କାନ୍ଦୁନିରେ ପୁଅ । ବରଂ ତୁ ଫେରିଆସିଲୁ ସେଇଥିପାଇଁ ମୁଁ କାନ୍ଦୁଛି ।

ଅମର — ମୋ ଫେରି ଆସିବାରେ ତୁ ଖୁସି ନୁହେଁ କାହିଁକି ମାଆ ?

ମାଆ — ତୁ ଫେରିଆସିବୁ ମୁଁ ଜାଣିଥିଲି କିନ୍ତୁ ଏମିତି ଖାଲି ହାତରେ ଫେରି ଆସିବୁ ସେ କଥା ମୁଁ ଚାହୁଁ ନଥିଲି । ମୁଁ ଭାବିଥିଲି ତୁ ବଡ଼ ମଣିଷ ହେବୁ । ଦୁନିଆଁରେ ତୋର ନାଁ ଡାକ ହେବ । ସେତେବେଳେ

ତୋ ମାଆ ବୋଲି ପରିଚୟ ଦେଇ ଗର୍ବରେ ମୋ ଛାତି ଫୁଲିଉଠିବ । କିନ୍ତୁ ତା ଆଗରୁ ମୋତେ ସେପାରିରୁ ଡାକରା ଆସିଗଲା । ତଥାପି ମନରେ ଆଶା ବାନ୍ଧିଥିଲି ପୁଅ ମୋର ନିଶ୍ଚେ ଦିନେ ସଫଳ ହେବ । ଦେଶ ମାତୃକାର ନାଁ ରଖିବ । ହେଲେ ସବୁ ଆଶା ମୋର ନିଷ୍ଫଳ ହୋଇଗଲା ।

ଅମର — ମୁଁ ନିଷ୍ଫଳ ହୋଇନି ମାଆ । ମୋ ସଫଳତା ନିଶ୍ଚୟ ମାନବ ସଭ୍ୟତା ପାଇଁ ଅମୃତତୁଲ୍ୟ ହେବ ବୋଲି ବିଶ୍ୱାସ କରିଥିଲି । କିନ୍ତୁ ତାହା ଶେଷରେ ହଳାହଳ ବିଷରେ ପରିଣତ ହୋଇଗଲା ମାଆ । ମୁଁ ତାକୁ ନଷ୍ଟ କରିଦେବାକୁ ଚାହେଁ ।

ମାଆ — କିନ୍ତୁ କାହିଁକି ? ବିଷରୁ ତ ଔଷଧର ସୃଷ୍ଟି । ବିଷକୁ ବିଷହରଣ କରେ ବୋଲି ତୁ କ'ଣ ଜାଣିନୁ ?

ଅମର — ଏ ବିଷ ସେ ବିଷ ନୁହେଁ ମା... ମୋର ଆବିଷ୍କାର ଔଷଧର ପ୍ରଥମ ପ୍ରୟୋଗ ପରେ ମୁଁ ତା'ର ପ୍ରତିକ୍ରିୟାରେ ଭିନ୍ନ ଏକ ବିଶ୍ୱରୂପର ଦର୍ଶନ କରି ଆତ୍ମବିସ୍ମୃତ ହୋଇଯାଇଛି । ଉତ୍ତର ପୁରୁଷମାନଙ୍କର ଉତ୍ତରାଧିକାର ଦାୟିତ୍ୱର ଚିନ୍ତା ମୋତେ ଏବେ ମ୍ରିୟମାଣ କରୁଛି ।

ମାଆ — ସେଇଟା କଣ ମାତା ଯଶୋଦା କିମ୍ବା ଅର୍ଜୁନଙ୍କ ବିଶ୍ୱରୂପ ଦର୍ଶନ ଠାରୁ ଆହୁରି ଆଶ୍ଚର୍ଯ୍ୟମୟ ?

ଅମର — ମହିଷାସୁରର ବିଶ୍ୱରୂପ ଦର୍ଶନଠାରୁ ଆହୁରି ଭୟଙ୍କର ସେ ସ୍ୱରୂପ । ତା'ର ପ୍ରଥମ ପ୍ରୟୋଗର ପ୍ରତିକ୍ରିୟାରେ ମୁଁ ଯାହା ଦେଖିଛି ତାହା ହିରୋସୀମା, ନାଗାସାକିର ଭୟାବହତା ଠାରୁ ଆହୁରି ବିଭତ୍ସ ଆହୁରି ଧ୍ୱଂସକାରୀ ।

ମାଆ — ତା' ହେଲେ ତାକୁ ସାର୍ବଜନୀନ କରିବା ପୂର୍ବରୁ ଯେତେ ଶୀଘ୍ର ସମ୍ଭବ ଧ୍ୱଂସ କରିଦେବା ଆବଶ୍ୟକ । କିନ୍ତୁ ମୁଁ ବୁଝିପାରୁନି ସାମାନ୍ୟ ଏକ ଔଷଧର ପ୍ରତିକ୍ରିୟା ଏତେ ଧ୍ୱଂସକାରୀ ହେଲା କିପରି ?

ଅମର — ନାରୀ ଯଦି ତା'ର ରୂପ ଯୌବନକୁ ଉପଭୋଗର ସାଧନ ବୋଲି ଧରିନିଏ ? ମାତା ଯଦି ତା'ର ଗର୍ଭଧାରଣକୁ ବିଡମ୍ବନା ବୋଲି ଭାବିନିଏ ? ମାତାର ଜଠର ଯଦି କବରଖାନା ପାଲଟିଯାଏ ? ଆଉ ସେଇଥିପାଇଁ ପ୍ରତ୍ୟକ୍ଷ ଭାବେ ଦାୟୀ ତା'ର ଅଖଣ୍ଡ ଯୌବନର ଅପରୂପ ରୂପ ଲାବଣ୍ୟ ହୁଏ ? ଏବଂ ସେଇ ରୂପଲାବଣ୍ୟ ପାଇଁ ଉତ୍ତରଦାୟୀ ହୁଏ ମୋର ଏଇ ଆବିଷ୍କୃତ ମହୌଷଧି... ? ତାହେଲେ... ?

ମାଆ — ଆଃ ! ଏ ଆବିଷ୍କାର କେବେ ମହୋଷଧି ହୋଇପାରେନା । ବରଂ ମାନବ ଜାତି ପାଇଁ ଏହା ହଳାହଳ ବିଷ । ତାକୁ ଯେତେ ଶୀଘ୍ର ଧ୍ୱଂସ କରିଦେବୁ ସେତେ ମଙ୍ଗଳ । ନଚେତ୍ ନିଜେ ସେ ସବୁ ପିଇ ନୀଳକଣ୍ଠ ହୋଇଯାଆ ।

ଅମର — ତାକୁ ଧ୍ୱଂସ କରିବା ପୂର୍ବରୁ ଅଳସୀକୁ ଧ୍ୱଂସ କରିବାକୁ ପଡିବ ମାଆ ଆଉ ସେଥିପାଇଁ ମୁଁ ଅସମର୍ଥ ।

ମାଆ — ସ୍ରଷ୍ଟା ଯେତେବେଳେ ନିଜ ସୃଷ୍ଟିକୁ ଆୟତ୍ତ କରିବାରେ ଅସମର୍ଥ ହୁଏ ସେତେବେଳେ ସେ ପରମଶକ୍ତିର ଶରଣ ନିଏ । ତାଙ୍କୁ ପ୍ରାର୍ଥନା କରେ ।

ଅମର — ପରମଶକ୍ତିର ଶରଣ ନେବା ପୂର୍ବରୁ ମୁଁ କଣ୍ଟାକୁ କଣ୍ଟାରେ ବାହାର କରିବାର ପ୍ରଚେଷ୍ଟା ଆରମ୍ଭ କରିଛି । କାରଣ ମୁଁ ଜାଣେ ସଂଭୋଗ ମାନେ ନିଜେ ହିଁ ନିଜର ଧ୍ୱଂସ ରାସ୍ତା ଖୋଜି ଖୋଜି ବାହାର କରିନିଅନ୍ତି । ହୁଏତ ବା କିଛି ବିଳମ୍ବ ଘଟିପାରେ ।

ମାଆ — ତା'ହେଲେ ଅଳସୀକୁ ଛାଡ଼ି ଏଠି ଆସି ଲୁଚିଛୁ କାହିଁକି ? କାହା ଭୟରେ ? କୁଳାଙ୍ଗାର । ଯାଆ ଯୋଦ୍ଧା ଭଳି ପରିସ୍ଥିତିକୁ ସାମନା କର । ମରିବାକୁ ହୁଏ ଛାତି ଦେଖାଇ ବୀର ଭଳି ମର । ଅନୁତାପ କରିବାକୁ ହୁଏ ସମସ୍ତଙ୍କ ସାମନାରେ ସ୍ୱୀକାର କରି ପ୍ରାୟଶ୍ଚିତ କର । ପଳାତକ, କାପୁରୁଷ ଭଳି ମୁହଁ ଲୁଚେଇ ବଞ୍ଚିବାରେ କିଛି ବି ଗୌରବ ନାହିଁରେ ପୁଅ । ସେଥିରେ ମୁଁ କି ତୋର ପିତା କେହି ଖୁସି ହେବେ ନାହିଁ । ଯା ଫେରି ଯା... ।

| | |
|---|---|
| ଅମର | ତୁମକୁ କେମିତି ବୁଝେଇବି ମାଆ । ଯୋଦ୍ଧାକୁ ସମ୍ମୁଖରୁ ଆକ୍ରମଣ କରାଯାଏ । ଯୋଦ୍ଧା ସହିତ ସମ୍ମୁଖ ଯୁଦ୍ଧ କରାଯାଇପାରେ । କିନ୍ତୁ ବିଶ୍ୱାସଘାତକ ସହିତ ଯୁଦ୍ଧ କରିବାକୁ ହେଲେ ତାରି ଭାଷାରେ, ତାରି ଅସ୍ତ୍ରରେ ଯୁଦ୍ଧ କରିବାକୁ ପଡ଼େ । ମହାଭାରତର ଶ୍ରୀକୃଷ୍ଣ ଅଥବା ଇତିହାସର ଚାଣକ୍ୟଙ୍କ ଭଳି । ତୁମେ ନିଶ୍ଚିନ୍ତ ରୁହ ମାଆ, ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଏ ସଂଗ୍ରାମ ମୋତେ ଚଳେଇ ରଖିବାକୁ ପଡ଼ିବ । ନଚେତ ଉତ୍ତରପୁରୁଷମାନଙ୍କର ସମସ୍ତ ଧ୍ୱଂସର ଅପବାଦ ନିଜ ମୁଣ୍ଡରେ ବହନ କରି ମୁଁ ନିଶ୍ଚିନ୍ତ ମନରେ ଏ ସଂସାର ଛାଡ଼ି ଯାଇପାରିବି କିପରି ? (ଖୋଜିଲେ) ମାଆ ମାଆ... ତୁମେ ମୋତେ ଅଭିଶାପ ଦେବ ମୁଁ ଜାଣେ ତଥାପି ଆଶୀର୍ବାଦ କର ଯେ ମୁଁ ଏ ଅଭିଶାପରୁ ଯେମିତି ଯଥାଶୀଘ୍ର ମୁକ୍ତ ହୋଇପାରେ । (ଫେରି ଯାଉଥିଲେ ଦୃଷ୍ଟିଗୋଚର ହେଲା ଏକ କଙ୍କାଳ) କଙ୍କାଳ କାହାର ? (ଖୋଳିଲେ । ଦେଖାଗଲା ଏକ ଛାୟା ) କିଏ କିଏ ସେଠି ? |
| ଚାନ୍ଦିନୀ | ମୋତେ ଚିହ୍ନିପାରୁନ ? |
| ଅମର | କିଏ ? ଚାନ୍ଦିନୀ ତୁମେ ଏଠି । |
| ଚାନ୍ଦିନୀ | ମୋ କଥା କ'ଣ ଆଉ ତୁମର ମନେଅଛି ? |
| ଅମର | କୈଶୋରର ପ୍ରଥମ ପ୍ରେମକୁ କେହି କ'ଣ କେବେ ଭୁଲିଯାଇପାରେ ? |
| ଚାନ୍ଦିନୀ | ଏତେଦିନ ଧରି ଭୁଲିଯାଇଥିଲ କେମିତି ? |
| ଅମର | ଭୁଲିଯାଇନଥିଲି । ଏକ ବୃହତ୍ତର ସ୍ୱାର୍ଥ ପାଇଁ ପ୍ରେମକୁ ଉତ୍ସର୍ଗ କରିଦେଇଥିଲି । |
| ଚାନ୍ଦିନୀ | ଅବଜ୍ଞା କରିଥିଲ ବୋଲି ସ୍ୱୀକାର କରୁନ ? |
| ଅମର | ତୁମର ଅଭିଯୋଗକୁ ଖଣ୍ଡନ କରିବାର ଉପାୟ ନାହିଁ ।<br>ଏଥର କୁହ ତୁମ ଜୀବନ, ତୁମ ବର୍ତ୍ତମାନର କଥା । |
| ଚାନ୍ଦିନୀ | ପିଲାଦିନରୁ ସମସ୍ତ କୈଶୋର ଆମେ ଏଇ ବେଳାଭୂମିରେ କଟାଇଛୁ । ଚୋରାବାଲିର ଏଇ ସଂକେତ ଆମକୁ ପ୍ରତି ମୁହୂର୍ତ୍ତରେ ସତର୍କ କରାଇ ଚାଲିଥିଲେ ମଧ୍ୟ କୈଶୋରର କେଉଁ ଏକ ଦୁର୍ବଳ ମୁହୂର୍ତ୍ତରେ ଆମେ ସେଥିରେ ପାଦ ଖସାଇବାକୁ ବାଧ୍ୟ ହୋଇଛୁ । ତା'ପରେ ତୁମେ ଡାକ୍ତରୀ ପାଠ ପଢ଼ିବାକୁ ଚାଲିଗଲ ଚେନ୍ନାଇ ଆଉ ହଜିଗଲ ଜନଗହଳିର ଚୋରାବାଲିରେ । |
| ଅମର | ଠିକ୍ କହିଛ । ହଜିଗଲି ମୁଁ । ଖାଲି ମୁଁ ନୁହେଁ ମୋର ଅତୀତ ମୋର ଭବିଷ୍ୟତ । ମୋର ଜୀବନ, ଦର୍ଶନ ସବୁ ହଜିଗଲା । ମୋର ଆଦର୍ଶ ଆଉ ଏକ ନୂଆପଥର ସନ୍ଧାନରେ ବିମୁଗ୍ଧ ହେଲା । ଜନସେବା ପାଇଁ ପ୍ରାକୃତିକ ବିସ୍ମୟ ସବୁକୁ ତନ୍ନତନ୍ନ କରି ବିଶ୍ଳେଷଣ କରିବାକୁ ଲାଗିଲି । ବ୍ୟବଚ୍ଛେଦ କରିଚାଲିଲି ମୁର୍ଦ୍ଦାରମାନଙ୍କୁ । ପରିଶେଷରେ ମୋ ପରୀକ୍ଷାର ଚରମ ସଫଳତା ବୋଲି ଯାହା ମୁଁ ଆବିଷ୍କାର କଲି ପର ମୁହୂର୍ତ୍ତରେ ତାହା ମୋ ଜୀବନର ଚରମ ବିଫଳତା ହୋଇ ପ୍ରତୀୟମାନ ହେଲା । |
| ଚାନ୍ଦିନୀ | ଗବେଷଣା କ'ଣ ବିଫଳ ହେଲା ? |
| ଅମର | ନା ସଫଳ ହେଲା । ମାତ୍ର ଜନ୍ମ ନେଲା ଆଉ ଜଣେ ଭସ୍ମାସୁର । |
| ଚାନ୍ଦିନୀ | କିଏ ଅଳସୀ ? ସେ ତ ତୁମର ସ୍ତ୍ରୀ... |
| ଅମର | ଭସ୍ମାସୁର ବି ଭକ୍ତ ଥିଲା । ବରପ୍ରାପ୍ତି ପରେ ସେ ଭସ୍ମାସୁରରେ ରୂପାନ୍ତରିତ ହୋଇଗଲା । |
| ଚାନ୍ଦିନୀ | କାହିଁକି ଏମିତି ହେଲା ? |
| ଅମର | ମୁଁ ମଣିଷର ପ୍ରତିନିଧି ଭାବି ଅଳସୀକୁ ଗୋଟିଏ ଅକ୍ଷୟ ଜୀବନ ଓ ଗୋଟିଏ ଅକ୍ଷତ ଯୌବନ ପ୍ରଦାନ କରିଥିଲି । ଯାହା ପ୍ରକୃତିର ନିୟମ ବହିର୍ଭୂତ ଥିଲା । |

| | |
|---|---|
| ଚାନ୍ଦିନୀ | ମାନବ ସେବା ପାଇଁ ପ୍ରକୃତିର ରହସ୍ୟଭେଦ କରିବା ବିଜ୍ଞାନର ଧର୍ମ । ବିଶେଷ କରି ଡାକ୍ତର ଓ ବିଜ୍ଞାନୀମାନଙ୍କର । ସେଥିରେ ତୁମର ଭୁଲ୍ ରହିଲା କେଉଁଠି ? |
| ଅମର | ହୁଏତ ପାତ୍ର ନିର୍ଣ୍ଣୟ କରିବାରେ ମୁଁ ତ୍ରୁଟି କରିଦେଇଥିଲି । ଅଳସୀ ସ୍ଥାନରେ ତୁମ ଭଳି ଜଣେ ସତ୍ ପାତ୍ରି ନିର୍ବାଚନ କରିଥିଲେ ମୁଁ ନିଶ୍ଚୟ ସଫଳତା ପାଇ ପାରିଥାନ୍ତି । |
| ଚାନ୍ଦିନୀ | ତୁମେ ଭୁଲ୍ କହୁଛ ? ଅଳସୀ ସ୍ଥାନରେ ଯେ କେହି ଥିଲେ ବି ତା'ର ପ୍ରତିକ୍ରିୟା ସମ୍ଭବତଃ ସେଇ ଏକା ପ୍ରକାର ହିଁ ହୋଇଥାନ୍ତା । କାରଣ ଅମରତ୍ୱ ନିଜେ ହିଁ ଗୋଟିଏ ଭସ୍ମାସୁର । ନହେଲେ ଅମରତ୍ୱ ପାଇବା ପରେ ହିରଣ୍ୟକସ୍ୟପୁ ଭଳି ବ୍ୟକ୍ତିତ୍ୱ, ରାବଣଙ୍କ ଭଳି ପଣ୍ଡିତ, ଜ୍ଞାନୀ ଗୁଣୀ ମଧ ରାକ୍ଷସ ପାଲଟିଗଲେ କାହିଁକି, କେମିତି ? ସେ କଥା ତୁମେ କେବେ ଚିନ୍ତା କରିଛ ? ଏଥିରେ ଅଳସୀର ଭୁଲ୍ ହୁଏତ ନଥାଇପାରେ ସବୁ ଦୋଷ ହୁଏତ ବା ସେଇ ଆବିଷ୍କାରର ହୋଇଥାଇପାରେ ଯାହାର ନାମ ଅମରତ୍ୱ । ଅଳସୀ ସ୍ଥାନରେ ମୁଁ ଥିଲେ ମଧ ହୁଏତ ସେଇ ଏକା ପ୍ରତିକ୍ରିୟା ଦେଖାଇଥାନ୍ତି । ଯଦିଓ ତୁମର ଅଳସୀ ଭଳି ମୁଁ ଏତେ ସୁନ୍ଦରୀ ନଥିଲି । |
| ଅମର | ସୁନ୍ଦରତା ମାପିବା ପାଇଁ ଆଖିର ଆଇନା ନୁହେଁ, ମନର ଆଇନା ଦରକାର ହୁଏ । |
| ଚାନ୍ଦିନୀ | ଅଳସୀ ତ ତୁମ ମନ ଆଇନାର ଅଲିଭା ଚିତ୍ରପଟ ପାଲଟି ସାରିଥିଲା । ତାହେଲେ... |
| ଅମର | ଆହାର, ନିଦ୍ରା, ମୈଥୁନ, ଭୟ... ଯେତେ ବଢ଼େଇଲେ ସେତେ ବଢେ । ସେହିପରି ମଣିଷ ସଂଭୋଗ ଆଉ କାମନା ଯେତେବେଳେ ଅଣାୟତ୍ତ ହୁଏ ସେତେବେଳେ ତା'ର ଅଧଃପତନ ପାଇଁ ଅନେକ ସଟକର୍ଟ ରାସ୍ତା ଖୋଲିଦିଏ । ଅଳସୀର ସେ ଅଧଃପତନ ପାଇଁ ପରୋକ୍ଷରେ ଦାୟୀ ଥିଲି ମୁଁ ଓ ମୋର ଆବିଷ୍କୃତ ଔଷଧି । ତେଣୁ ମୁଁ ପ୍ରତିବାଦ ନ କରି ତାକୁ ପରିତ୍ୟାଗ କରି ଚାଲିଆସିଲି । |
| ଚାନ୍ଦିନୀ | ଏଠିକି କାହିଁକି ? |
| ଅମର | ଯେତେବେଳେ ବର୍ତ୍ତମାନ ଆଉ ଭବିଷ୍ୟତର ସବୁ ପଥ ଆଖି ଆଗରେ ଝାପ୍‌ସା ହୋଇଆସେ, ସେତେବେଳେ ଅତୀତ ତା'ର ସ୍ମୃତିର ପୃଷ୍ଠା ସବୁ ଖୋଲି ଆହୁରି ବେଶୀ ଉଜାଗର କରିଦିଏ । ବହୁଦିନରୁ ଭୁଲିଯାଇଥିବା ପିଲାଦିନର ଧୂଳିଖେଳ ସବୁ ବେଶୀ ପ୍ରାଞ୍ଜଳ ହୋଇ ନାଚିଉଠେ ସ୍ମୃତିର ସେଇ ଅଗଣାରେ । ଜୀବନ ବେଶୀ ଆପଣାର ମନେହୁଏ, ଆକର୍ଷଣୀୟ ହୋଇଉଠେ ଅତୀତର ଇତି କଥା ସବୁ । |
| ଚାନ୍ଦିନୀ | ସେଇ ମର୍ମରେ ମୋ କଥା ବି ତ ତୁମର ମନେପଡ଼ିଥିବ ? |
| ଅମର | ଖାଲି ତୁମେ ଏକା ନୁହେଁ ? ଏଇ ଗାଁ, ନଈ, ବେଳାଭୂମି, ଚୋରାବାଲି, ସବୁ କିଛି ଆଖି ଆଗରେ ଭାସିଉଠିଲା । ସଜଳ ହୋଇଗଲା ଆଖିପତା । ଅଥଚ ମୁଁ ଦୋଷୀ ତୁମ ପାଖରେ । ଏଇ ଗାଁ ଆଉ ଜନ୍ମମାଟି ପାଖରେ । |
| ଚାନ୍ଦିନୀ | ତୁମେ ସେମିତି କାହିଁକି ଭାବୁଛ ? |
| ଅମର | ଏଇଠୁ ମୁଁ ଅସୁମାରୀ ସମ୍ଭାବନା ଆଉ ପ୍ରତିଶ୍ରୁତିର ସ୍ୱପ୍ନ ନେଇ ଚାଲିଯାଇଥିଲି ବିଦେଶ । ଅଥଚ ସମସ୍ତ କୃତକର୍ମ ଆଉ ମୋର ଅମୂଲ୍ୟ ଯୌବନକୁ ବିଦେଶରେ ହଜେଇ ଦେଇ ଶୂନ୍ୟହସ୍ତରେ ଏଠିକି ଫେରିଆସିଛି କେବଳ ଅତୀତ ହୋଇ । ମୋ ପାଖରେ କାହାକୁ ଦେଲାଭଳି ନା ଅଛି ସ୍ୱପ୍ନ ନା ଅଛି ଆଶା... ମୁଁ କେବଳ ଏକ ଜରାଜୀର୍ଣ୍ଣ ଶରୀର । |
| ଚାନ୍ଦିନୀ | ସମୟର ଚଲାପଥରେ ଏମିତି ସବୁ ଦିନେ ନା ଦିନେ ହଜିଯାଏ । କୈଶୋର, ଯୌବନ, ବାର୍ଦ୍ଧକ୍ୟର ସବୁପ୍ରାପ୍ତି, ସବୁ ଠିକଣା ବି, ଦିନେ ମାଟିରେ ସେମିତି ମିଶିଯାଏ । ସେଥିପାଇଁ ଦୁଃଖ କରି ଲାଭ କ'ଣ ? |

ଅମର	ମୋ ଉପରେ ତୁମର ରାଗ ଆସେନି ? ଗାଳିଦେବାକୁ ଇଚ୍ଛା ହୁଏନି ? ତୁମେ କ'ଣ ମୋତେ କ୍ଷମା କରିଦେଇଛ ?

ଚାନ୍ଦିନୀ	କହିପାରିବିନି । ତେବେ ତୁମ ଠାରୁ ଜବାବ ମାଗିବାକୁ ଯେତେବେଳେ ଗୋଟିଏ ଆଙ୍ଗୁଳି ତୁମ ଆଡକୁ ଦେଖାଇ ପ୍ରଶ୍ନ କରିବାକୁ ଚାହିଁଛି ସେତେବେଳେ ଆଉ ତିନୋଟି ଆଙ୍ଗୁଳି ମୋ ଆଡ଼କୁ ଚାହିଁ ଠିକ୍ ଏକା ପ୍ରଶ୍ନ ମୋତେ ପଚାରିଛନ୍ତି । ମୁଁ ନିରୁତ୍ତର ହୋଇ ଆତ୍ମନିରୀକ୍ଷଣ କରିଛି ଆଉ ଆତ୍ମବିସ୍ମୃତ ହୋଇଛି । କାରଣ ଆମ ଦୁହିଁଙ୍କର ସମ୍ପର୍କ ଭିତରେ ନା ଥିଲା ପ୍ରତିଶ୍ରୁତି ନା ଥିଲା ପ୍ରାପ୍ତିର ପ୍ରଲୋଭନ । କେବଳ ଥିଲା ଅହେତୁକ ଆକର୍ଷଣ ଏବଂ ଅଯାଚିତ ସମର୍ପଣ ।

ଅମର	ଆଉ ଥିଲା ପ୍ରଗଳ୍ଭ ନୀରବତା, ଆଉ ସଲଜ୍ଜ ଦୃଷ୍ଟିକୋଣ । ମଝିରେ ମଝିରେ ଅଭିମାନର ଅଦିନିଆ ଧୂଳିଝଡ଼, ଅନୁତାପର ଅମାନିଆ ବର୍ଷାର ଅସରାଏ ଲୁହଧାର, ତା'ପରେ ପ୍ରକୃତିର ଶାନ୍ତ କମନୀୟ ରୂପ ଭଳି ଜୀବନ ହୋଇଯାଉଥିଲା ମଧୁମୟ... ଆଃ... କି ଅପୂର୍ବ ସେ ଅନୁଭୂତି ସବୁ ।

ଚାନ୍ଦିନି	ତୁମେ ଚାଲିଗଲା ପରେ ମୋ ଜୀବନର ମୋଡ଼ କିନ୍ତୁ ତୀବ୍ର ଗତିରେ ବଦଳିବାକୁ ଲାଗିଲା । ପ୍ରେମ ତା'ର ନୀରବତାର ପଥ ବଦଳାଇଦେଲା । ଖାଲି ପ୍ରତିଶ୍ରୁତିର ଛଳନା, ପ୍ରଲୋଭନ ଆଉ ପ୍ରତାରଣା ଭିତରେ କେଇଟା ବର୍ଷ ଯାଉଣୁ ନ ଯାଉଣୁ ମୋ ଗର୍ଭରେ ଆଶ୍ରୟ ନେଇଥିବା କନ୍ୟା ଭ୍ରୁଣକୁ ମୋ ଅଜାଣତରେ ହତ୍ୟା କରାଯିବା ପରେ ମୋ ଅନ୍ତରାତ୍ମା ପ୍ରତିବାଦ କରିଉଠିଲା । ମୁଁ ସ୍ୱର ଉତ୍ତୋଳନ କଲି । ଫଳସ୍ୱରୂପ ମୋତେ ହତ୍ୟା କରି ଏଇ ବେଳାଭୂମିର ଚୋରାବାଲିରେ ସମାଧି ଦେଇଦିଆଗଲା ।

ଅମର	କିଏ ସେ ନୃଶଂସ ? ତୁମର ସ୍ୱାମୀ ?

ଚାନ୍ଦିନୀ	ସେ ଦିନେ ଥିଲା ତୁମର ବେଷ୍ଟ ଫ୍ରେଣ୍ଡ୍ । ପୁଣି ଆମ ପ୍ରେମର ପତ୍ରବାହକ ।

ଅମର	ତିମିର..... । କିନ୍ତୁ ସ୍କୁଲ, କଲେଜ ଜୀବନରେ ସେ ତ ଥିଲା ଅତ୍ୟନ୍ତ ଶାନ୍ତ, କୋମଳ ଆଉ ଲଜ୍ଜାଶୀଳ ।

ଚାନ୍ଦିନୀ	ପିତାର ସଞ୍ଚିତ ଅପରିଯ୍ୟାପ୍ତ ଅର୍ଥ ଏକ ଅପରିପକ୍ୱ, ଅପଦାର୍ଥ, ଉତ୍ତରାଧିକାରୀ ହାତରେ ପଡ଼ିବା ପରେ ଯାହା ହେବା କଥା ସେଇଆ ହେଲା । ଅର୍ଥର ଅପବ୍ୟବହାର କରି ଉଶୃଙ୍ଖଳ ହୋଇଉଠିଲା ସିଏ । ଏପରିକି ଭ୍ରୁଣହତ୍ୟା ପରେ ମୋତେ ମଧ ହତ୍ୟା କରିବାକୁ କୁଣ୍ଠାବୋଧ କରିନଥିଲା ସିଏ ।

ଅମର	ଏହାକୁ ମୁଁ ନିୟତି କହିବି ନା ଦୁର୍ଯୋଗ କହିବି ବୁଝିପାରୁନି ।

ଚାନ୍ଦିନୀ	ଦାରିଦ୍ର୍ୟ ଉପରେ ଅର୍ଥବଳର ଚକ୍ରାନ୍ତ ବି କହିପାର ।

ଅମର	ଅର୍ଥ ହିଁ ଅନର୍ଥର ମୂଳ । ସେ ଆମେରିକା ହେଉ ବା ଭାରତ । ସବୁଠି ମଣିଷ ଜୀବନ ଉପରେ ତା'ର ପ୍ରତିକ୍ରିୟା ଅଳ୍ପ ବହୁତେ ପ୍ରାୟ ଏକା ଭଳି । ତେବେ ମୁଁ ତୁମକୁ ନ୍ୟାୟ ଦେବାରେ ନିଶ୍ଚୟ ସାହାଯ୍ୟ କରିବି ।

ଚାନ୍ଦିନୀ	ସେଥିପାଇଁ ମୋର ଆଗ୍ରହ ନାହିଁ କି ଭ୍ରୁକ୍ଷେପ ମଧ ନାହିଁ ।

ଅମର	ତୁମ ଭଳି ଅନେକ ପୀଡ଼ିତାଙ୍କର ଏଇ ଅନାସକ୍ତ ଭାବ ଯୋଗୁଁ ଅପରାଧିମାନେ ଅଧିକରୁ ଅଧିକ ଅପରାଧ କରିବାର ସୁଯୋଗ ପାଉଛନ୍ତି ।

ଚାନ୍ଦିନୀ	ଏ ଦେଶରେ ମୃତ୍ୟୁଦଣ୍ଡ ଭଳି କଠୋର ଦଣ୍ଡ ବି ତ ଅପରାଧି ଆଉ ଅପରାଧର ସଂଖ୍ୟା କମାଇପାରିନି । କାହିଁକି ?

ଅମର	ତୁମେ ତା ହେଲେ ମୋ ପାଖକୁ ଆସିଛ କାହିଁକି ?

ଚାନ୍ଦିନୀ	କିଛି ଆଶା ବା ପ୍ରତ୍ୟାଶା ନେଇ ଆସିନଥିଲି । ଟିକିଏ ଦେଖିବା, ଦି' ପଦ କଥା ହେବା, ଆଉ ତୁମ ଅଳସୀ ବିଷୟରେ ଜାଣିବାକୁ ଆସିଥିଲି ।

ଅମର	ଅଳସୀ ମୋତେ ପ୍ରତ୍ୟାଖ୍ୟାନ କଲାପରେ ତୁମ କଥା ହିଁ ମୋର ବାରମ୍ବାର ମନେପଡୁଥିଲା । ତେଣୁ

| | |
|---|---|
| | ମୁଁ ଆମେରିକାର ସୀମା ସରହଦ ଡେଇଁ ଏଠିକି ଚାଲିଆସିଲି ତୁମକୁ ଦେଖିବି ବୋଲି.... କିନ୍ତୁ.... |
| ଚାନ୍ଦିନୀ | ତୁମେ କ'ଣ ଭାବିଥିଲ ମୁଁ ଏପର୍ଯ୍ୟନ୍ତ ଅପେକ୍ଷା କରିଥାନ୍ତି.... ? ତୁମ ଆସିବା ବାଟକୁ ଚାହିଁ, ଋତୁଚକ୍ରରେ ମଳୟର ସୀମରଣ ହୁଏତ ବା ଆସନ୍ତା କାଲି ଏ ପୃଥିବୀକୁ ଫେରିପାରେ କିନ୍ତୁ ଯୌବନ ତ ଆଉ ଫେରିବାର ନୁହେଁ। କେଜାଣି ତୁମ ପାଖରେ ଯଦିବା ତା'ର ଫେରିବାର ଠିକଣା ଲେଖା ଥିବ। |
| ଅମର | ସେ କଥାର ଉତ୍ତର ମୋ ପାଖରେ ନାହିଁ । ତଥାପି ତୁମର ନିରୁଦ୍ଦିଷ୍ଟ ହେବାର ଖବର ଶୁଣି ମୁଁ ଭାବିଲି ମୋର ଅତୀତ, ବର୍ତ୍ତମାନ ଆଉ ଭବିଷ୍ୟତ ସମସ୍ତେ ଯେମିତି ମୋ ଅନ୍ତରରୁ ଏକାସାଙ୍ଗରେ ନିରୁଦ୍ଦିଷ୍ଟ ହୋଇଯିବାକୁ ଚାହାଁନ୍ତି । ମୋର ଅସ୍ତିତ୍ୱ ଏକ ପରିତ୍ୟକ୍ତ ପ୍ରଜାପତିର ବିଦୀର୍ଣ୍ଣ ପୁ୍ୟପା ପରି ଏକ ମୂଲ୍ୟହୀନ ହୋଇପଡ଼ିଛି । ଏ ପୃଥିବୀର ରଙ୍ଗ ଯେମିତି ମୋ ଆଖିରେ କ୍ରମଶଃ କ୍ରମଶଃ ପାଣ୍ଡୁର ବର୍ଣ୍ଣଧାରଣ କରିଚାଲିଛି । |
| ଚାନ୍ଦିନୀ | ଯଦି ଆପତ୍ତି ନଥାଏ, ତାହେଲେ ମୋ ସହିତ ମୋ ହାତ ଧରି ଆସ, ମୁଁ ପ୍ରତୀକ୍ଷା କରିଛି । ଦେହରେ ନୁହେଁ। ବିଦେହରେ। |
| ଅମର | ତୁମେ ନ୍ୟାୟ ପାଇବାକୁ ଚାହଁନା ? |
| ଚାନ୍ଦିନୀ | ତୁମକୁ ପାଇଗଲେ ଏ ପୃଥିବୀରୁ ସବୁ ପ୍ରାପ୍ୟ ମିଳିଗଲା ବୋଲି ଧରିନେବି । |
| ଅମର | ତୁମକୁ ପାଇଲେ ମୁଁ ବି ଧନ୍ୟ ହୋଇଯିବି । କିନ୍ତୁ..... |
| ଚାନ୍ଦିନୀ | ପୁଣି କିନ୍ତୁ କାହିଁକି ? ଜୀବନର ସୀମାରେଖା ଡେଇଁ ମୃତ୍ୟୁର ଏରୁଣ୍ଡି ଭିତରକୁ ପାଦ ପକାଇବାକୁ ତୁମକୁ ଡର ଲାଗୁଛି ? |
| ଅମର | ନା, ମୃତ୍ୟୁଠାରୁ ଶୀତଳତମ ସ୍ଥାନରୁ ଦିନ ପରେ ଦିନ, ରାତି ପରେ ରାତି କଟାଇ ମୁଁ ଫେରିଛି । ମୃତ୍ୟୁ ମୋ ପାଇଁ ଅପରିଚିତ ନୁହେଁ । ମାତ୍ର ଏଠି ମୋର ଅନେକ କାର୍ଯ୍ୟ ବାକି ଅଛି । ଅନେକ ଉତ୍ତରଦାୟିତ୍ୱ ବାକି ଅଛି । |
| ଚାନ୍ଦିନୀ | ମୃତ୍ୟୁର ନିକଟତର ହେଲେ ଏମିତି ପୁଅ ଝିଅ ନାତିନାତୁଣୀଙ୍କ କଥା କହି ମଣିଷ ବିଭିନ୍ନ ଦାୟିତ୍ୱ ଆଉ କର୍ତ୍ତବ୍ୟର ବାହାନା କରେ । |
| ଅମର | ବାହାନା ପୁଣି ମୃତ୍ୟୁକୁ ? ନା ଚାନ୍ଦିନୀ, ପ୍ରକୃତରେ ମୋର ଚିନ୍ତା ଆଉ ଆଶଙ୍କା ମୋତେ ନେଇ ନୁହେଁ । ମୋର ଉଦ୍‌ବେଗର କାରଣ ହେଲା.... |
| ଚାନ୍ଦିନୀ | ଅଳସୀ । |
| ଅମର | ଏ ପୃଥିବୀରେ ଅଳସୀ ବଞ୍ଚିଥିବା ପର୍ଯ୍ୟନ୍ତ ମୁଁ ଶାନ୍ତିରେ ମରିପାରିବି ନାହିଁ । |
| ଚାନ୍ଦିନୀ | ଅଳସୀକୁ ତ ତୁମେ ଅମର କରିଦେଇଛ । ଏବେ ତୁମର ଅମର ହୋଇ ବଞ୍ଚିରହିବାର ପାଳି । ସେଇଆ ଚାହଁନା ? ଅଥଚ ସେ ଆମେରିକାରେ ଆଉ ତୁମେ ଭାରତରେ । |
| ଅମର | ନା ଠିକ୍ ସେଇଆ ନୁହେଁ । ମୁଁ ମୃତ୍ୟୁକୁ ଭୟ କରେନା କି ଜୀବନରେ ମଧ୍ୟ ମୋର ବିତୃଷ୍ଣା ନାହିଁ। ଅଥଚ ମୁଁ ନାଚାର । |
| ଚାନ୍ଦିନୀ | ତାହେଲେ ତୁମେ କ'ଣ ଅଳସୀକୁ ହତ୍ୟା କରିବ ? |
| ଅମର | ନିଜ ହାତରେ ଗଢ଼ିଥିବା ସୁନ୍ଦର ସୃଷ୍ଟିକୁ ନିଜ ହାତରେ ଧ୍ୱଂସ କରିଦେବା ଏତେ ସହଜ ନୁହେଁ । ସେଇଥିପାଇଁ ହୁଏତ ସୃଷ୍ଟିକର୍ତ୍ତା ବ୍ରହ୍ମା ଧ୍ୱଂସର ଦାୟିତ୍ୱ ନିଜେ ଗ୍ରହଣ ନ କରି ଶିବ ଶଙ୍କରଙ୍କ ହାତରେ ଅର୍ପଣ କରି ଦେଇଥିଲେ । |
| ଚାନ୍ଦିନୀ | ତାହେଲେ ତୁମେ ମଧ୍ୟ ସେ ଦାୟିତ୍ୱ ଆଉ କାହା ହାତରେ ନ୍ୟସ୍ତ କରିଦେଉନ । |
| ଅମର | ନା। କାରଣ ମୋର ମୃତ୍ୟୁ ସମୟରେ ନିଜ ଆଖିରେ ମୃତ୍ୟୁର ଆଉ ଏକ ସୁନ୍ଦର କମନୀୟ ଅଥଚ |

ବିଭତ୍ସ ରୂପ 'ଅଳସୀ'କୁ ମୁଁ ଆଖି ପୂରାଇ ଦେଖିବାକୁ ଚାହେଁ । ଯେମିତି ମହିଷାସୁର ପ୍ରତ୍ୟକ୍ଷ କରିଥିଲା ଅଥବା ପୁତନା । ତାହେଲେ ହୁଏତ ବା ମୋର ଆପଣା ଭୁଲ୍‌ର ପ୍ରାୟଶ୍ଚିତ କରିପାରିବି ।

ଚାନ୍ଦିନୀ — କିଏ ଏ ଆଡକୁ ଆସୁଛି ବୋଧହୁଏ।

ଅମର — କିଏ ଅଳସୀ ?

ଚାନ୍ଦିନୀ — ହୁଏତ ତଟରକ୍ଷକ କିମ୍ବା ତସ୍କର । ତୁମେ ଲୁଚିଯାଅ । (ଅମର ଲୁଚିଗଲା । ଚାନ୍ଦିନୀ ହଜିଗଲା ।) (କିଛି ସମୟ ପରେ)

ଅମର — ସେ ହୁଏତ ଚାଲିଗଲାଣି । ତୁମେ କେଉଁଠି ଚାନ୍ଦିନୀ ? ସମୁଦ୍ର ବୋଧହୁଏ ଖୁବ୍ ଅଶାନ୍ତ ହୋଇଉଠିଲାଣି । ଜୁଆର ଆସିଲାଣି ବୋଧହୁଏ । ମୋର ବି ଏବେ ଫେରିଯିବା ଉଚିତ୍ । ଚାନ୍ଦିନୀ ସହିତ ଆଉ କେବେ ସାକ୍ଷାତ ହେବ କି ନା ଜାଣେ ନା ଆଉ କିଛି ସମୟ କଥାବାର୍ତ୍ତା ହୋଇଥିଲେ ଭଲ ଲାଗିଥାନ୍ତା । ସତରେ ଆଉ କ'ଣ ସେ କେବେ ଆସିବ ? କେଜାଣି ତା'ର ଇଚ୍ଛା । (ଚାଲିବାକୁ ଆରମ୍ଭ କଲେ ଓ ଛାୟାମୂର୍ତ୍ତି ଦେଖି) ଚାନ୍ଦିନୀ ଚାନ୍ଦିନୀ ତୁମେ ଫେରିଆସିଲ ବେଶ୍ ଭଲ ହେଲା । ମନେମନେ ମୁଁ ତୁମକୁ ହିଁ ଖୋଜୁଥିଲି । (ଚମକି ଉଠି) କିଏ ତୁମେ ? ତୁମେ ତ ଚାନ୍ଦିନୀ ନୁହଁ କି ଅଳସୀ ମଧ୍ୟ ନୁହଁ ? ତାହେଲେ ତୁମର ପରିଚୟ କ'ଣ ?

ଅଳସୀ — (ବୃଦ୍ଧାରୂପରେ) ମୋତେ ଦେଖି ତୁମେ ଚିହ୍ନିପାରୁନ ନା ଚିହ୍ନି ନ ଚିହ୍ନିବାର ବାହାନା କରୁଛ ?

ଅମର — କିଏ ଅଳସୀ ? ମୁଁ ତ ମୋ ଆଖିକି ବିଶ୍ୱାସ କରିପାରୁନି । ଆସ ଆସ ପାଖକୁ ଆସ । ମୁଁ ତୁମକୁ ଟିକିଏ ସ୍ପର୍ଶ କରି ଦେଖେ ।

ଅଳସୀ — ଦୂରେଇ ରୁହ ମୋ ଠାରୁ । ମୋତେ ସ୍ପର୍ଶ କରିବାର ଅଧିକାର ତୁମର ନାହିଁ । ମିଥ୍ୟାବାଦୀ, ପ୍ରତାରକ ।

ଅମର — ତୁମେ ଠିକ୍ କହିଛ । (ହସିଲେ) ଚାନ୍ଦିନୀ.... ଚାନ୍ଦିନୀ..... ଚାନ୍ଦିନୀ ଥରେ ଆସି ଦେଖିଯାଅ ମୋ ଅଳସୀର ଚିରହରିତ୍ ଅରଣ୍ୟକୁ ଆଉ ତା'ର ରୂପମାଧୁରୀକୁ ।

ଅଳସୀ — ମିଥ୍ୟାବାଦୀ, ଭଣ୍ଡ । ତୁମେ ମୋତେ ଠକିଛ । ତୁମ ଚିଠି ପଢ଼ି ତୁମର ଔଷଧର ଅବଶେଷକୁ ୨ୟ ଥର ପାନ କରି ମୁଁ ଭୁଲ୍ କରିଛି ।

ଅମର — ନା ନା । ମୋ ଭୁଲ୍‌ର ସଂଶୋଧନ ତୁମେ କରିଦେଇଛ । ଏବେ ମୁଁ ନିଶ୍ଚିନ୍ତ । ଆସ ଚାନ୍ଦିନୀ ଏବେ ତୁମ ସହିତ ତୁମ ହାତ ଧରି ତୁମ ନିକଟକୁ ମୁଁ ଫେରିଯାଇ ଶାନ୍ତିରେ ନିଶ୍ୱାସ ନେବାକୁ ଚାହେଁ ।

ଅଳସୀ : ମୋତେ ମୋ ପ୍ରାପ୍ୟ ଫେରାଇ ନ ଦେଇ ତୁମେ କୁଆଡେ ଯାଇପାରିବ ନାହିଁ ।

ଅମର — ତୁମର ପ୍ରାପ୍ୟ ? କ'ଣ ସତରେ କିଛି ବାକି ଅଛି ମୋ ପାଖରୁ ? କାହିଁ ମୋର ତ କିଛି ମନେପଡୁନି । ବରଂ ମୋର ସମସ୍ତ କିଛି ପ୍ରାପ୍ୟ ତୁମ ହସ୍ତରେ ଅର୍ପଣ କରିଦେଇ ମୁଁ ଲାଞ୍ଛିତ ଓ ପ୍ରତାରିତ ହୋଇ ଫେରିଆସିଛି ମୋ ଜନ୍ମଭୂମିକୁ ।

ଅଳସୀ — ମୋତେ ମୋ ଫର୍ମୁଲା ଫେରାଇଦିଅ ।

ଅମର — କଣ କହିଲ ତୁମ ଫର୍ମୁଲା.....ଠିକ୍ ଠିକ୍ ତୁମ ଯୌବନର ଫର୍ମୁଲା । ତାହା ଯେ ଏକାକି ତୁମର ପ୍ରାପ୍ୟ ସେକଥା ମୁଁ ଭୁଲିଯାଇଥିଲି । ଠିକ୍ ଅଛି ତୁମକୁ ତାହା ଏବେ ଫେରାଇ ଦେବାରେ ମୋର ଆପତ୍ତି ନାହିଁ । କିନ୍ତୁ ତାକୁ ନେଇ ତୁମେ କରିବ କ'ଣ ?

ଅଳସୀ — ସେଇ ମହୌଷଧିର ଉତ୍ପାଦନ କରିବି ।

ଅମର — ଓ.... ଅସଂଖ୍ୟ ରକ୍ତବୀର୍ଯ୍ୟର ଗୋଷ୍ଠୀ ନିର୍ମାଣ କରିବାକୁ ଚାହଁ ତା' ହେଲେ । ବାଃ, ବାଃ ଗୋଟଏ ରାକ୍ଷସକୁ ସୃଷ୍ଟି କରି ମୁଁ ଯେତିକି ଲାଞ୍ଛନା ପାଇଛି ପୁଣି ସେଥିରୁ କୋଟିଏ ରାକ୍ଷସର ସୃଷ୍ଟି କରି

ତୁମେ କ'ଣ ଏ ସୃଷ୍ଟିକୁ ଉପହାସ କରିବାକୁ ଚାହୁଁଛ ?

| | |
|---|---|
| ଅଳସୀ | ତୁମ ସହିତ ତର୍କ କରିବାକୁ ଚାହେଁନା । ଫର୍ମୁଲା ଦିଅ... |
| ଅମର | ଯଦି ନ ଦିଏ ? |
| ଅଳସୀ | (ପିସ୍ତଲ ବାହାର କରି) ଦରକାର ପଡ଼ିଲେ ଅଙ୍ଗୁଳି ଚଳେଇବାକୁ କୁଣ୍ଠା କରିବି ନାହିଁ । |
| ଅମର | ଜାଣେ ଜାଣେ ତୁମକୁ ଏବେ ମଣିଷ ରକ୍ତର ନିଶା ଘାରିଛି । ମଣିଷ ରକ୍ତଖିଆ ବାଘ ପାଲଟିଯାଇଛ ପରା ତୁମେ । କବନ୍ଧର ନୃତ୍ୟ ନ ଦେଖିବା ଯାଏ ତୁମର ଲେଲିହାନ ତୃଷା କ'ଣ ସହଜରେ ନିର୍ବାପିତ ହେବ ? |
| ଅଳସୀ | ପ୍ରଳାପ ବନ୍ଦ କର.....କୁହ ଫର୍ମୁଲା କାହିଁ ? |
| ଅମର | ଏଇ ନିଅ..... (ବାହାର କରୁ କରୁ ଅଳସୀ ଝାମ୍ପିନେଲା) ସାବଧାନ ଠିକ୍ ଠିକ୍ ଭାବରେ ତାକୁ ବୁଝିବାକୁ ଚେଷ୍ଟା କର ନ ହେଲେ ମୋ ଔଷଧର ୨ୟ ଡୋଜ ପିଇ ଅକାଳ ବାର୍ଦ୍ଧକ୍ୟକୁ ଡାକିଆଣିଲା ଭଳି ଧ୍ୱଂସକୁ ଡାକି ଆଣିବ ଆଉ କହିବ ଯେ ମୋର ଫର୍ମୁଲାରେ ଭୁଲ୍ ଲେଖାଥିଲା ବୋଲି । ନିଅ ପଢ ଏବଂ ବୁଝି ନ ପାରିଲେ ପଚାର, ବୁଝାଇଦେବି । |
| ଅଳସୀ | (ପଢିଲେ) ଶୂନ୍ୟରୁ ଶୂନ୍ୟକୁ......ବାସ୍ ଏତିକି ? ୟାର ଅର୍ଥ କ'ଣ ? |
| ଅମର | ତା'ର ଅର୍ଥ ? ସମସ୍ତେ ଜାଣନ୍ତି କିନ୍ତୁ କେହି ମନେରଖନ୍ତି ନାହିଁ । ସମସ୍ତେ ପଢ଼ିଛନ୍ତି କିନ୍ତୁ କେହି ଠିକ୍ ଭାବରେ ବୁଝି ପାରିନାହାନ୍ତି । ସମସ୍ତେ ନିତି ପ୍ରତିଦିନ ନିଜ ଆଖି ଆଗରେ ଦେଖୁଛନ୍ତି 'ବୋଲ ହରି, ହରି ବୋଲ' କିନ୍ତୁ ବିଶ୍ୱାସ କରୁନାହାନ୍ତି ଯେ ସେମାନଙ୍କୁ ମଧ୍ୟ ଦିନେ ସେଇ ଛଅଖଣ୍ଡି ବାଉଁଶର ରଥରେ ଚଢ଼ି ସେଇ ଅମୃତର ପଥରେ, ଅମୃତର ସନ୍ଧାନରେ ସ୍ୱର୍ଗଦ୍ୱାର ଆଡ଼କୁ ବାହାରିଯିବାକୁ ହେବ । |
| ଅଳସୀ | ପ୍ରହେଳିକା ବନ୍ଦ କରି ଶୀଘ୍ର କୁହ ଏହାର ଅର୍ଥ କ'ଣ ? |
| ଅମର | ଶୂନ୍ୟରୁ ଶୂନ୍ୟକୁ ଉଡିଯିବ ବନହଂସୀ । ଜୀବନର ବେଳା ଭୂମିରେ ଛାଡ଼ିଯିବ କିଛି ପାଦ ଚିହ୍ନ । ଇତିହାସର ପୃଷ୍ଠାରେ, ଦର୍ଶନର ଓଁକାର ଭିତରେ ଝାଡ଼ି ଦେଇଯିବ କିଛି ପର । ଯାହାକୁ ଦେଖି ଭବିଷ୍ୟତ ଉଦ୍‌ବୁଦ୍ଧ ହେବ । ଆଉ ଉତ୍ତର ପୁରୁଷ ଲେଖିବ ନୂଆ ନୂଆ ଦିଗନ୍ତର ଅସରନ୍ତି କବିତା । |
| ଅଳସୀ | ସଟ୍ ଅପ୍... ପାଗଳା କେଉଁଠିକାର । (ଗୁଳିକଲା) |
| | (ଦୂରରୁ ହୁଇସିଲର ଶବ୍ଦ ଶୁଭିଲା । ଅଳସୀ ଚୋରାବାଲି ଆଡ଼କୁ ଧାଇଁଲା ) |
| ଅମର | ସେପଟେ ଯାଅନା ଅଳସୀ । ଚୋରାବାଲି ଅଛି । (ଅଳସୀ ଚିତ୍କାର କଲା) |
| ଅଳସୀ | ଆଃ... ବଞ୍ଚାଅ.... ଚୋରାବାଲିରୁ ମୋତେ ବଞ୍ଚାଅ...। |
| | (ଦେଖାଗଲା ଚାନ୍ଦିନୀ ଧୀରେ ଧୀରେ ଆସି ଠିଆ ହେଲା । ହାତ ବଢେଇ ଡାକିଲା) |
| ଚାନ୍ଦିନୀ | ଆସ |
| ଅମର | ଚାଲ ଏବେ... |

(ଛାୟା ଦୁଇଟିର ପ୍ରସ୍ଥାନୋଦ୍ୟତ । ଆଲୁଅ ଲିଭିଲା)

**ଯବନିକା ପତନ**

♦♦♦

# କହିଲେ ଲାଜ

## ଚରିତ୍ରମାନେ

| | | |
|---|---|---|
| ଶିବ | – | ଛାତ୍ର |
| ପିଲା | – | ଛାତ୍ର (୪ଜଣ) |
| ରଞ୍ଜନ | – | ସୀତାର ପ୍ରେମିକ |
| ବଡ଼ବାବୁ | – | ରଞ୍ଜନର ଅଫିସର ଓ ସୀତାର ବାପା |
| ବି.ଇ.ଓ. | – | ବ୍ଲକ ଶିକ୍ଷା ଅଧିକାରୀ |
| ସରପଞ୍ଚ | – | ଗାଁ ସରପଞ୍ଚ |
| ୱାର୍ଡମେମ୍ବର | – | ଗାଁ ୱାର୍ଡମେମ୍ବର |
| ଗ୍ରାମବାସୀ | – | ୪/୫ ଜଣ |
| ସୀତା | – | ସ୍କୁଲ ଶିକ୍ଷା ସହାୟିକା |
| ହେଡ୍ ଦିଦି | – | ସ୍କୁଲର ପ୍ରଧାନ ଶିକ୍ଷୟତ୍ରୀ |

# କହିଲେ ଲାଜ

## ପ୍ରଥମ ଦୃଶ୍ୟ

(ପିଲାଟିଏ ଘଣ୍ଟି ଧରି ବଜାଇବାକୁ ଯାଉଛି । ତରତର ହୋଇ ସୀତା ପ୍ରବେଶ କଲା । ପିନ୍ଧିଛି ଘରୋଇ ଡ୍ରେସ୍ ଚୁଡ଼ିଦାର ପଞ୍ଜାବୀ)

ସୀତା — ହେ ଶିବ...ଗଲୁଗଲୁ । ଘଣ୍ଟିଟା ଏଇଠି ଥୋଇ ପାଣିଗିଲାସେ ଆଣିଲୁ । ଭାରି ଶୋଷ । (ପିଲା ପାଣିଆଣିବାକୁ ଗଲା । ସୀତା ଭିତରକୁ ଗଲା । ପିଲା ପାଣିନେଇ ଆସିଲା)

ଶିବ — ଦିଦି ପାଣି ନିଅନ୍ତୁ ।

ସୀତା — (ଭିତରୁ) ପାଣିଟା ସେଇଠି ଥୋଇ ଦେଇ ଦେଖିଲୁ କେତେଟା ବାଜିଲାଣି ।

ଶିବ — ଦଶଟା ବାଜିଥିଲା ବୋଲି ପରା ଘଣ୍ଟି ବଜେଇବାକୁ ଆସିଥିଲି ।

ସୀତା — ଆଉଥରେ ଦେଖ କେତେଟା ବାଜିଲାଣି ?

ଶିବ — (ଗଲା ଓ ଫେରିଆସି) ୧୦ଟା ୫ ବାଜିଛି । ଘଣ୍ଟା ବଜେଇବି ?

ସୀତା — (ଭିତରୁ) ହେଡ୍ ଦିଦି ଆସିନାହାନ୍ତି କି ?

ଶିବ — ମୁଁ ଦେଖିନି । ପି.ଟି. ସାର୍ କହିଲେ ଘଣ୍ଟି ବଜେଇବାକୁ ।

ସୀତା — (ପ୍ରବେଶ କଲେ ଗୋଲାପୀ ଶାଢ଼ୀ ପିନ୍ଧି) ଏଥର ଯା' ଘଣ୍ଟାବଜେଇ ଦେ ।

ହେଡ୍‌ଦିଦି — (ବାହାରୁ ହେଡ୍ ଦିଦି ପ୍ରବେଶ କଲେ) ଆରେ ବାବୁରେ ! ଗଲୁ ପାଣି ଗିଲାସେ ଆଣିବୁ ।

ଶିବ — ଏଇଠି ପରା ପାଣିଥୁଆ ହୋଇଛି । ସାନଦିଦି ମଗେଇ ଥିଲେ ।

ସୀତା — ଏଇଟା ମୁଁ ଅଇଁଠା କରିଛି (ପିଇଦେଲେ) ନେ ଆଉ ଗିଲାସେ ଆଣ ।

ଶିବ — ଆଉ ଏ ଘଣ୍ଟି ।

ହେଡ୍‌ଦିଦି — ସେଇଠି ଥାଉ ।

ସୀତା — କେତେଟା ବାଜିଲାଣି କହୁଥିଲୁ ।

ଶିବ — ସେତେବେଳେ ୧୦ଟା ୫ ବାଜିଥିଲା । ଏବେ ୧୦ଟା ୧୦ ହେବଣି କି କ'ଣ ।

ସୀତା — ହଉତୁ ଯାଆ-(ପିଲାର ପ୍ରସ୍ଥାନ) ଆପଣ ଯାଆନ୍ତୁ ଶାଢ଼ୀ ବଦଳାଇ ଦିଅନ୍ତୁ । ମୁଁ ଘଣ୍ଟି ବଜେଇ ଦେଉଛି ।

ହେଡ୍‌ଦିଦି — ନା ନା ଥାଉ ସେ ପିଲା ଆସିଲେ ବଜେଇବ । ପ୍ରକୃତରେ ୧୦ଟା ବାଜି ନଥିବ ମୁଁ କାଲି ଯିବା ଆଗରୁ ମିନିଟ୍ କଣ୍ଟାଟା ୧୫ ମିନିଟ୍ ଫାଷ୍ଟ କରିଯାଇଥିଲି ତ । (ପ୍ରସ୍ଥାନ)

ଶିବ — (ପାଣି ଧରି ପ୍ରବେଶ) ଗୁରୁମା ପାଣି ।

ସୀତା — ସେଇଠି ରଖ, ଆଉ ଘଣ୍ଟି ବଜା ।

ଶିବ — ବଜେଇବି ନା ପଚାରିବି ?

ସୀତା — ପଚାରିବୁ ଯଦି ପଚାର । କାଳେ ଶାଢ଼ୀ ବଦଳାଇବାକୁ ସମୟ ଲାଗିବ ? ପରଆଖିରେ ଆଙ୍ଗୁଳି ଗେଞ୍ଜିବାକୁ ଡର ସହିବ ନାହିଁ, ହେଲେ ଆପଣା ପାଇଁ ସାତଖୁନ୍ ମାଫ ।

| | |
|---|---|
| ଶିବ | ଗୁରୁମା । ପ୍ରାର୍ଥନା ଘଣ୍ଟି ବଜେଇ ଦେବି ? |
| ହେଡ୍‌ଦିଦି | (ଭିତରୁ) ବଜେଇଦେ । ଟିକିଏ ଲମ୍ୱେଇକି ବଜେଇବୁ । |
| ସୀତା | ଦିଦି ଶାଢ଼ୀ ବଦଳେଇ ବାହାରକୁ ବାହାରିବା ପର୍ଯ୍ୟନ୍ତ । |
| ଶିବ | (ଘଣ୍ଟି ବଜେଇଲା ପିଲାମାନେ ପ୍ରାର୍ଥନା କରିବାକୁ ଆସି ଠିଆ ହେଲେ ।) |
| ସୀତା | ଦିଦି ପ୍ରାର୍ଥନା ଆରମ୍ଭ କରିବା ? |
| ହେଡ୍‌ଦିଦି | ରହ ଏତେ ତର କାହିଁକି ? (ପ୍ରବେଶୀ) ଏଥର ଆରମ୍ଭ କର । (ପ୍ରାର୍ଥନା ଆରମ୍ଭ ହେଲା)<br>ଆହେ ଦୟାମୟ ବିଶ୍ୱ ବିହାରୀ... ସତ କହିବାକୁ କିଆଁ ଡରିବି...<br>ମୋର ଧନଜନ ଲୋଡ଼ା ନାହିଁ ହେ... |
| ହେଡ୍‌ଦିଦି | ରୂପ ଯୌବନ ସମ୍ପନ୍ନା, ବିଶାଳ କୁଳ ସମ୍ଭବା ବିଦ୍ୟାହିନଂ ନ ଶୋଭନ୍ତେ ନିର୍ଗନ୍ଧା ଇବ କିଂଶୁକା ।<br>ଅର୍ଥାତ୍– ରୂପ ଯୌବନ ସମ୍ପନ୍ନା...ବିଶାଳ କୁଳ ସମ୍ଭବା<br>ବିଦ୍ୟା...ହିନଂ ନ ଶୋଭନ୍ତେ...ନିର୍ଗନ୍ଧାଇବ କିଂ ଶୁକା...ବୁଝିଲ ? ସୀତା ! ତୁ ଗୋଟିଏ ବାଣୀ ଶୁଣା... |
| ସୀତା | ମୁଁ କିଛି ପ୍ରସ୍ତୁତ ହୋଇ ଆସିନି, ମୋତେ ତ ଆଗରୁ କହି ନଥିଲେ । |
| ହେଡ୍‌ଦିଦି | ହଉ ହଉ ମୁଁ କହିଦେଉଛି । ଆଜିକାଲିକା ପିଲା । ସବୁ କଥା ପାଇଁ ପୂର୍ବ ପ୍ରସ୍ତୁତି ଦରକାର । ଶୁଣ ପିଲେ–ନିଃସ୍ୱାର୍ଥପର କର୍ମ ମଣିଷକୁ ବଡ଼ କରାଏ । ଦେଶ ଓ ଜାତିର ସମ୍ମାନ ବଢ଼େଇବାକୁ ହେଲେ, ଯିଏ ଯେଉଁ ସ୍ଥାନରେ ଯେଉଁ ଭାବରେ ଥାଆନ୍ତୁ ନା କାହିଁକି ନିଜ ନିଜର କର୍ତ୍ତବ୍ୟ ସୁଚାରୁ ରୂପେ ସମ୍ପାଦନା କରିବା ଏକାନ୍ତ ଉଚିତ । (ପିଲାକୁ) ଘଣ୍ଟା ବଜେଇ ଗୋଟିକିଆ ପକା । (ପିଲା ବଜେଇଲା । ସୀତାକୁ) ଯାଆ କ୍ଲାସ୍‌କୁ ଯାଆ । ଫୋନ୍ ଅଫ୍ କରିଦେବୁ । |
| ସୀତା | ମୁଁ ଫୋନ୍ ସାଇଲେଣ୍ଟ୍ କରିଦେଇଛି । ଦିଦି ଦିଦି । ବୁଝିଲେନା ଆପଣଙ୍କ ଭାଷଣଟା ବଢ଼ିଆ ହେଲା । |
| ହେଡ୍‌ଦିଦି | ବଢ଼ିଆ ହେଲାଟି...ତୁମେ ସବୁ ତ ପଢ଼ାପଢ଼ି କରିବ ନାହିଁ । ଜାଣିବ କେମିତି '? |
| ସୀତା | ଏଇ କଥାଟା କେଉଁ ମହାପୁରୁଷ କହିଥିଲେ ତ ? |
| ହେଡ୍‌ଦିଦି | ମହାତ୍ମା ଗାନ୍ଧି କି ଜବାହରଲାଲ କହିଥିବେ । |
| ସୀତା | କେଉଁ ବହିରୁ ପଢ଼ିଥିଲେ କହିଲେ ? ମୋତେ ଲାଗୁଛି ବିବେକାନନ୍ଦ କହିଥାଇପାରନ୍ତି । |
| ହେଡ୍‌ଦିଦି | ସିଏ ଯିଏ କହନ୍ତୁ କି ଯେଉଁ ବହିରେ ଥାଉ, କଥାଟା ଠିକ୍ ନା ଭୁଲ୍ କହିଲୁ ? |
| ସୀତା | ପୁରା ଠିକ୍...ହେଉ ଆପଣ ଯାଆନ୍ତୁ ମୁଁ କ୍ଲାସ୍‌କୁ ଯାଉଛି... |
| ସୀତା | (ପ୍ରବେଶୀ) ସୁପ୍ରଭାତ... |
| ପିଲା | ନମସ୍କାର...ଦିଦି... ଆଜି କ'ଣ ପଢ଼ିବା... ? |
| ସୀତା | ପୂର୍ବପାଠର ଆବୃତ୍ତି କରି ଆଗକୁ ବଢ଼ିବା । ଖୋଲରେ ପିଲେ ବର୍ଣ୍ଣମାଳା ବହି ଖୋଲ...ଅ...ଆ...ଇଈଉଊର |
| ପିଲା | (ପଢ଼ିଲେ) ଋଋଏଐଓଔକଖଗ, ଘଙଚଛଜଝ, ଞଟଠଡ, ଡଢ଼ଣତଥଦ,ଧନପଫବଭମ, ଯରଳବଶଷସ, ହକ୍ଷୟଲ । |
| ସୀତା | ଏଇଠି ସରେ ବର୍ଣ୍ଣମାଳା, ଜାଣିଥରେ ତୁ... । |
| ପିଲା | ହୁଁ...ହୁଁ,ହୁଁ,ହୁଁ । |

| | |
|---|---|
| ସୀତା | ତା' ପରେ ଆସେ... |
| ପିଲା | ୦, ଃ, ଁ । |
| ସୀତା | କଟକନଗର ଧବଳ ଟଗର । |
| ପିଲା-୧ | କଟକ ନଗର ଧବଳ ଟଗର, ଦିନେ ରାଜଧାନୀ ଥିଲା ଆମର । |
| ପିଲା-୨ | ବାରବାଟୀ ଦୁର୍ଗ, କାଠଯୋଡ଼ି ବନ୍ଧ, ସୂନାରୂପା ତାରକସି ବିଶ୍ୱବିଖ୍ୟାତ । |
| ପିଲା-୩ | ଏବେ ରାଜଧାନୀ ଭୁବନେଶ୍ୱର । ନନ୍ଦନ କାନନ, ଚିଡ଼ିଆଖାନା । ଏକାମ୍ର ନଗର, ଲିଙ୍ଗରାଜ ଧାମ, ନାମରେ ଖ୍ୟାତ ଏ ସାରା ବିଶ୍ୱର । |
| ପିଲା-୪ | (ଗୀତ) ଜଗନ୍ନାଥ ଆମ ବଡ଼ ଠାକୁର, ମହୋଦଧି ପୁରୀବାସ ତାଙ୍କର କୋଣାର୍କ ,ଚିଲିକା, ଧଉଳୀ, ବିରଜା, ସାରଳା, ହିଙ୍ଗୁଳି ମାଆ । ଖଣ୍ଡଗିରି ପୁଣି ବଟ ଛତିଆ, କେତେ ଦେବାଦେବୀ ଚନ୍ଦ୍ର ଉଦିଆ । |
| ପିଲା-୧ | : (ଗୀତ) ଓଡ଼ିଆ ଆମର ଭାଷାର ନାଆଁ, କେତେକେତେ ଜାତି, ଧରମ, ପୋଷାକେ<br>ଶୋଭା ଦିଶେ ଆମ ଓଡ଼ିଶା ମାଆ... |
| ପିଲା-୨ | (ଗୀତ) ଆମେ ତା' ଦିବ୍ୟ ସନ୍ତାନ ରଖିବୁ ତାହାର ମାନ<br>ଆମ ପ୍ରେମ, ଯଶ, ଗୁଣ, ଗାରିମା ଦେଇ<br>ଆମରି ଜ୍ଞାନ, ବିଜ୍ଞାନ, କଳା, ସଂସ୍କୃତି, ଦର୍ଶନ,<br>ସାରାବିଶ୍ୱେ ଉଡୁଥିବ କୀରତି ଗାଇ ଉଜ୍ଜ୍ୱଳ କରିବୁ ତା' ନାମ<br>ଧରଣୀରେ ଉତ୍କଳର ହେବ ସୁନାମ...<br>(ଏତିକିବେଳେ ସୀତାର ଫୋନ୍ ଭାଇବ୍ରେସନ୍ ସାଉଣ୍ଡରେ ଘୁଁ ଘୁଁ ଶବ୍ଦ ହେଲା) |
| ସୀତା | ପଢୁଥା ମୁଁ ଆସୁଛି । (ବାହାରକୁ ଆସି) ହ୍ୟାଲୋ, ହାଏ ଡାର୍ଲିଙ୍ଗ୍ ତୁମେ କେଉଁଠି ? କାହିଁକି ଫୋନ୍ କଲ ? |
| ରଞ୍ଜନ | (ଭିନ୍ନ ଏକ ଜୋନ୍‌ରେ) ହାଏ ଲଭ୍‌ଲି, ମୁଁ ଏବେ ଅଫିସରେ । ଦି'ଘଣ୍ଟା ହେଲାଣି ଫୋନ୍ କରିନ ମୋତେ ବୋର୍ ଲାଗିଲାଣି । ତୁମେ ଏବେ କେଉଁଠି ? |
| ସୀତା | ମୁଁ ଆଉ କେଉଁଠି ରହିବି ? ନର୍କରେ... |
| ରଞ୍ଜନ | ସେଇଟା ନର୍କ କାହିଁକି ହେବ । ତୁମ ବ୍ୟାଗ୍ରାଉଣ୍ଡରୁ ବର୍ଣ୍ଣବୋଧର ପାଠ ଶୁଣାଯାଉଛି । ମୁଁ ଜାଣିପାରୁଛି ଯେ ତୁମେ ଏବେ ସ୍ୱର୍ଗର ନନ୍ଦନକାନନରେ ଅଛ । ତୁମ ଚାରିପାଖେ ନିଃଷ୍ପାପ, କୋମଳ, ସ୍ୱର୍ଗସୁତ ସବୁ ତୁମକୁ ଘେରି ରହିଛନ୍ତି । ଆହା କି ଭାଗ୍ୟ ତୁମର । |
| ସୀତା | ଭାଗ୍ୟ ନା ଛେନା ଛତୁ । ତୁମେ ତା'ହେଲେ ଏଠିକି ଚାଲିଆସୁନ ! ସ୍ୱର୍ଗର ନନ୍ଦନକାନନରେ ଆମେ ଦୁହେଁ ମିଶି ପାରିଜାତ ଫୁଟେଇବା । ଦିନସାରା ହସିବା ଖେଳିବା ଆଉ ଆନନ୍ଦରେ ଗୀତ ଗାଇବା, ହାତୀ ପିଠିରେ ବାଘ ବସିଛି, ବାଘ ଉପରେ ଛେଳି । ତା'ପରେ ମୋ ମୁଣ୍ଡରେ ତୁମେ ବସିବ ତୁମ ମୁଣ୍ଡରେ ଦିଦି । ପିଲାଏ ମାରିବେ ତାଳି । ଆଉ ସଞ୍ଜ ବାଜିଲେ କପାଳରେ ଅମୃତାଞ୍ଜନ ବୋଳି ପେନ୍ କିଲର୍ ଖାଇ ଶୋଇପଡ଼ିବା । |
| ରଞ୍ଜନ | ଏତେ ଭାଗ୍ୟ ମୋର କାହିଁ ? ମୁଁ ତ ଏଠି ଯନ୍ତ୍ରଭଳି । ଯନ୍ତ୍ରମାନବ ମାନେ କମ୍ପ୍ୟୁଟର ସାଂଗରେ ଘସି ମାଜି ହୋଇ ପୁରା ଯନ୍ତ୍ର ପାଲଟି ଗଲିଣି ? ତୁମେ କିନ୍ତୁ ସେଠି ନନ୍ଦନକାନନର ମଜା ଉଠାଉଥାଅ । |
| ସୀତା | ଏଇଟା ନନ୍ଦନକାନନ ଯେ, ହେଲେ ସ୍ୱର୍ଗର ନୁହେଁ । ଭୁବନେଶ୍ୱର ପଟିଆର ଚିଡ଼ିଆଖାନାଟାଏ । |

ଏଠି ବାଘ ଭାଲୁ କୁମ୍ଭୀର ସାପ ସବୁ ଅଛନ୍ତି ।

ରଞ୍ଜନ — ବୁଝିପାରିଲିନି ଡାର୍ଲିଙ୍ଗ ।

ସୀତା — ଏଠି ହେଡ୍ ଦିଦି ହେଲେ ବାଘୁଣୀ । ପି.ଟି.ସାର୍ ହେଲେ, କୁମ୍ଭୀର, ରାହ୍ମଣିଆ ସାପଟାଏ । ଆଉ ମଝିରେ ମଝିରେ ଏଠିକି କମିଟି ମେମ୍ବର, ବି.ଇ.ଓ., ଡି.ଇ.ଓ ଆଦି ଆସନ୍ତି । ତାଙ୍କୁ ତୁମେ ତୁମ ଇଚ୍ଛା ଅନୁସାରେ କୌଣସି ଜନ୍ତୁଜୁନ୍ତା ବୋଲି ଭାବିନେଇପାର ।

ରଞ୍ଜନ — ଆଉ ତୁମେ କ'ଣ ସେଠି ଏକାକୀ ମଣିଷଟାଏ ?

ସୀତା — ଥିଲି । ଦିନେ ଥିଲି । କିନ୍ତୁ ଏଠି ଚାକିରୀ କଲାପରେ ଧିରେ ଧିରେ ମୁଁ ବି ବଦଳିବାକୁ ଆରମ୍ଭ କଲିଣି । ଆଉ କିଛିବର୍ଷ ଏଠି ରହିଲେ ମୁଁ ବି ଏଣ୍ଡୁଅ ଭଳି ଖାଲି ମୁଣ୍ଡ ଟୁଙ୍ଗାରୀ ହଁ, ନାଁରେ ସୀମିତ ରହିଯିବି । (ବାହାରୁ ହେଡ୍ ଦିଦି ଡାକିଲେ)

ହେଡ୍‌ଦିଦି — ଆରେ ସୀତା ! କୁଆଡ଼େ ଗଲ ?

ସୀତା — ହେଇ ଆସିଗଲେ ।

ରଞ୍ଜନ — କିଏ ?

ସୀତା — ବାଘୁଣୀ– । ଏଇନେ ମୋ ମୁଣ୍ଡକୁ କଞ୍ଚା ଚୋବେଇ ଖାଇବେ ।

ରଞ୍ଜନ — ତା' ହେଲେ ଚଳିବ ।

ଶିବ — ଚଳିବମାନେ । ସେ ମୋ ମୁଣ୍ଡ ଖାଇବେ ଆଉ ତୁମେ ମୋ ଗଣ୍ଡିଟାକୁ ଟିକି ଟିକି କରି ଭିଣି ଖାଇବ ନୁହେଁ ? ଏବେ ମୁଁ ଜାଣିଲି ତୁମେ ଗୋଟିଏ ହେଟା... ।

ରଞ୍ଜନ — କ'ଣ ହେଟାବାଘ... ?

ସୀତା — ବାଘ ନୁହେଁ । ଗଧିଆ କି କଟାଷ, ନହେଲେ ବିଲୁଆ ହେଲା । ହୁଁ (ଫୋନ୍ କାଟିଲା କାନ୍ଦିଲା)

ହେଡ୍‌ଦିଦି — ଏଠି ଠିଆ ହୋଇ କାହିଁକି କାନ୍ଦୁଛୁ ?

ସୀତା — ଆପଣ ଏଇନେ ଖାଇବେ, ମୋ ମୁଣ୍ଡ ।

ହେଡ୍‌ଦିଦି — ନା ଏଇନେ ମୁଁ କିଛି ଖାଇବି ନାହିଁ । ତୁମେ ବରଂ ପିଲାମାନେ କେମିତି ଖାଇବେ ସେ କଥା ବୁଝ । ନ ହେଲେ ସେମାନେ ଖରାବେଳଟାରେ ମୋ ମୁଣ୍ଡ ଖାଇବେ ।

ସୀତା — ସେମାନେ ଭାତ ଡାଲମା, ଅଣ୍ଡାସିଝା ଭଳି ପୁଷ୍ଟିକର ଖାଦ୍ୟ ନ ଖାଇ ଏମିତି ଅଖାଦ୍ୟ ଖାଇବେ କାହିଁକି ?

ହେଡ୍‌ଦିଦି — ଏ କ'ଣ କହିଲ । ଖାଇବେ କାହିଁକି ? ଆରେ ମଧ୍ୟାହ୍ନ ଭୋଜନରେ ଯଦି ଭାତ ଡାଲି ନ ମିଳେ, ତା'ହେଲେ ସେମାନେ କ'ଣ ଖାଇବେ କହିଲ । ମୋ ମୁଣ୍ଡ ନା ନାହିଁ ? ତୁମ ଭଳିଆ ଗୋବର ଦିଆ ମୁଣ୍ଡତ କାହାକୁ ଭଲ ଲାଗିବ ନାହିଁ । ସମସ୍ତେ ଧରିବେ ମୋ ମୁଣ୍ଡକୁ । କାହିଁକି ନା ମୁଁ ହେଡ୍ ଦିଦି ହୋଇଛି । ସିନିୟର ମାଷ୍ଟର, ପାକଳିଆମୁଣ୍ଡ । ସମସ୍ତଙ୍କୁ ସୁଆଦିଆ ଲାଗିବ । ଖାଲି ମୁଣ୍ଡ ନୁହେଁ ତ । ଭିଡ଼ି ଓଟାରି ମାନ ସମ୍ମାନ, ଇଜ୍ଜତ, ମହତ ପର୍ଯ୍ୟନ୍ତ ସବୁ ଖାଇଯିବେ ।

ସୀତା — ତଥାପି ବଳିବ ।

ହେଡ୍‌ଦିଦି — କିଛି ବଳିବ ନାହିଁ ଲୋ ଝିଅ । ଶାଗୁଣା, ବିଲୁଆ ଖାଇଲେ ପିଞ୍ଜରା ଦି'ଖଣ୍ଡ ହେଲେ ବଳନ୍ତା ସିନା । ହେଲେ ଏମାନେ ଖାଇଲେ ମାନ ଇଜ୍ଜତ ସାଙ୍ଗକୁ ଚାକିରୀ ଖଣ୍ଡକ ବି ଖାଇ ସଫା କରିଦେବେ । ତା'ପରେ ଆଉ କିଛି ଥିବ ଯେ ବଳିବ । ଯଦିବା କିଛି ବଳିପଡ଼େ ସେଇଟାକୁ ବି ଏଇ ଖବରକାଗଜ

ଆଉ ମିଡ଼ିଆବାଲା ଏମିତି ଝାଡ଼ିଝୁଡ଼ି ସଫା କରିଦେବେ ଯେ, ତା'ର ସନ୍ତକ ସବୁକୁ ଦରାଣ୍ଡି ବସିଲେ ବି କିଛି ପାଇବୁ ନାହିଁ ଲୋ ଝିଅ । ତା'ପରେ କବାଟ କିଳି ନିଜ ଲୁହକୁ ନିଜେ ପିଇ ମରିବା ସାର ହେବ ଜାଣିଥା ।

ସୀତା ହେଲେ ତା'ପରଦିନ ଖବର କାଗଜ ଆଉ ଟି.ଭି.ରେ ଆପଣଙ୍କ ଫଟୋ ସବୁ ବାହାରିବ ନା... ।

ହେଡ୍‌ଦିଦି ଅପମାନରେ ସେ ଫଟୋର ମୁହଁକୁ ଲୁଚାଇବାକୁ ପୁରା ୧୨ ହାତର ପଣତ କାନିବି ଊଣାପଡ଼ିବ ଜାଣିଥା । ତା'ପରେ ବାଟରେ ଘାଟରେ ଲୋକେ ତୁମକୁ ଏମିତି ଅନେଇବେ ଯେ ଲାଗିବ ସତେ ଯେମିତି କବର ଭିତରୁ କୌଣସି ପ୍ରେତାତ୍ମା ବାହାରି ଆସିଛି କି ଆଉ । ସେତେବେଳେ ଆଇନାରେ ନିଜ ଚେହେରା ଦେଖିବାକୁ ବି ନିଜକୁ ଘୃଣା ଲାଗିବ ଜାଣିଥା ।

ସୀତା ଆଜିକାଲି କେବଳ ନିଜର ପ୍ରଚାର ପାଇଁ କେତେ କେତେ ନାଟ ସବୁଠି ଚାଲିଛି । ଖବରକାଗଜରେ ଟିଭିରେ ନିଜ ଛବି ଦେଖିବାକୁ ନେତାଠାରୁ ଅଭିନେତା ପର୍ଯ୍ୟନ୍ତ କେତେ କାରନାମା କରୁଛନ୍ତି । ଆପଣଙ୍କର ତ ମାହାଳିଆଟାରେ ପ୍ରଚାର ହୋଇଯିବନା ।

ହେଡ୍‌ଦିଦି ତୋତେ ତ ମଜା ଲାଗିଛି ନା... । ଆଜିକାଲିକା ପିଲା କେଉଁ କଥାରେ ସିରିଅସ୍ ନୁହନ୍ତି । ପିଠିରେ ବଥ ବାହାରିଲେ କହିବୁଲିବେ ଛାଇ ହେଇଛି ପରା । (ମିତାର ଫୋନ୍ ଘୁଁ ଘୁଁ ହେଲା) କାହାର ଫୋନ୍ ?

ସୀତା ଗଧିଆ କି ହେଟାର ହୋଇଥିବ ।

ହେଡ୍‌ଦିଦି ଯାହାର ହେଉ, ଫୋନ୍ ଅଫ୍ କରି ପିଲାଙ୍କ ପାଇଁ ରାନ୍ଧିବୁ ଯାଆ ।

ସୀତା କ'ଣ ମୁଁ ରାନ୍ଧିବି ? ମୁଁ କ'ଣ ପାଚିକା ?

ହେଡ୍‌ଦିଦି ଆଉ କିଏ ରୋଷେଇ କରିବ ? ମୁଁ ? ମୁଁ କ'ଣ ପାଚିକା ମାଉସୀ ?

ସୀତା ସେ ଦାୟିତ୍ୱ ଆପଣଙ୍କର । ସେ କଥା ଆପଣ ବୁଝିବେ ।

ହେଡ୍‌ଦିଦି ବୁଝୁଛି ବୋଲି ତ କହିଲି । ଏବେ ସେ ଦାୟିତ୍ୱ ମୁଁ ତୁମକୁ ଦେଲି । ମୌଖିକ ଆଦେଶ । You have to obey my order.

ସୀତା ଏଇଟା ଅନ୍ୟାୟ । ମୋତେ ରାନ୍ଧି ଆସେନି ।

ହେଡ୍‌ଦିଦି ସେକଥା ଏବେ କହିଲେ ଚଳିବ ନାହିଁ । ଚାକିରୀ କଲାବେଳେ କହିବାର ଥିଲା । ଆରେ ଏ ଦେଶରେ ମାଷ୍ଟର ହେବା ମାନେ ଯୋତା ସିଲେଇଠୁଁ ଚଣ୍ଡିପାଠ ପର୍ଯ୍ୟନ୍ତ ସବୁ ଜାଣିଥିବା ଦରକାର ବୁଝିଲ । ମାଷ୍ଟରମାନଙ୍କ ସବ୍‌କାମ୍‌ତା ହେବାକୁ ପଡ଼ିବ । ଅମୁକ କାମ ମୁଁ ଜାଣିନି । ସମୁକ କାମ ମୋ ଦ୍ୱାରା ହୋଇପାରିବ ନାହିଁ । ଏକଥା କହିବାର ଅଧିକାର ତାଙ୍କର ନାହିଁ । ମାନେ ଆମର ନାହିଁ କି ତମର ବି ନାହିଁ ।

ସୀତା ଏ ଅଧିକାର ଆମକୁ ସମ୍ବିଧାନ ଦେଇଛି ।

ହେଡ୍‌ଦିଦି କିଏ ଦେଇଛି ସମ୍ବିଧାନ? ତମେ ଛେନା ଛତୁଟା ବୁଝିଛ । ସମ୍ବିଧାନରେ ଲେଖା ହୋଇଛି ସିନା ହେଲେ ଦେବ କିଏ ? ସେଇଟା ଥିଓରିଟିକାଲ ପାଠ, ହେଲେ ପ୍ରାକ୍‌ଟିକାଲ କହୁଛି । କହିଲାଭଳିଆ- କାର୍ଯ୍ୟରେ ଭଲ ମନ୍ଦ ନାହିଁ ଯେ ଦିନ ଯେମନ୍ତ ମିଳଇ । ପୋଥି ବାଇଗଣ ଆଉ ବାଡ଼ି ବାଇଗଣ ଭିତରେ ତଫାତ୍ ଜାଣିନ । ମାଷ୍ଟର ହେବାକୁ ଚାଲିଆସିଲ ।

ସୀତା ସେଇଟା କାର୍ଯ୍ୟରେ ନୁହେଁ–
ଆହାରେ ଭଲମନ୍ଦ ନାହିଁ ଯେଦିନ ଯେମନ୍ତ ମିଳଇ ।

ହେଡ୍‌ଦିଦି — ଜାଣେ ଜାଣେ ଭାଗବତରେ ଲେଖା ହୋଇଛି । ହେଲେ ଏଇଟା ମାଷ୍ଟରଙ୍କର ଭାଗବତ ଲୋ ଝିଅ । ଏବେ ନୂଆ ନୂଆ ଚାକିରୀ କରୁଛ । ଆଗକୁ ଆଗକୁ ଜାଣିବ ମାଷ୍ଟରଙ୍କ ଭାଗବତରେ କ'ଣ କ'ଣ ସବୁ କରିବାକୁ ହୁଏ । ମାଷ୍ଟର ଚାକିରୀରେ ଦାୟିତ୍ୱ କେତେ ଆଉ ମଉଜ କେତେ । ଘୋଡ଼ା ଛ'ଟଙ୍କାକୁ ଦାନା ନଅଟଙ୍କା ବୁଝିଲ । ସେଥିରେ ପୁଣି ସେଲସ୍‌ମ୍ୟାନ୍ ଭଳିଆ ଘରଘର ବୁଲି ଡାଟା କଲେକ୍ସନ୍ କରିବାକୁ ପଡ଼ିବ । ଜନଗଣନା, ଭୋଟରଲିଷ୍ଟ, ଆଧାରକାର୍ଡ଼ଠାରୁ ଆରମ୍ଭ କରି ପୋଲିଓ, ମ୍ୟାଲେରିଆ, ବିସିଜି ଟୀକାର ତାଲିକା ତିଆରି କରି ସରକାରଙ୍କ ସବୁଯୋଜନାକୁ ଠିକ୍ ଠିକ୍ ଲାଗୁ କରିବାରେ ସାହାଯ୍ୟ କରିବାକୁ ପଡ଼ିବ । ଆଉ ସେଥିରେ ଟିକିଏ ଅବହେଳା କଲେ, ମାର୍‌ମାର୍ ସେଇ ଭଣ୍ଡାରିଆକୁ ମାର୍ ନ୍ୟାୟରେ ଡୁବି ତବଲା ବାଡ଼େଇଲା ଭଳିଆ ଗୋଟିଏ ବି ଦୁମକାଳିଆ (ବିଧା ଦେଖେଇ) ଭୂଇଁରେ ପଡ଼ିବ ନାହିଁ ଲୋ ମାଆ। ସବୁ ନିଜ ପିଠିରେ ମୁଣ୍ଡରେ ପଡ଼ି ଶେଷରେ ତୁମର ମାନ ସମ୍ମାନ ଉପରେ ଧାତେରେ କେଟେ ଧା ହୋଇ ବର୍ଷିଯିବ । ସେତେବେଳେ ଯାଇ ବୁଝିବ କେତେଧାନରେ କେତେ ଚାଉଳ ହୁଏ ।

ସୀତା — ହେଲେ ବର୍ଷେଇବ କିଏ ?

ହେଡ୍‌ଦିଦି — ପବ୍ଲିକ୍ ମାନେ ଗାର୍ଡ଼ିଆନ୍‌ଠୁଁ ଆରମ୍ଭ କରି ୱାର୍ଡ଼ମେମ୍ବର ସରପଞ୍ଚ ପର୍ଯ୍ୟନ୍ତ । ଆଉ ନାରୀ ସରପଞ୍ଚ ହୋଇଥିଲେ ତାଙ୍କ ଗେରସ୍ତ ଉଗେର ବର୍ଷିଯିବେ । ଆଉ ତୁମେ ସେମିତି ଫୁଙ୍ଗୁଳା ଆକାଶ ତଳେ ବିନା ଛତାରେ ଭାଗ୍ୟକୁ ନିନ୍ଦି ଖୋଲା ଆଖିରେ ଜଗନ୍ନାଥଙ୍କ ଭଳିଆ ଲୁଳୁଲୁଳୁ କରି ଅନେଇଥିବ ଯେ ଆଉ ଆଖିପତା ପଡୁ ନଥିବ । ଆଉ ଦିନ ଦିପ୍ରହରରେ ଛାତିଚିରି ବ୍ରହ୍ମଉଟାରି ନେଲେ ବି ମୁରୁକି ମୁରୁକି ହସୁଥିବ ସିନା କିଛି କରିବାର ଲୁ ନଥିବ ।

ସୀତା — ଏଇ ୨୫୦୦ ଟଙ୍କା ପାଇଁ ଏତେ ହୀନସ୍ତା ହେବାକୁ ପଡ଼ିବ ?'

ହେଡ୍‌ଦିଦି — ଆହୁରି ଅଛି । କେତେମାସ ହେଲା ଦରମା ମିଳିନି ?

ସୀତା — ୩ ମାସ ହେଲା ।

ହେଡ୍‌ଦିଦି — ଦରକାର ପଡ଼ିଲେ ଛଅ ଛଅମାସ କାଳ ଏମିତି ହାତରୁ ଖାଇ ଘୋଡ଼ା ଆଗରେ ନାଚ ଦେଖେଇବାକୁ ପଡ଼ିବ । ଗଧଖଟଣୀ ଖଟିବାକୁ ପଡ଼ିବ ହେଲେ ଫଳାଫଳ ସେଇ ଗୋଟାଏ । ଧୋବି କା ଗଧା ନା ଘରକା ନା ଘାଟକା । ଏଥର ବୁଝିଲୁ ଯଦି ରାନ୍ଧିବୁ ଯାଆ । ନ ହେଲେ ସରକାରଙ୍କୁ ପ୍ରେମପତ୍ର ଲେଖିଦେଇ ଘରକୁ ପଳା।

ସୀତା — କାହିଁକି ? ରାନ୍ଧୁଣୀ ମାଉସୀ କୁଆଡ଼େ ଗଲା କି ?

ହେଡ୍‌ଦିଦି — ତାକୁ ମ୍ୟାଲେରିଆ ହୋଇଛି । ଏଇନେ ୪/୫ ଦିନ ସିଏ ସ୍କୁଲ ଆସିବ ନାହିଁ । ଛୁଟି ନେଇଛି ।

ସୀତା — ଦିଦି ବୁଝୁନ କାହିଁକି, ମୁଁ ନରାନ୍ଧିଲେ ଆପଣଙ୍କୁ ଯେତିକି ଟେନ୍‌ସନ୍, ରାନ୍ଧିଲେ ତା'ଠାରୁ ଅଧିକ ଟେନ୍‌ସନ୍ ନେବାକୁ ପଡ଼ିବ ।

ହେଡ୍‌ଦିଦି — କାହିଁକି ଶୁଣେ ?

ସୀତା — ଘରେ ତ କେବେ ରାନ୍ଧିନି ନା । ଯଦି ଲୁଣିଆ ଅଲଣା ହୋଇଗଲା ?

ହେଡ୍‌ଦିଦି — ଓ ଏଇକଥା । ମୁଁ ଲୁଣ ପକେଇ ଦେବି ।

ସୀତା — ଆଉ ହଳଦୀ ?

ହେଡ୍‌ଦିଦି — ସେଇଟା ବି' ମୁଁ ପକେଇ ଦେବି।

| | |
|---|---|
| ସୀତା | ପରିବା କାଟୁ କାଟୁ ଯଦି ହାତ କଟିଗଲା ? |
| ହେଡ୍‌ଦିଦି | ୧୦୮ ଆମ୍ବୁଲାନ୍ସ ଡାକି ହସ୍‌ପିଟାଲ ନେଇଯିବି। |
| ସୀତା | ଯଦି ତରକାରୀ ପୋଡ଼ିଗଲା ? |
| ହେଡ୍‌ଦିଦି | ତା' ସାଂଗରେ ତୋ ଚାକିରୀବି ପୋଡ଼ି ପାଉଁଶ ହୋଇଯିବ ଜାଣିଥା । |
| ସୀତା | ସତେ ନା କଅଣ ? ଦିଦି ମୋତେ ଟିକିଏ ଦୟାକରନ୍ତ ନାହିଁ । ଆଜି ତୁମେ ମୋତେ ରନ୍ଧାରନ୍ଧି ଶିଖେଇ ଦିଅ କାଲିଠୁଁ ମୁଁ ରାନ୍ଧିବି ? ପ୍ରମିଜ୍ । |
| ହେଡ୍‌ଦିଦି | ଠିକ୍ ଅଛି। ମୁଁ ତରକାରୀ ରାନ୍ଧିଦେବି। ହେଲେ ବାକି କାମ ସବୁ ତମକୁ କରିବାକୁ ପଡ଼ିବ । |
| ସୀତା | ବାକି କାମ ମାନେ ? |
| ହେଡ୍‌ଦିଦି | କାଠ ଆଣି ଚୁଲୀ ଜଳେଇବ ତୁମେ । ହାଣ୍ଡିବସେଇ ଚାଉଳ ଢ଼ାଳିବ ତମେ । ଜାଳ ଜଳେଇବ ତମେ । ଭାତ ରାନ୍ଧିବ ତୁମେ । ଆଉ ଖିଆପିଆ ସରିଲେ ହାଣ୍ଡି କୁଣ୍ଡି ମାଜି ସଫା କରିବ ତୁମେ । |
| ସୀତା | ଆଉ ତରକାରୀ ରାନ୍ଧିଲାବେଳେ ? |
| ହେଡ୍‌ଦିଦି | ସେଥିରେ ବି ସେଇ ଏକାଭଳି । ପରିବା କାଟି ଧୋଇବ ତୁମେ । ଚୁଲୀରେ କଡ଼େଇ ବସେଇ ଜାଳ ମାରିବ ତୁମେ । ଆଉ ଖିଆପିଆ ପରେ... । |
| ସୀତା | କଡ଼େଇ ମାଜି ସଫା କରିବୁ ଆମେ । ବୁଝିଗଲି...ଆଉ ତା' ହେଲେ ଆପଣ କରିବେ କ'ଣ ଯେ... ? |
| ହେଡ୍‌ଦିଦି | ରାନ୍ଧିବି । |
| ସୀତା | ଓ... ମାନେ ଦ୍ରୌପଦୀ ସୁବର୍ଣ୍ଣ ଖଡ଼ିକା ହଲେଇଲା ଭଳିଆ ଆପଣ ଖାଲି କଡ଼େଇ ଆଉ ହାଣ୍ଡିରେ ଡାଙ୍ଗ ହଲେଇବେ ଡାଙ୍ଗ । ଆଉ ପିଲାଙ୍କୁ ଭାତ ତରକାରୀ ବାଢ଼ି ଦେଇ ନାଆଁ ନେବେ ନାଇଁ ? |
| ହେଡ୍‌ଦିଦି | ସେଇଟା ସିନିୟରମାନଙ୍କର ପ୍ରାପ୍ୟ । ସେଥିରେ ଜୁନିୟରମାନଙ୍କର ମୁଣ୍ଡ ପୁରାଇବା ଆଦୌ ଉଚିତ୍ ନୁହେଁ । ଜାଣିନା କି ମହାଜନେ ପରା କହିଛନ୍ତି । ଚୋର ଧରେ... |
| ସୀତା | ହାବିଲଦାର । |
| ହେଡ୍‌ଦିଦି | ଆଉ ମ୍ୟାଡେଲ ନିଏ ? (ପ୍ରସ୍ଥାନ) |
| ସୀତା | ଇନ୍ସପେକ୍ଟର (ଏତିକିବେଳେ ପୁଣି ଫୋନ୍ ଘୁଁ ଘୁଁ ହେଲା ସୀତା ରାଗରେ ଫୋନ୍‌କୁ ବନ୍ଦ କରିଦେଲା । ଏହାରି ଭିତରେ ପିଲାମାନେ ଆସି ପାଠପଢ଼ା ଆରମ୍ଭ କରିଦେଲେ) |
| ପିଲା–୧ | ଅରଣା ମହିଁଷି ରହିଛି ଅନାଇ, ମହିଁଷିର ପାଖ ନ ଯାଅ ଦନେଇ । (ସୀତା ତାଙ୍କଆଡ଼କୁ ଗଲା । ପିଲାଏ ପଢ଼ିଲେ) |
| ପିଲା–୨ | ଅଇଲାଣି ବିଲେଇ। ମୂଷାଯିବ ପଳେଇ (ହସିଲେ) |
| ସୀତା | ଏ–କିଏ ହସୁଛି । |
| ପିଲା–୩ | ନଟିଆ... |
| ସୀତା | ଏ ନଟିଆ ତୁ ଟା ଭାରି ଦୁଷ୍ଟ । ତୋ କାନ ଧରୁଛି ରହିଥା । (କାନଧରିବାକୁ ଗଲାବେଳେ ନଟିଆ ଧାଇଁଲା । ପିଲେ ଗାଇଲେ) |
| ପିଲା–୪ | ହରିଣ ନ ଦିଏ ଧରା–ଦଉଡ଼ ନା ବଡ଼ଖରା । |
| ସୀତା | (ରାଗି) ସମସ୍ତେ କାନଧରି ଠିଆ ହୁଅ । |
| ପିଲା–୧ | ନାଇଁ ଦିଦି ଆମେ କାନ ଧରିବୁ ନାହିଁ ? |

ସୀତା　　କ'ଣ ହେଲା ? କାନ ଧରିବୁ ନାହିଁ ?
ପିଲା–୨　　ଆମେ କାନ ଧରିଲେ ଆପଣଙ୍କୁ ନାକ ଘସିବାକୁ ପଡ଼ିବ ।
ସୀତା　　କାହିଁକି ?
ପିଲା　　ଜାଣିନାହାନ୍ତି କି ? ଏଇଟା ପରା ଦଣ୍ଡ ମୁକ୍ତ ଅଞ୍ଚଳ । କିଏ ଯଦି ସେଇ କାନ୍ଥ ଦେଖା ନମ୍ବରକୁ ଫୋନ୍ କରିଦେବା ନା ତା'ହେଲେ ତ କଥା ସରିଲା ।
ସୀତା　　ମାନେ...
ପିଲା–୪　　ତା'ପରେ ଆପଣଙ୍କ କଥା ନ କହିଲେ ଭଲ ।
ପିଲା　　(ସମସ୍ତେ ମିଶି) ଚକା ଚକା ଭଉଁରୀ–ମାମୁଁଘର ଚଉଁରି ।
ଗମ୍ଭୀରା ଭିତରେ ଆଖି ନାକ ମଳି ତୋର ମାଆ କାନ୍ଦେ ଗୁମୁରି ଗୁମୁରି ।
ସୀତା　　ଆରେ ଆରେ ପିଲେ ରାଗିଲ କିରେ ? ମୁଁ ପରା ଏମିତି ମଜାରେ କହୁଥିଲି ।
ପିଲା　　ବାଃ ବାଃ ବାଃ କେମିତି ମଜା । ଭାଲୁ ନାଟକରେ ବଜାଇ ବାଜା ।
ସୀତା　　ଆଜି ପାଠପଢ଼ା ଏଇଠି ଛୁଟୀ ।
ପିଲା–୧　　ସତେ ନା କ'ଣ ?
ପିଲା–୨　　: ହେଲେ ଛୁଟୀ ଆଜି କାହିଁକି ?
ପିଲା (ସମସ୍ତେ)　　ମଧ୍ୟାହ୍ନ ଭୋଜନ ନାହିଁ କି ?
ସୀତା　　ଅଛି ଅଛି । ନିଶ୍ଚୟ ଅଛି । ଆରେ ବାବା ଜାଣିନା କିରେ । ଭୋଜନ ବିନା ପଠନ ନାହିଁ । ପଠନ ବିନା ଚାକିରୀ ନାହିଁ । ଚାକିରୀ ନାହିଁ ତ ଦରମା ନାହିଁ । ବୃଥା ହାଇଁପାଇଁ ହେଉଛ କାହିଁ ?
ପିଲା(ସମସ୍ତେ) ବିଲୁଆ ବଡ଼ ଚତୁର ପଇଡ଼ ବଡ଼ ମଧୁର ।
ସୀତା　　ମଧୁର ବିନୟ ବଚନ,　　କହି ତୋଷିବ ଜନମନ
ଠୋର ଠାର କରମ ତୋର ବଣି ପୋଷିବାକୁ ଝିଙ୍କିକା ମାର୍ ।
ପିଲା–୧　　କେମିତି ଦିଦି କେମିତି ?
ସୀତା　　ହେଡ୍ ଦିଦି ପରା କହିଦେଇଗଲେ, ଖେଳିବା ଆମେ ଏମିତି ।
ପିଲା–୨　　କି ଖେଳ ?
ସୀତା　　ଯାହାକୁ ଇଚ୍ଛା ଯେମିତି ?
ପିଲା–୩　　ବାଗୁଡ଼ି ଖେଳିବା ?
ପିଲା–୪　　ବୋହୁଚୋରୀ ଖେଳ ଭାରି ମଜାଦାର ।
ପିଲା–୧　　କବାଡ଼ି ଖେଳ ତ ତା'ଠାରୁ ସରସ ।
ପିଲା–୨　　ବଣଭୋଜୀ ଖେଳ ସବୁଠୁ ନିଆରା ।
ସୀତା　　ଚାଲ ଏବେ ଆମେ ଯିବା । ଭାତରନ୍ଧା ଖେଳ ଖେଳିବା । ଖେଳରେ ଖେଳରେ ଦିନ କଟିଯିବ । ଖାଇପିଇ ଯେ ଯାହା ଘରକୁ ଯିବା ।
ପିଲା(ସମସ୍ତେ) ବାଃ ବାଃ ବାଃ କେମିତି ମଜା, ବାଘ ପିଠିରେ ଛେଳି ବସିଛି ଛେଳି ପିଠିରେ ମାଙ୍କଡ଼ ଅଜା ।
ପିଲା–୧　　ଆହେ...ହେ... କହିଲୁ । ସତରେ କ'ଣ ମାଙ୍କଡ଼ ଆମ ଅଜା ?
ପିଲା–୨　　ତୁ ଜାଣିନୁ କି ପୁଅ–ଆମ ବାପାଙ୍କ ବାପାଙ୍କ ବାପା ଥିଲେ ପରା ମାଙ୍କଡ଼ ।

ସୀତା ଲାଗିଯାଅ ପିଲେ ଲାଗିଯାଅ–ହାଣ୍ଡିଥୋଇ ଜାଳ ମାରିଯାଅ ।

ପିଲା(ସମସ୍ତେ) : ମାରିଲୁ ।

ସୀତା ଦଳେ ପିଲା ବସି ପରିବା କାଟ– ଆଉ କିଛି ପିଲା ବେସର ବାଟ, ଅଣ୍ଡାସିଝାକୁ ଡାଲ୍ମା ଭାତ– ଖାଇପିଇ ପେଟେ ମାରିବ ହାତ ।

ପିଲା (ହାକୁଟି ମାରିଲେ ମିତାର ଫୋନ୍ ଘୁଁ ଘୁଁ ହେଲା)

ସୀତା (ଫୋନ୍ ଉଠେଇ) କାହିଁକି ବାରମ୍ବାର ଫୋନ୍ କରୁଛ ? ମୁଁ ବ୍ୟସ୍ତ ଅଛି ।

ରଂଜନ Sorry Darling-I was joking. Really I love you. ତୁମ ବିନା ମୋ ଜୀବନ ଶୂନ୍ୟ ।

ସୀତା ଏ ଡାଏଲଗ୍ ଗୁଡ଼ା ହିଷ୍ଟୋରି ହୋଇଗଲାଣି । ନିଜ ଡାଇଲଗ୍‌କୁ ଅପ୍‌ଟୁ ଡେଟ୍ କର, ଫେସ୍‌ବୁକ୍ ନହେଲେ ଟ୍ୱିଟର୍ ଫଲୋ କର । ନହେଲେ ହ୍ୱାଟ୍‌ସପ୍‌ରେ ମୋତେ ଚାଟ୍ କର ।

ରଞ୍ଜନ ଓକେ ଡାର୍ଲିଙ୍ଗ । ଥ୍ୟାଙ୍କ ୟୁ । ମୁଁ ତ ଫେସ୍‌ବୁକ୍ ଦେଖୁଛି, ଖରାବେଳଟାରେ ଟିଫିନ୍ ବ୍ରେକ୍ ଭିତରେ, ଟ୍ୱିଟର ଦେଖୁଛି ସଞ୍ଜସକାଳରେ ହ୍ୱାଟ୍‌ସପ୍ ଖୋଲେ ଅଧରାତିରେ ମୁଁ ତକିଆକୁ ଜାକି କୋଳରେ ।

ସୀତା ଧେତ୍ ସେମ୍‌ଲେସ୍ ଫେଲୋ ।

ରଞ୍ଜନ ଆହା ଲାଜ କଲେ ତୁମେ ଏମିତି ଦିଶନା...କଥାରେ କହିବାକୁ ଭାଷା ପାଉନି ।

ସୀତା ତୁମର କିଛି କହିବା ଦରକାର ନାହିଁ । ମୁଁ ବୁଝିପାରୁଛି ।

ରଞ୍ଜନ ଏ ଡାର୍ଲିଙ୍ଗ ତୁମେ ଏବେ କ'ଣ କରୁଛ ?

ସୀତା ପ୍ରାକ୍ଟିକାଲ୍ କରୁଛି । ଶାଶୁଘର ଯିବା ଆଗରୁ ଇଣ୍ଡିଆନ୍ ଡିସ୍‌ର ୱାର୍କସପ୍ କରୁଛି ।

ରଞ୍ଜନ କେଉଁ ଯୋଜନାରେ ?

ସୀତା ସର୍ବଶିକ୍ଷା ଯୋଜନାରେ । ଏଠି ସେଲ୍ଫ ହେଲ୍ପ ଇଜ୍ ଦି ବେଷ୍ଟ ହେଲ୍ପ ।

ରଞ୍ଜନ ବାଃ ଭେରି ଇନ୍‌ଟ୍ରେଷ୍ଟିଙ୍ଗ୍ ।

ସୀତା ଇନ୍‌ଟ୍ରେଷ୍ଟିଙ୍ଗ୍ ନା ଛେନା ଛତୁ । ଏଇଆ କରିବା ପାଇଁ ମୋତେ ବି.ଏସ୍‌ସି ପଢ଼ିବାର ଆବଶ୍ୟକତା ନଥିଲା । ବିଲ୍‌କୁଲ୍ ପାଠ ନପଢ଼ି ବୋଉଙ୍କ କିଚେନ୍‌ରେ ଆସିଷ୍ଟାଟ୍ କାମ କରିଥିଲେ ଏହାଠାରୁ ଭଲ ଭଲ ଡିସ୍ ସାଂଗକୁ ପିଠାପଣାସବୁ ବଢ଼ିଆ ଭାବରେ କରିପାରିଥାନ୍ତି । ଛାଡ଼ ସେ କଥା । ତୁମେ ଏବେ କ'ଣ କରୁଛ ?

ରଞ୍ଜନ ମୁଁ ବି ସେମିତି ଗୋଟିଏ କିଛି କରୁଛି । ବିକମ୍ ପାଶ୍ କରି କମ୍ପ୍ୟୁଟରରେ ବସି ଚିଠି ଟାଇପ୍ କରୁଛି । ହେଡ୍ ଅଫିସ୍‌କୁ ମେଲ୍ କରିବାକୁ ହେବ ।

ହେଡ୍‌ଦିଦି (ଭିତରୁ) କ'ଣ ଭାତରନ୍ଧା ସରିଲା ନା ନାହିଁ ?

ସୀତା ରଖରଖ ବାଘୁଣୀ ଆସୁଛି । ଏଇନେ ମୋତେ କଞ୍ଚା ଚୋବେଇ ଖାଇବ । (ଭିତରକୁ ଚାହିଁ) ରୋଷେଇ ଚାଲିଛି ଦିଦି । ଆସୁନାହାନ୍ତି ଦେଖିବେ ? (ଦିଦିଙ୍କ ପ୍ରବେଶ) ବସୁ ନାହାନ୍ତି ବସନ୍ତୁ । ଖରାଆଡ଼କୁ ପିଠି କରି ଟିକିଏ ଗଡ଼ିପଡ଼ୁ ନାହାନ୍ତି । (ଦିଦି ଗଡ଼ିପଡ଼ିଲେ ସୀତା ପାଦ ଚିପିଦେଲା)

ହେଡ୍‌ଦିଦି ନାଇଁ ନାଇଁ ଥାଉ...ଥାଉ...

ସୀତା କି...ବୋଉ କିଏ ଆଉ ଆପଣ କିଏ କି ? ଦିନସାରା କେତେ ଚଲାବୁଲା କରୁଛନ୍ତି ପାଦ ଘୋଳେଇ ହଉଥିବ । ମୁଁ କ'ଣ ବୁଝିପାରୁନି । (ହେଡ୍‌ଦିଦିର ନାକ ଘଡ଼ଘଡ଼ ଶୁଭିଲା) ଏଁ ଶୋଉ ଶୋଉ କ'ଣ

ଘୁଙ୍ଗୁଡ଼ି ମାରିଲେଣି । (ପିଲା ହସିଲେ ସୀତା ବିଭିନ୍ନ ପୋଜ୍‌ରୁ ଫଟୋ ଉଠାଇଲା ପରେ) ଏଣ୍ଟୁଅ ଏଣ୍ଟୁଅ...

ହେଡ୍‌ଦିଦି (ଚମକି ଉଠିଲେ) କାହିଁ କାହିଁ ?

ସୀତା ହେଇ ସିଆଡ଼େ ପଳେଇଲା । ମୁଁ ପାଟି କରି ନଥିଲେ ତ ଏଇନେ କଡ଼େଇରେ ପଡ଼ିଥାନ୍ତା । ମୁଁ ଦେଖି ଦେଲି ବୋଲି ସିନା ।

ହେଡ୍‌ଦିଦି ତୁ ବଞ୍ଚେଇ ଦେଲୁ ଲୋ ସୀତା । ନହେଲେ ଏଇନେ କ'ଣ ଯେ ହୋଇଥାନ୍ତା ? ଚାକିରୀଟା ଆଜି ବାଏଁ ବାଏଁ କରି ଉଡ଼ିଯାଇଥାନ୍ତା ।

ସୀତତା ଚାକିରୀ କଥା କ'ଣ କହୁଛନ୍ତିମ ଦିଦି । ଏଇନେ କେତେ ପିଲା ଯେ ମେଡ଼ିକାଲ ବୁହାହୋଇଥାନ୍ତେ ତା'ର ହିସାବ ଅଛି ?

ହେଡ୍‌ଦିଦି ଯାହା କହିଲୁ...ରୁହରୁହ ଦେଖେଁ ଭାତ ହେଇଛି ନା ନାହିଁ ? (ଭାତ ଦେଖିଲେ)

ସୀତା ଦିଦି ଆଜି ଅଣ୍ଡା କେତେଟା ସିଝିବ ?

ହେଡ୍‌ଦିଦି ଆଜି ଉପସ୍ଥାନ କେତେ କିରେ ?

ହେଡ୍‌ଦିଦି ୫୦ ଜଣ ।

ହେଡ୍‌ଦିଦି ତା'ହେଲେ ୯୦ଟା ଅଣ୍ଡା ଶିଝେଇଦିଅ ।

ସୀତା ଏତେ ଏକ୍ସଟ୍ରା କାହିଁକି ?

ହେଡ୍‌ଦିଦି ଆଜି କ'ଣ ନୂଆକି ? ଖାଇଲାବେଳକୁ ପରା ଆହୁରି ୨୦/୨୫ ପିଲା ଥାଳି ତାଟିଆ ଧରିଆସି ପହଞ୍ଚିଯିବେ ।

ସୀତା ତା'ହେଲେ ବି ୭୫ ହେଲା । ଆହୁରି ୧୫ଟା ଏକ୍ସଟ୍ରା ।

ହେଡ୍‌ଦିଦି ଯଦି ପଚା ୨/୫ଟା ବାହାରିଲା ? ତା' ଛଡ଼ା ହାତରୁ ୫ ରଖିବାକୁ ପଡ଼ିବ ନା ନାହିଁ କାଳେ କମିଟି ମେମ୍ବର ବି.ଇ.ଓ, ଡି.ଇ.ଓ, ୱାର୍ଡ଼ ମେମ୍ବର ଦଳବଳ ଧରି ଆସି ପହଞ୍ଚିଯିବେ, କିଏ ଜାଣିଛି ?

ସୀତା ଯଦି ନ ଆସିଲେ ?

ହେଡ୍‌ଦିଦି ତଦ୍‌ଅର୍ଦ୍ଧଃ ମଦ୍‌ଅର୍ଦ୍ଧଂ ବାଣ୍ଟିସ୍ୟାମି । ଅବଶ୍ୟ ତୁମେ ନ ନେଲେ ମୋତେ ସବୁ ଏକା ଏକା ଘରକୁ ନେବାକୁ ପଡ଼ିବ ନା ନାହିଁ । ଆଉ କ'ଣ ଫୋପାଡ଼ି ଦେବା କି ?

ସୀତା ଯଦି କେହି ପଚାରିଲେ ଉପସ୍ଥାନ ୫୦ ଅଥଚ ୯୦ ଟା ଅଣ୍ଡାସିଝିଲା କାହିଁକି ?

ହେଡ୍‌ଦିଦି ପଚାରିବାକୁ ବାଟ ଥିବ ଯେ ପଚାରିବେ । ଆରେ ବୋକି । ଏବେ ସିନା ଉପସ୍ଥାନ ୫୦ ଅଛି ସଞ୍ଜବେଳକୁ ଯଦି ଖାତାରେ ଉପସ୍ଥାନ ସଂଖ୍ୟା ୯୦ ହୋଇଗଲା ତା'ହେଲେ କିଏ କାହିଁକି ଜାଣିବ ଯେ ପଚାରିବ ।

ସୀତା ଆରେ ବାପ୍‌ରେ ବାପ୍–ଯେତ ଏମ୍.ବି.ଏ.ଠୁ ବି କଷ୍ଟକର ପାଠ ।

ହେଡ୍‌ଦିଦି କ'ଣ କହିଲ କି ?

ସୀତା ନାଇଁମ ଦିଦି । ମୁଁ ମଝିରେ ଭାବୁଥିଲି ଏମ୍.ବି.ଏ. କରିବି ବୋଲି । ଏବେ ଭାବୁଛି କିଛି ଲାଭ ନାହିଁ । ବରଂ ଆପଣଙ୍କ ପାଖରେ ୨/୩ ବର୍ଷ ରହି ଟ୍ରେନିଂ ନେଲେ ଏମ୍.ବି.ଏ. ମନକୁ ମନ ହୋଇଗଲା ବୋଲି ଜାଣ ।

| | |
|---|---|
| ହେଡ୍‌ଦିଦି | (ହସି) ଯାହା କହିଲୁ ଝିଅ । ଭାଗ୍ୟକୁ ଆମେ ସିନା ୟୁ.ପି. ସ୍କୁଲ୍ ମାଷ୍ଟର ହେଇଛୁ, ନହେଲେ ତମ ଏମ୍.ବି.ଏ.ଟା ଆମ ପାଇଁ କେଉଁ ବଡ଼ କଥା କି ? ଆଚ୍ଛା କହିଲୁ ଦେଖି ତମର ଏଇ ଏମ୍.ବି.ଏ.ର ଅର୍ଥଟା କ'ଣ ? |
| ସୀତା | ଏମ୍.ବି.ଏ.ର ମାନେ ହେଲା...ଆପଣ ଜାଣନ୍ତୁ ମିଶି-ଭାଂଗି...ଆମଦାନୀ... |
| ହେଡ୍‌ଦିଦି | ଓ, ଏଇ କଥା...ଏଇଟା ତ ଆମ ବାଁ ହାତର ଖେଳ । |
| ସୀତା | ଯାହା କହିଲେ ଦିଦି । ଡ଼ାଳରେ ପିଲେ କଡ଼େଇରେ ପାଣି । ୯୦ଟା ଅଣ୍ଡା ସିଝା । |
| ପିଲେ | (ପାଟିରେ ଶବ୍ଦ କଲେ) କବ୍, କବ୍, କବ୍...ସିଝିଲା । |
| ସୀତା | ପକା ଚଟେଇ, ଧରଥାଳି, ପିଲାଏ ବସ ଧାଡ଼ିକି ଧାଡ଼ି । |
| ପିଲା | ଚକା ପକେଇ ବସିଯାଅ । ମଧ୍ୟାହ୍ନ ଭୋଜନ ପଂଗତ ଖାଅ । |
| ସୀତା | ଡାବୁଏ ଡାବୁଏ ଭାତକୁ ଲଗା । ତା'ରି ମଝିରେ ପୋଖରୀ ଖୋଳି, ଡଙ୍କାଏ ଡଙ୍କାଏ ଡାଲ୍ମା ପକା- । |
| ପିଲା | ପଡ଼ିଲା । ଇଏତ ପୃଥିବୀର ସବୁଠୁଁ ବଡ଼ ପୋଖରୀ । |
| ସୀତା | ସିଝା ଅଣ୍ଡାଟିଏ ମଝିରେ ରଖ-ରସଗୋଲାପରି ଭାସିବ ଦେଖ । |
| ପିଲା | ଦି'ଥର ମାଗିଲେ ଡାଲମା କେହି ? |
| ହେଡ୍‌ଦିଦି | କଡ଼େଇରେ ପୁରା ତୋରାଣି ନେଇ । |
| ସୀତା | ଯାହାକୁ ଯେତେ ଖାଇବ ଖାଅ । ଆମ ଦିଦିଙ୍କର ଜୟଜୟ କରି ହାକୁଟି ମାରି ଘରକୁ ଯାଅ... |
| ପିଲା | ଚାଲିଲୁ... (ଅନ୍ଧାର) |

## ଦ୍ୱିତୀୟ ଦୃଶ୍ୟ

(ରଞ୍ଜନର ଅଫିସ୍ ଘର । ଦେଖାଗଲା ରଞ୍ଜନ କାନରେ ଫୋନ୍ ଯାକି ମିତା ସହିତ ଗପୁଛି ଓ ଟାଇପ୍ କରୁଛି)

| | |
|---|---|
| ରଞ୍ଜନ | ବଢ଼ିଆ ଫଟୋ ପଠେଇଛ । ମୁଁ ଯାକୁ ଫେସ୍‌ବୁକ୍‌ରେ ପୋଷ୍ଟ କରିଦେଉଛି । |
| ସୀତା | (ଅନ୍ୟପଟରୁ) ନାନା ସାଙ୍ଗମାନେ ଦେଖିବେ ଥଙ୍ଗା କରିବେ । |
| ରଞ୍ଜନ | କରନ୍ତୁ । ବେଶ୍ ମଜାହେବ । ହେ ଡାର୍ଲିଙ୍ଗ୍ ତୁମେ ଆଜି ସଞ୍ଜରେ ଫ୍ରି ଅଛ ତ ? |
| ସୀତା | କାହିଁକି ? |
| ରଞ୍ଜନ | ସିନେମା ଯିବା । |
| ସୀତା | ନା ନା... ଡେରିହେଇଯିବ । |
| ରଞ୍ଜନ | ତା'ହେଲେ ସ୍କୁଲରୁ ସିଧା ଫରେଷ୍ଟ ପାର୍କ ଆସ ମୁଁ ଅଫିସ ପରେ ସେଠି ପହଞ୍ଚିବି । ଚାଟ୍ ଖାଇବା, ଗପସପ ହେବା, ତା'ପରେ ତୁମକୁ ନେଇ ଘରେ ଛାଡ଼ିଦେବି । (ପ୍ରବେଶ କଲେ ବଡ଼ବାବୁ) |
| ବଡ଼ବାବୁ | ହୋଇହୋ ରଞ୍ଜନ ବାବୁ ! ସେତେବେଳୁ ତୁମର ଚିଠିଟିଏ ଟାଇପ୍ ହୋଇପାରୁନି । କ'ଣ କରୁଛ ? ଗୋଟିଏ ଚିଠିରେ ତ ରାତିପାହିଯିବ ଦେଖୁଛି । |
| ରଞ୍ଜନ | ଆପଣ ସାର୍ ଏତେ ରାଗୁଛନ୍ତି କାହିଁକି କହିଲେ । ଦରମା ପରା ମୋଟରୁ ୫୦୦୦ । |
| ବଡ଼ବାବୁ | ଦରମା ଯାହା ହେଉ ପଛେ କାମ ଠିକ୍‌ଠିକ୍ କରିବ ନା ନାହିଁ । ନହେଲେ ଆଗକୁ ବଢ଼ିବ କେମିତି । ଆଗରେ ପୁରା ଭବିଷ୍ୟତ ପଡ଼ିଛି । ଏଠି କାମ ଯଦି ଭଲ ନ ଲାଗୁଛି, ଭଲ କାମ କେଉଁଠି ଦେଖି |

ସେଠି ଜଏନ୍ କରିଯାଉନ ଭଲ ଟଙ୍କା ପାଇବ, ଭଲ କାମ କରିବ । ଏଇ ୫୦୦୦ ଟଙ୍କାରେ ଜୀବନ କାଟିବ କେମିତି ? ପୁଅ ମାଇପ ପୋଷିବ କେମିତି ? କାମ କର । କାମ ଜାଣିଚ ଟି, As you show so you reap.

ରଞ୍ଜନ — ସରିଗଲାଣି ସାର୍ । ଆପଣ ଖାଲି ଟିକିଏ ଚେକ୍ କରିଦେଲେ ମୁଁ ହେଡ୍ ଅଫିସ୍‌କୁ ସେଣ୍ଡ୍ କରିଦେବି ।

ବଡ଼ବାବୁ — କାହିଁ ଦେଲ ଦେଖିବା-(ବଡ଼ ବାବୁ ଚିଠି ଦେଖି ପଢ଼ିବାକୁ ଲାଗିଲେ) ଡିଅର୍ ସରି ଡାର୍ଲିଙ୍ଗ୍- (ରଞ୍ଜନକୁ) ସରି କ'ଣ ତୁମ ଡାର୍ଲିଙ୍ଗର ନାମ ?

ରଞ୍ଜନ — ସେଇଆ ଲେଖି ଦେଇଛି କି ? .

ବଡ଼ବାବୁ — ରୁହ ରୁହ ପଢୁଛି । Dear Sorry Darling. I am sorry to say that the date of your delivary is going late. (ରଞ୍ଜନକୁ) ହଇହୋ ଇଏ କ'ଣ ଲେଖିଛ । (ପଢ଼ିଲେ) But don't worry. I will see that the delivary of your items will be safe and smooth by the end of this evening at forest park. (ନିଜକୁ ନିଜେ) ପୁଣି କ'ଣ ଗୋଟିଏ କବିତା ଆସିଲାଣି । (ପଢ଼ିଲେ) Forgive me forgive me, forget me not. love me, kiss me, hate me not yours sincerely dot, dot dot and dot. (ରାଗି) ଭଲ ଚିଠି ଲେଖିଛ ବୁଝିଲ । ଏତେ ସମୟ ଧରି ଏଇ ଡ୍ରାଫ୍ଟ ତିଆରି କରିଛ ଯାକୁ ମୁଁ ହେଡ୍ ଅଫିସ୍‌କୁ ମେଲ୍ କରିବି ? ନିଜ ଚାକିରୀ ତ ଯିବ । ମୋ ଚାକିରୀ ବି ଖାଇବା ଚକ୍କରରେ ଅଛ ଦେଖୁଛି ?

ରଞ୍ଜନ — ସରି ସାର୍ ।

ବଡ଼ବାବୁ — ଠିକ୍ କରି କୁହ । ସରି କିଏ ? ତୁମର ଡାର୍ଲିଙ୍ଗ ନା ତୁମର ଏଇ ହତଭାଗ୍ୟ ସାର୍ । ଆଜିକାଲିକା ପିଲା, କଥାକଥାକେ ଭୁଲ୍ ଆଉ କଥାକଥାକେ ସରି । ସତେ ଯେମିତି ସରି କହିବାଟା ଗୋଟିଏ ମାନିଆ ହୋଇଗଲାଣି ।

ରଞ୍ଜନ — ଆଉ ଦଶମିନିଟ ଭିତରେ ମୁଁ ଡ୍ରାଫ୍ଟ ରେଡ଼ି କରିଦେଉଛି ସାର୍ ।

ବଡ଼ବାବୁ — ଦେଖ ବାବା ତୁମେ ପଛେ ବସିବସି ଦରମା ନିଅ । ତୁମ ଉପରେ ଭରସା କରି ତୁମ ଡାର୍ଲିଙ୍ଗ ହାତରେ ମୋ ଚାକିରୀଟାକୁ ତ ମୁଁ ଛାଡ଼ି ଦେଇପାରିବିନି ।

ରଞ୍ଜନ — ସାର୍ ପ୍ଲିଜ୍ ଆଉ ଗୋଟିଏ ଚାନ୍ସ ଦେଇ ଦେଖନ୍ତୁ ।

ବଡ଼ବାବୁ — ଚାନ୍ସ ଦେଉଛି ଆଗେ ଫୋନ୍‌ଟାକୁ ପକେଟରେ ପୁରାଅ । ସବୁ ମୂଳରେ ଏଇ କାନକୁହା, ମିଛୁଆ ଯନ୍ତ୍ରଖଣ୍ଡିକ ଦାୟୀ । ଦେଖ ବାବୁ ଶେଷଥର ପାଇଁ କହିଦେଉଛି ୧୦ ମିନିଟ୍‌ରେ ଡ୍ରାଫ୍ଟ ରେଡ଼ି କର ନହେଲେ ଚାକିରୀ ଛାଡ଼ି ଘରକୁ ପଳା ।

## ତୃତୀୟ ଦୃଶ୍ୟ

(ହେଡ୍‌ଦିଦିଙ୍କ ଘରେ ଫୋନ୍ ବାଜିଲା)

ହେଡ୍‌ଦିଦି — (ଫୋନ୍ ଉଠାଇ) ସାର୍ ନମସ୍କାର ।

ବି.ଇ.ଓ. — ନମସ୍କାର । ଘରେ ନା ସ୍କୁଲରେ ।

ହେଡ୍‌ଦିଦି — ୬ଟା ବାଜିଲାଣି । ଘରେ ଅଛି । କାହିଁକି ସାର୍ ।

ବି.ଇ.ଓ. — ଆଜି ସ୍କୁଲରେ କଣ ପାଚାକା ଆସିନଥିଲା କି ?

ହେଡ୍‌ଦିଦି — ନାଇଁ ସାର୍ । ତାକୁ ମ୍ୟାଲେରିଆ ହୋଇଛି ତ ସେ ୪/୫ ଦିନ ଛୁଟୀରେ ଅଛି । ସେ ଖବର ଆପଣଙ୍କ ପାଖରେ ଏତେଶୀଘ୍ର ପହଞ୍ଚିଗଲାଣି । କିଏ କହିଲା ?

ବି.ଇ.ଓ. — ଆଜି ଉପସ୍ଥାନ କେତେ ଥିଲେ ?

ହେଡ୍‌ଦିଦି — ୫୦... ନାହିଁ ନାହିଁ ୯୦ ହେବ ସାର୍ ।

ବି.ଇ.ଓ. — ବାଃ...ଉପସ୍ଥାନର ରେକର୍ଡ଼ ପୁରା ମୁଖସ୍ଥ ଅଛି ନୁହେଁ । ଆଚ୍ଛା ଆଜି ରୋଷେଇ କଲା କିଏ ?

ହେଡ୍‌ଦିଦି — କାହିଁକି ? ମୁଁ ଆଉ ସୀତା...ମାନେ ଆମ ଶିକ୍ଷା ସହାୟୀକା ।

ବି.ଇ.ଓ. — ଆପଣ ତ ସେଠି ଶୋଇଥିଲେ, ଶୋଇ ଶୋଇ ଘୁଙ୍ଗୁଡ଼ି ମାରୁଥିଲେ, ପିଲାମାନେ ରୋଷେଇ କରୁଥିଲେ ଆଉ ସେ ଶିକ୍ଷାସହାୟିକାଙ୍କର ତ କାହିଁ କିଛି ଚିହ୍ନବର୍ଣ୍ଣ ସେ ଫଟୋରେ ନାହିଁ । ତା' ମାନେ ସେ ନିଜେ ଫଟୋ ଉଠେଇଥିବେ କି କ'ଣ ?

ହେଡ୍‌ଦିଦି — ମିଛ କଥା ସାର୍ । ଆମ ବିରୁଦ୍ଧରେ ଆପଣଙ୍କୁ କିଏ ମିଛକଥା ସବୁ କହିଛି ।

ବି.ଇ.ଓ. — ମିଛକଥା କେହି କହିନାହାନ୍ତି । ମୋ ଫେସ୍‌ବୁକ୍‌କୁ ପିକ୍‌ଚର ଆସିଛି । ଆପଣଙ୍କ ସରପଞ୍ଚ ପଠେଇଛନ୍ତି । ହୁସିଆର ଥାନ୍ତୁ ।

ହେଡ୍‌ଦିଦି — ସେତ ପୁରା ହାତ ଧୋଇ ମୋ ପଛରେ ପଡ଼ିଛନ୍ତି ସାର । ଆପଣ କ'ଣ ଜାଣିନାହାନ୍ତି ?

ବି.ଇ.ଓ. — ହେଲେ ତାଙ୍କ କଥା ବୁଝି ଦେଉ ନାହାନ୍ତି ।

ହେଡ୍‌ଦିଦି — ମାସକୁ ମାସ ବଟି କେଉଁଠୁ ଆଣି ଦେବି । ଦରମାରୁ ନା ଚାଉଳ ଡାଲି ବିକ୍ରି କରି ଦେବି । ତା'ପରେ ଧରାପଡ଼ିଲେ ଜେଲ ମୁଁ ଯିବି । ସେତେବେଳେ ସିଏ କ'ଣ ପିଠିରେ ପଡ଼ିବେ ନା ଆପଣ ଧରାଛୁଆଁ ଦେବେ ସାର୍ ।

ବି.ଇ.ଓ. — ଏଇଲେ ଆପଣଙ୍କ ତ୍ରୁଟି ତାଙ୍କ ହାତରେ ପଡ଼ିଛି । ନଚେଇ ନଚେଇ ନୟାନ୍ତ କରିବେ । ଆପଣ କ'ଣ ଜାଣିନାହାନ୍ତି ପିଲାଙ୍କୁ ଏମିତି କାମରେ ଲଗାଇବା ଦୋଷାବହ ଅପରାଧ । ସେ ଲୋକଟା ଛାଡ଼ିବା ଲୋକ ନୁହେଁ ଡି.ଇ.ଓଙ୍କ କାନକୁ କଥାଟା ନେଇପାରେ । କଥାଟା ଏଇଠି ନ ଛିଣ୍ଡିଲେ ଆଗକୁ ଆପଣ ଅଡୁଆରେ ପଡ଼ିବେ । ସ୍କୁଲଟା ହେଲା ଦଣ୍ଡମୁକ୍ତ ଅଞ୍ଚଳ । ସେଠି ପିଲାଙ୍କୁ ଖଟେଇବା ଓ ନିଜେ ସ୍କୁଲରେ ଶୋଇବା । ଏଇଟା ଠିକ୍ କଥା ନୁହେଁ ।

ହେଡ୍‌ଦିଦି — ବୁଝୁଛି ସାର୍, ହେଲେ ପାଚିକା ମାଉସୀ ଆସିନି ବୋଲି ସୀତାକୁ ରୋଷେଇ ଦାୟିତ୍ୱଟା ଦେଇଥିଲି ସାର୍ ।

ବି.ଇ.ଓ. — କାହିଁକି ଆପଣ ରୋଷେଇ କଲେନି ? ରୋଷେଇ ଆସୁନି ନା କ'ଣ ? ଘର ଚଳେଇଛନ୍ତି କେମିତି ? ପିଲାଙ୍କ ହାତରେ ରୋଷେଇ ଦାୟିତ୍ୱ ଦେଇ ନିଜେ ଆରାମରେ ଘୁଙ୍ଗୁଡ଼ି ମାରୁଛନ୍ତି । ତରକାରୀରେ ଯଦି ଏଣ୍ଡୁଅ କି ଝିଟିପିଟି କିମ୍ୱା ସାପ ବେଙ୍ଗ ପଡ଼ିଯାଇଥାନ୍ତେ କ'ଣ ହୋଇଥାନ୍ତା । ଏବେ ହାଜତରେ ବସି କାନ୍ଦୁଥାନ୍ତେ ।

ହେଡ୍‌ଦିଦି — କ'ଣ ଆଉ କରିବି ସାର୍ ।

ବି.ଇ.ଓ. — ଟ୍ରାନ୍‌ସଫର ପାଇଁ ରେଡ଼ି ହୋଇଯାନ୍ତୁ । (ଫୋନ୍ କଟିଗଲା)

ହେଡ୍‌ଦିଦି — ସରି ସାର୍ । (ରାଗି) ଏ ସୀତାଟା ତ ଭାରି ସାଂଘାତିକ ପିଲା । ତାକୁ ପାନେ ଦେଉଛି ରହିଥା । (ଫୋନ୍ ଲଗାଇଲେ ବିଜି ଆସିଲା) ଘଣ୍ଟା ଘଣ୍ଟା ଧରି ଫୋନ୍ ବ୍ୟସ୍ତ ରହୁଛି । ପ୍ରେମ ଗପତ ସରୁନି । ସେ ପୁଣି ମାଷ୍ଟ୍ରାଣୀ ହୋଇଛି। ମୁଁ ବି କ'ଣ ଛାଡ଼ିବା ପିଲା ହୋଇଛି । ତା' ଘରକୁ ଫୋନ୍ ଲଗାଉଛି ରହିଥା । (ଫୋନ୍

ଲଗାଇଲେ) (ମିତା ଘର ଫୋନ୍ ଧରିଲେ ତା' ମାଆ)

ମାଆ ହେଲୋ, କିଏ କହୁଛନ୍ତି ?

ହେଡ୍‌ଦିଦି ମୁଁ ସ୍କୁଲର ହେଡ୍ ଦିଦି କହୁଛି ।

ମାଆ ଆଚ୍ଛା ଆଚ୍ଛା ଦିଦି ନମସ୍କାର । କ'ଣ କୁହନ୍ତୁ ।

ହେଡ୍‌ଦିଦି ସୀତା କ'ଣ ଘରେ ଅଛି କି ?

ମାଆ ସେ ତ ସେଇ ସକାଳ ପହରୁ ସ୍କୁଲ ଯାଇଛି ଯେ ଏଯାକେ ଫେରିନି । ସେ ସ୍କୁଲରେ ନାହିଁ କି ?

ହେଡ୍‌ଦିଦି ସେ ସକାଳେ ସ୍କୁଲ ଆସିଥିଲା । ହେଲେ କେତେବେଳୁ ଘରକୁ ଗଲାଣି । ଘରେ ପହଞ୍ଚିନି କି ? ତା' ଫୋନ୍ ବି ଲାଗୁନି ବିଜି ଦେଖାଉଛି । କୁଆଡ଼େ ଗଲା କେଜାଣି ?

ମାଆ ସ୍କୁଲ କ'ଣ ଛୁଟି ହୋଇଗଲାଣି ?

ହେଡ୍‌ଦିଦି ଛୁଟି ଆଉ କ'ଣ ହେବ ? ମଧ୍ୟାହ୍ନ ଭୋଜନ ଖାଇ ସାରି ହାଣ୍ଡି କଡ଼େଇ ମାଜି ଦେଲେ ତ ସଇଲା । ତେଣିକି ଯିଏ ଯୁଆଡ଼େ ଗଲେ କି ରହିଲେ, କିଏ ଖୋଜୁଛି ନା ଲୋଡୁଛି ?

ମାଆ ସ୍କୁଲରୁ ସେ କେତେବେଳୁ ଗଲାଣି ?

ହେଡ୍‌ଦିଦି ୪ଟା ପାଖାପାଖି ।

ମାଆ ଏ ଯାକେ ତ ଘରେ ପହଞ୍ଚିନି ।

ହେଡ୍‌ଦିଦି ସେ ତ ଘରେ ଘରେ ପହଞ୍ଚିନି ଅଥଚ ଫଟୋ ସବୁ ସଂସାର ସାରା ପହଞ୍ଚିଗଲା କେମିତି ?

ମାଆ କି ଫଟୋ, କାହା ଫଟୋ ?

ହେଡ୍‌ଦିଦି ଘରକୁ ଆସିଲେ ତାକୁ ପଚାରିବ । ଫେସ୍‌ବୁକ୍‌ରେ ମୋ ଫଟୋ ସବୁ ଛାଡ଼ି ଦେଇଛି ଯେ ବି.ଇ.ଓ ମୋତେ ଫୋନ୍ କରି ତାଗିଦ୍ କଲେଣି । ମୋର ଯଦି କିଛି ଅସୁବିଧା ହୁଏନା, କାହାକୁ ଛାଡ଼ିବି ନାହିଁ । ତାକୁ ସମ୍ଭାଳ । ଦିନରାତି ଫୋନ୍ ଧରି ପ୍ରେମିକ ସାଙ୍ଗରେ ଗପୁଛି । କହିଲାବେଳକୁ ମୋ ଫଟୋ ଉଠାଇ ଫସେଇ ଦେଇଛି । ଭାରି ଡେଞ୍ଜରସ୍ ପିଲା । ବେଳ ଥାଉଁ ଥାଉଁ ସମ୍ଭାଳ ନ ହେଲେ ନେଡ଼ିଗୁଡ଼ କହୁଣୀକୁ ବୋହିଗଲାପରେ, ଚୋର ମା' କାନ୍ଦିଲା ଭଳିଆ ତୁମେ ବାପା ମା' ହଳକ କବାଟ କିଳି ବସି ଗୁମୁରି ଗୁମୁରି କାନ୍ଦିବ ଜାଣିଥା-ହୁଁ (ଫୋନ୍ କଟିଲା) । (ବି.ଇ.ଓ.ଙ୍କ ଫୋନ୍ ବାଜିଲା) ସାର୍ ନମସ୍କାର । କ'ଣ ହେଲା ସାର୍ ପୁଣି ଫୋନ୍ କଲେ ।

ବି.ଇ.ଓ. ଯେଉଁ କଥାକୁ ଡରୁଥିଲି ସେଇଆ ହେଲା । ଡି.ଇ.ଓ. ଏଇନେ ମୋତେ ଫୋନ୍ କରିଥିଲେ । ସରପଞ୍ଚ ତାଙ୍କୁ ଫୋନ୍ କରି ପୁରା ଖପ୍ପା ହୋଇ କହିଛନ୍ତି । ଆସନ୍ତା ମଙ୍ଗଳବାର ଦିନ ଡି.ଇ.ଓ. ଇନ୍‌ସିପେକ୍ସନ୍‌ରେ ଆପଣଙ୍କ ସ୍କୁଲକୁ ଯିବେ । ମୁଁ ବି ଯିବି । ଆପଣ ଟିକିଏ ସେ ସରପଞ୍ଚକୁ ପଟାନ୍ତୁ ନ ହେଲେ ଅଡୁଆରେ ପଡ଼ିବେ ।

ହେଡ୍‌ଦିଦି ଆପଣ ଟିକିଏ ବାଟ ବତାନ୍ତୁ ସାର୍ । ନହେଲେ ମରିଯିବି ସାର୍ ।

ବି.ଇ.ଓ. ଶୁଣନ୍ତୁ ଆପଣଙ୍କ ଶୋଇବା ବିଷୟରେ କେହି ପଚାରିଲେ ଆପଣ କହିବେ ଯେ ଟିଫିନ୍ ପରିୟଡ଼ରେ ଟିଫିନ୍ ଘଣ୍ଟା ବଜେଇ ମୁଁ ରେଷ୍ଟ ନେଉଥିଲି ।

ହେଡ୍‌ଦିଦି ଆରେ ବାଃ... ଆଇଡ଼ିଆଟା ବଢ଼ିଆ ଏଇ ଆଇଡ଼ିଆ ମୋ ମୁଣ୍ଡରେ ନଥିଲା ।

ବି.ଇ.ଓ. ମୁଣ୍ଡଟା ଆପଣଙ୍କ ପାଖରେ ଥିଲା ନା, ଘରେ ଛାଡ଼ି ଦେଇ ଆସିଥିଲେ ? ହଁ ଶୁଣନ୍ତୁ ଘୁଘୁଡ଼ି ମାରିବା କଥା କେହି ପଚାରିଲେ କହିବେ ମୁଁ ଶୋଇ ଶୋଇ ଯୋଗ କରୁଥିଲି, ''ଭସ୍ତିକା ଆସନ''... ।

ବୁଝିଲେ । ଏ ଆଇଡ଼ିଆଟା ବି ମୁଣ୍ଡରେ ପୁରାନ୍ତୁ ।

ହେଡ୍‌ଦିଦି — ସାର୍ ଆପଣଙ୍କ ବୁଦ୍ଧିକୁ ମାନିବାକୁ ପଡ଼ିବ ?

ବି.ଇ.ଓ. — ଏମିତି ଶୁଖିଲା ଦଣ୍ଡବତରୁ କ'ଣ ମିଳିବ ?

ହେଡ୍‌ଦିଦି — ଆପଣଙ୍କୁ ମିଠା ଖୁଆଇବି ସାର୍ । ସୁଗାର ଫ୍ରି ମିଠା ।

ବି.ଇ.ଓ. — ଥାଉ ଥାଉ । ଆପଣଙ୍କ ଗାଁ ବାଲା ବିଶେଷ କରି ୱାର୍ଡ଼ମେମ୍ବରକୁ ପଟାନ୍ତୁ । ମୁଁ ଦେଖୁଛି କ'ଣ କରିପାରୁଛି ।

ହେଡ୍‌ଦିଦି — ଆପଣ ଚାହିଁଲେ ସବୁ କରିପାରିବେ ସାର୍ ।

ବି.ଇ.ଓ. — ଭଲ...ଭଲ...ଭଲ... ଭୁଲ୍ କରିବ ତୁମେ ଆଉ ସମ୍ଭାଳିବୁ ଆମେ । ହଉ ସେଦିନ ଭଲ ଖାଇବା ପିଇବା କରିଥିବ । ହଁ ଶୁଣ ସ୍କୁଲରେ ନୁହେଁ ଅନ୍ୟ କେଉଁଠି । ହୋଟେଲରେ ନ ହେଲେ ଆପଣଙ୍କ ଘରେ ।

ହେଡ୍‌ଦିଦି — ସେ ପାଇଁ ଚିନ୍ତା କରନ୍ତୁ ନାହିଁ ସାର୍ । ଗାଁ ବାଲା ଆଉ ୱାର୍ଡ଼ମେମ୍ବରଙ୍କ କଥା ମୁଁ ବୁଝୁଛି । ଆପଣ ସାର୍ ସେ ସରପଞ୍ଚକୁ ସମ୍ଭାଳନ୍ତୁ ସାର୍, ସେ ଭଲ ଲୋକ ନୁହଁନ୍ତି ।

ବି.ଇ.ଓ. — ହେଉ ରହିଲି ।

ହେଡ୍‌ଦିଦି — ନମସ୍କାର ସାର୍ । (ଫୋନ୍ କଟିଲା) **ଅନ୍ଧାର**

## ୪ର୍ଥ ଦୃଶ୍ୟ

(ସ୍କୁଲର ଦୃଶ୍ୟ ଡି.ଇ.ଓ., ବି.ଇ.ଓ., ହେଡ୍‌ଦିଦି, ସୀତା ଅଛନ୍ତି)

ଡି.ଇ.ଓ. — ଫେସ୍‌ବୁକ୍‌ରେ ଫଟୋ ଛାଡ଼ିଲା କିଏ ?

ହେଡ୍‌ଦିଦି — ସେଠି ସୀତା ଛଡ଼ା ଆଉ କେହି ନଥିଲେ ।

ସୀତା — ସମସ୍ତେ ଥିଲେ, ଦିଦି ଥିଲେ, ପିଲାମାନେ ଥିଲେ, ଅନ୍ୟ ସାର୍‌ମାନେ ସ୍କୁଲରେ ଥିଲେ । ଥିଲେ କି ନଥିଲେ ଦିଦି କହୁ ନାହାନ୍ତି ?

ବି.ଇ.ଓ. — ଯିଏ ଥାଉ କି ନଥାଉ ଫଟୋ ଉଠାଇଛି କିଏ ? (ସୀତାକୁ) ଆପଣ ଉଠେଇ ନାହାନ୍ତି ?

ସୀତା — ଫଟୋ ଉଠେଇଥିଲି କିନ୍ତୁ ଫେସ୍‌ବୁକ୍‌ରେ ପବ୍ଲିକ୍ ପୋଷ୍ଟ କରିନି । କିମ୍ୱା ଦିଦିଙ୍କୁ ହଇରାଣ କରିବା ମୋର ଉଦ୍ଦେଶ୍ୟ ନଥିଲା ଇନ୍‌ଫ୍ୟାକ୍ଟ ଏମିତି ଗୋଟିଏ ପରିସ୍ଥିତି ହେବ ବୋଲି ମୁଁ ଆଶା ବି କରି ନଥିଲି । ମଜାରେ ମଜାରେ ମୋର ଜଣେ ସାଂଗ ପାଖକୁ ଫଟୋ ପଠେଇଥିଲି । ସେ ପୋଷ୍ଟ କରିଦେଇଛି । ସେଥିରେ ମୋର ହାତ ନାହିଁ । ମୁଁ ତ ତାକୁ ଏଥିପାଇଁ ଗାଳି ମଧ କରିଛି । ଏଇଟା ମୁଁ ଆଉଟ୍ ଅଫ୍ ରେକର୍ଡ଼ କହୁଛି । ଇନ୍‌କ୍ୱାରୀ ରିପୋର୍ଟ ପାଇଁ ଯଦି ମୁଁ କହେ ତା'ହେଲେ ମୁଁ କହିବି ଯେ ମୁଁ ଫଟୋ ଉଠାଇ ନାହିଁ ।

ହେଡ୍‌ଦିଦି — ପିଲାଙ୍କୁ ଡାକି ପଚାରନ୍ତୁ । ମୁଁ ତହିଁପରଦିନ ପଚାରିଥିଲି । ପିଲାମାନେ ମୋତେ କହିଥିଲେ ସାନଦିଦି ଫଟୋ ଉଠେଇଥିଲେ ।

ବି.ଇ.ଓ. — ପିଲାମାନଙ୍କୁ ଡାକନ୍ତୁ ।

ହେଡ୍‌ଦିଦି — ସେ ପିଲାମାନେ କେହି ଆଜି କ'ଣ ଆସିନାହାନ୍ତି ।

ବି.ଇ.ଓ. — କାହିଁକି ଆସିନାହାନ୍ତି ?

ହେଡ୍‌ଦିଦି — ସୀତା ମନା କରିଦେଇଥିବ ।

ସୀତା — ମୁଁ କାହିଁକି ମନାକରିବି ? ଆପଣ ହେଡ୍‌ଦିଦି । ଆପଣଙ୍କ ସ୍କୁଲରେ ଯାହାହେବ ସେଇଟା ଆପଣଙ୍କ ଦାୟିତ୍ୱ । ଆପଣ ମୋତେ ରୋଷେଇ କରିବାକୁ କହିଲେ ମୁଁ ରୋଷେଇ କଲି । ପିଲାମାନେ ମୋତେ ସାହାଯ୍ୟ କଲେ ଆପଣ ସବୁ ଦେଖିଲେ କିଛି କହିଲେ ନାହିଁ । ସେଦିନ ମୁଁ ରୋଷେଇ କରି ନଥିଲେ ଆଜି ଦୋଷି ହୋଇ ନଥାନ୍ତି । ଯିଏ ଶୋଇଲା ଦୋଷ ହେଲାନି, ଯିଏ ଖଟିଲା ସେ ଦୋଷୀ । ଭଲାଯୁଗ ହେଲା ଇଏ ।

ଡ଼ି.ଇ.ଓ. — ଆପଣ ଶୋଇ ନଥିଲେ ?

ହେଡ୍‌ଦିଦି — ମୁଁ ଟିଫିନ୍ ଘଣ୍ଟା ବଜେଇ ରେଷ୍ଟ ନେଉଥିଲି ।

ଡ଼ି.ଇ.ଓ. — ଆପଣଙ୍କ ନାକ କିନ୍ତୁ ଘଡ଼ଘଡ଼ କରୁଥିଲା । ଆପଣ ଘୁଙ୍ଗୁଡ଼ି ମାରୁଥିଲେ ।

ହେଡ୍‌ଦିଦି — ନାନା ଶୋଇ ଶୋଇ 'ଭସିକା ଆସନ'' କରୁଥିଲି ।

ଡ଼ି.ଇ.ଓ. — ସବୁକଥା ଜଣାପଡ଼ିବ । ପିଲାମାନଙ୍କୁ ଡକାଇ ପଠାନ୍ତୁ ।

ସରପଞ୍ଚ — (ପ୍ରବେଶ) ପିଲାମାନେ କ'ଣ ଏଠି ଗୋଟି ଶ୍ରମିକ ଯେ ସ୍କୁଲକୁ ଖଟିବାକୁ ଆସିବେ । ଏଠି ତ ପିଲା ରାନ୍ଧିବାଢ଼ି ଖାଇବେ ଆଉ ମାଷ୍ଟରମାନେ ପାଠ ନ ପଢ଼େଇ ସକାଳପହରୁ ଘୁଙ୍ଗୁଡ଼ି ମାରି ଶୋଇବେ ।

ଡ଼ି.ଇ.ଓ. — ଆପଣ ଏଠିକି କାହିଁକି ଆସିଛନ୍ତି ? ଆପଣ ତ କମ୍ପଲେନ୍ ପଠେଇଲେ ଆମେ ଇନ୍‌କ୍ୱାରୀ କରୁଛୁ ।

ସରପଞ୍ଚ — ଇନ୍‌କ୍ୱାରୀ କରୁଛନ୍ତି ବୋଲି ତ ଆସିଲି । ଆମକୁ ଡାକିଲେ ନାହିଁ କାହିଁକି ?

ଡ଼ି.ଇ.ଓ. — ଦରକାର ପଡ଼ିଲେ ଡକାଯିବ । ଏବେ ଆପଣ ଆସନ୍ତୁ ।

ସରପଞ୍ଚ — କିଛି ଶୁଣାଯିବ ନାହିଁ । ଆମେ ଏଠାକାର ସରପଞ୍ଚ । ଲୋକ ପ୍ରତିନିଧି ? ଆମ ଇଚ୍ଛା ଅନୁସାରେ ଏଠି ଶାସନ ଚାଲିବ । ହେଡ୍ ଦିଦିଙ୍କୁ ଶୀଘ୍ର ବଦଳି କର ।

ଡି.ଇ.ଓ. — କ'ଣ ଆପଣ ଯାହାଚାହିଁବେ ସେଇଆ ହେବ ? ଆଗ ଇନ୍‌କ୍ୱାରୀ ସରୁ ଯିଏ ଦୋଷୀ ହେବ ଦଣ୍ଡ ପାଇବ । ବିନା ଦୋଷରେ କେବଳ ଆପଣଙ୍କ କଥାରେ କାହାକୁ ଦଣ୍ଡ ଦିଆଯାଇ ପାରିବ ନାହିଁ ।

ସରପଞ୍ଚ — ପ୍ରମାଣ ପରା ଏଇ ହାତେ ହାତେ ଅଛି । ପୁଣି ପ୍ରମାଣ ମିଳିବ କ'ଣ ? ତାଙ୍କୁ ଆଗେ ଟ୍ରାନ୍‌ସଫର କର ତା'ପରେ ଯେଉଁ କଥା ।

ଡି.ଇ.ଓ. — ଆପଣ ଏତେ ଜିଦ୍ କରୁଛନ୍ତି କାହିଁକି ?

ସରପଞ୍ଚ — କହିବି ନାହିଁ ? କି ଆଶ୍ଚର୍ଯ୍ୟ ? ମୁଁ କହିବି ନାହିଁ ତ ଆଉ କିଏ କହିବ ? ଶୁଣନ୍ତୁ ମୁଁ ଅନ୍ୟାୟ ସହିବି ନାହିଁ । କିହୋ ଆମ ସ୍କୁଲରେ ଚାକିରୀ କରିଛ ଅଥଚ ଆମକଥା ଶୁଣିବ ନାହିଁ । ଆମକୁ ସ୍କୁଲକୁ ଡାକି ପତାକା ଉଡ଼େଇବ ନାହିଁ । ଗଣେଶପୂଜା ସରସ୍ୱତୀ ପୂଜାରେ ନିମନ୍ତ୍ରଣ କରିବ ନାହିଁ । ବୋଲହାକ ଶୁଣିବ ନାହିଁ । ଆମେ କ'ଣ ଉଡ଼ିଆସିଛୁ । ହକ ଭୋଟ ପାଇ ନିର୍ବାଚିତ ହୋଇଆସିଛୁ । ଆମେ ଯାହା ଚାହିଁବୁ ତୁମେ ସେଇଆ କରିବ । ନ କରିବ ଯଦି ଅନ୍ୟ ଯାଗାକୁ ପଳାଅ ।

ବି.ଇ.ଓ. — ହଉ ହେଲା ଏଣିକି ସେ ସବୁ କଥା ବୁଝିବେ । ଆପଣଙ୍କ କଥା ବି ବୁଝିବେ ଏଥର । ଆପଣ ଯାଆନ୍ତୁ ।

ସରପଞ୍ଚ — ନା ନା ଟ୍ରାନ୍‌ସଫର ଅର୍ଡ଼ରଟା ଆଜି ହାତରେ ନ ନେଇ ମୁଁ ଏଠୁ ହଲିବା ଲୋକ ନୁହେଁ । ନହେଲେ ଡାଇରେକ୍ଟରଙ୍କ ପାଖକୁ ଯିବି । ସେକ୍ରେଟାରୀଙ୍କ ପାଖକୁ ଯିବି । ମନ୍ତ୍ରୀଙ୍କ ପାଖକୁ ଯିବାକୁ ମଧ ପଛାଇ ଯିବି ନାହିଁ । ମୋତେ କ'ଣ ବୋଲି ଭାବିଛ କି ?

ୱାର୍ଡ଼ମେମ୍ବର — (ପ୍ରବେଶୀ) କୁମ୍ଭୀରକୁ କାଠଗଡ଼ ବୋଲି ଭାବିଛନ୍ତି । ହଇହେ ସାର୍! ଯଦି ସରପଞ୍ଚ ବାବୁଙ୍କ କଥା ଶୁଣି ହେଡ୍‌ଦିଦିଙ୍କର ଟ୍ରାନସ୍‌ଫର ହେବ ତା'ହେଲେ ଆମକଥା ଶୁଣନ୍ତୁ । ଏଠୁ କାହାରି ଟ୍ରାନ୍‌ସଫର ହେବ ନାହିଁ ।

ଡି.ଇ.ଓ. — ଆପଣ କିଏ ?

ୱାର୍ଡ଼ମେମ୍ବର — ମୁଁ ଏଠିକାର ଲୋକାଲ ଲୋକ ପ୍ରତିନିଧି । ମାନେ ୱାର୍ଡ଼ମେମ୍ବର । ଏ ସ୍କୁଲ ମୋ ଏରିଆରେ ଆସୁଛି । ଆମେ ଜାଣିଛୁ ଦିଦି ଆମର ଭଲ କାମ କରୁଛନ୍ତି । ନିୟମିତ ସ୍କୁଲ ଆସୁଛନ୍ତି । ମଧ୍ୟାହ୍ନଭୋଜନ ହେଉଛି । ପିଲାମାନଙ୍କୁ ସ୍ନେହସରାଗ ବି କରୁଛନ୍ତି ।

ସରପଞ୍ଚ — ଆଉ ପାଠପଢ଼ା ।

ୱାର୍ଡ଼ମେମ୍ବର — ସେଇଟା ବି ଠିକ୍‌ଠାକ୍ ଚାଲିଛି । ତାଙ୍କ ବିରୁଦ୍ଧରେ ଆମର କିଛି କମ୍ପ୍ଲେନ୍ ନାହିଁ ।

ସରପଞ୍ଚ — ତୁମ ଘରକୁ ଅଣ୍ଡା ତରକାରୀ ଯାଉଛି ବୋଧହୁଏ ।

ୱାର୍ଡ଼ମେମ୍ବର — ଆଉ କ'ଣ ଆପଣଙ୍କ ଘରକୁ ଯାଆନ୍ତା । ସ୍କୁଲ୍‌ର ଡେଭ୍‌ଲପ୍‌ମେଣ୍ଟ୍ ପାଇଁ ଗୋଟିଏ କାଣିପଇସା ତ ସେଙ୍କସନ୍ କରୁ ନା ଆଉ ମାମଲତି କଲାବେଳକୁ ଅଣ୍ଟାରେ ଗାମୁଛା ଭିଡ଼ି ପଳେଇ ଆସୁଛ ନାହିଁ । ବଡ଼ଦିଦିଙ୍କୁ ଟ୍ରାନ୍ସଫର କଲେ ଏ ସ୍କୁଲରେ ନିଆଁ ଜଳିବ । ତାଲା ପଡ଼ିବ ଜାଣିଥା ।

ସରପଞ୍ଚ — ବଡ଼ଦିଦିଙ୍କୁ ସ୍କୁଲରେ ଗୋଟିଏ ଖଟିଆ ଦେଇଦେଉନ । ଆରାମରେ ଶୋଇ ଘୁଙ୍ଗୁଡ଼ି ମାରିବେ ।

ୱାର୍ଡ଼ମେମ୍ବର — ସିଏ ହେଲେ ପ୍ରତିଦିନ ସ୍କୁଲ୍ ଆସୁଛନ୍ତି ହେଲେ ପଞ୍ଚାୟତ ଅଫିସରେ ତ ଅଧାଦିନ ତାଲା ପଡୁଛି ଯେ କିଛି କାମ ହୋଇପାରୁନି । ଯେତେବେଳେ ଖୋଜିଲେ ସରପଞ୍ଚବାବୁ ଭୁବନେଶ୍ୱର ଯାଇଛନ୍ତି । ଏମ୍.ଏଲ୍.ଙ୍କ ପୁଅ ବାହାଘର । ମନ୍ତ୍ରୀଙ୍କ ଜନ୍ମଦିନ ଗାଡ଼ିରେ ଖାଲି ଥଳି ଥଳି ନୋଟ୍ ବୁହାଚାଲିଛି ଏଣେ ମୁଗୁରା ପଛ ମେଲା ପଡ଼ିଛି । ନିଜ ଶୋଇ ପୁରା ଜଳଜଳ ହୋଇ ଦିଶୁଛି ସେ ଆଡ଼େ ବାବୁଙ୍କ ନଜର ନାହିଁ । ଏଇ ମାଇକିନିଆ କେତେଟା ଉପରେ ମର୍ଦ୍ଦାଙ୍ଗୀ ଦେଖେଇବାକୁ ଚାଲିଆସିଲେ । ବର୍ଷରେ କେତେଥର ସ୍କୁଲକୁ ଆସୁଛନ୍ତି ? ଭଲମନ୍ଦ କଥା ବୁଝୁଛନ୍ତି । ଆଉ ଆଜି ଅଭିଯୋଗ ଫର୍ଦ୍ଦ ଧରି ଚାଲିଆସିଲେ । (ହେଡ୍‌ଦିଦିଙ୍କ ଫୋନ୍ ବାଜିଲା)

ସରପଞ୍ଚ — ସ୍କୁଲକୁ ଫୋନ୍ ନେଇ ଆସିବା ମନା । ସେ ଫୋନ୍ କାହିଁକି ଆଣିଛନ୍ତି ?

ୱାର୍ଡ଼ମେମ୍ବର — ସମସ୍ତେ ଫୋନ୍ ଆଣିଛନ୍ତି ଆପଣ ଆଣିଛନ୍ତି, ସାର୍ ମାନେ ବି ଆଣିଛନ୍ତି ଆଉ ତା'ଛଡ଼ା ସ୍କୁଲରେ କିଛି ଅଘଟଣ ଘଟିଲା । ଫୋନ୍ ନଥିଲେ ସେ ଖବର କରିବେ କେମିତି ? ଫୋନ୍‌ଟା ବନ୍ଧୁକ କି ବୋମା ନୁହେଁ ଯେ ସ୍କୁଲକୁ ନେଇ ଆସିଲେ ଅପରାଧ ହୋଇଗଲା ।

ସରପଞ୍ଚ — ଘଣ୍ଟା ଘଣ୍ଟା ଧରି ତ ସେଥିରେ ଗପ ଚାଲିବ ଆଉ ପାଠ ପଢ଼ା ହେବ କେତେବେଳେ ?

ଡି.ଇ.ଓ. — ଠିକ୍ କଥା ସ୍କୁଲକୁ ଫୋନ୍ ଆସିଲା ବୋଲି ସିନା ଫଟୋ ଉଠା ହେଲା ଏତେ ବିପତ୍ତି ଆସିଲା । ନ ହେଲେ ତ ସବୁ ଠିକ୍‌ଠାକ୍ ଚାଲିଥିଲା ।

ସରପଞ୍ଚ — ଢ଼ୋଲ ଭିତରେ ମୂଷା ସବୁ ପୋଲ କରି ଦେଲାଣି ଅଥଚ ଆପଣ କହୁଛନ୍ତି କ'ଣ ନା ସବୁ ଠିକ୍‌ଠାକ୍ ଚାଲିଥିଲା । ମୁଁ ତ ବରଂ କହିବି ଯିଏ ଫଟୋଉଠାଇ ଫେସ୍‌ବୁକ୍‌ରେ ଛାଡ଼ିଛି ତାକୁ ପୁରସ୍କାର ଦେବାକଥା । ଅସଲ ଗୁମର କଥାକୁ ପଦାରେ ପକେଇ ଦେଲାନା...ଲୋକ ସଚେତନ ହେଲେ । (ବଡ଼ଦିଦିଙ୍କୁ) ହଇହୋ ଦିଦି ଆଜି ଟିଫିନ୍ ଆଣିଛନ୍ତି ନା ନାହିଁ ?

ହେଡ୍‌ଦିଦି — ନା ଆଣିନି ।

ସରପଞ୍ଚ — ନାହିଁ ଆଣିବେ କାହିଁକି ଏଠି ମାହାଳିଆ ମଧ୍ୟାହ୍ନଭୋଜନ ପଙ୍ଗତ ଚାଲିଛି । ସରକାରଙ୍କ ଠାରୁ ଦରମା ନେବେ ମାହାଳିଆ ପଙ୍ଗତ ବି ଖାଇବେ । ନା କ'ଣ କହୁଛନ୍ତି ।

ୱାର୍ଡ଼ମେମ୍ବର — ଟିଫିନ୍ ନ ଆଣି ଠିକ୍ କରିଛନ୍ତି ବୁଝିଲେ ସାର୍ ଏଇଟା ହେଉଛି ପ୍ରକୃତ ଶିକ୍ଷକର କର୍ତ୍ତବ୍ୟ । ପିଲା ଖାଇବା ଆଗରୁ ଖାଦ୍ୟ ସବୁ ଚାଖିବେ କାଳେ ଯଦି ଫୁଡ୍ ପଏଜନ୍ ହୋଇଥିବ । ପିଲାଗୁଡ଼ା ତ ବିପଦରୁ ରକ୍ଷା ପାଇଯିବେନା–ସାନଦିଦି ଟିଫିନ୍ ଆଣିଛନ୍ତି ? କହୁନାହାନ୍ତି ।

ସୀତା — କ'ଣ କହିବି ? ଆଣିଛି କହିଲେ ଦୋଷ । ଆଣିନି କହିଲେ ବି ଦୋଷ । ତେଣୁ ଚୁପ୍ ରହିବାଟା ଠିକ୍ ।

ସରପଞ୍ଚ — ପ୍ରାୟ ପ୍ରତିଦିନ ଯେତେ ଉପସ୍ଥାନ ରହୁଛି ଯାହା ତା'ର ଦେଢ଼ଗୁଣା ଅଧିକା ଅଣ୍ଡା ସିଝୁଛି । ସବୁ ଯାଉଛି କୁଆଡ଼େ ? ଦିଦିଙ୍କ ଘରକୁ ନ ହେଲେ ୱାର୍ଡ଼ମେମ୍ବର ସାହାବଙ୍କ ଘରକୁ ଅଧା ଅଧା ଯାଉଥିବ ।

ୱାର୍ଡ଼ମେମ୍ବର — ଯିଏ ଯେମିତି ଲୋକ ତାକୁ ଜଗତଟା ସେମିତି ଦେଖାଯାଏ । ବି.ପି.ଏଲ୍. ଚାଉଳ, କିରାସିନି ଖାଇ ଖାଇ ଅଜିର୍ଣ୍ଣ ହେଲାଣି ତ ? ତେଣୁ ଅଣ୍ଡା ସିଝା ଖାଇବାକୁ ଆଶା ଡାକୁଛି ବୋଧହୁଏ । ତା'ହେଲେ ପ୍ରତିଦିନ ଖରାବେଳେ ଥାଳିଗିନା ଧରି ସ୍କୁଲ ଆସୁ ନାହାନ୍ତି ? ସାଂଗ ହୋଇ ମାହାଳିଆ ମଧ୍ୟାହ୍ନଭୋଜନ ଗେମ୍ପିବା ।

ସରପଞ୍ଚ — ହେ ବୁଦ୍ଧିଆ ! ଭଲକଥା ଅଛି ଯଦି ଏଠି ପଳା କହୁଛି । ନ ହେଲେ ମୁଁ ତୋ ହୁଲିଆ ବଦଳେଇ ଦେବି ।

ୱାର୍ଡ଼ମେମ୍ବର — କ'ଣ ହେଲା ? ମୋ ଅଗଣାରେ ଠିଆ ହୋଇ ମୋତେ ଧମକ ଦିଆ ହେଉଛି । ମୋ ହୁଲିଆ ବଦଳେଇ ଦେବେ । ଆଚ୍ଛା ଦେଖିବା କିଏ କାହାର ହୁଲିଆ ବଦଳେଇ ଦେଉଛି । (ହୁଇସିଲ୍ ମାରିଲେ) (ଗାଁ ବାଲା ଧାଇଁ ଆସିଲେ ମାରପିଟ ଆରମ୍ଭ ହୋଇଗଲା)

ଡ଼ି.ଇ.ଓ. — କ'ଣ କରିବା ଏବେ ?

ବି.ଇ.ଓ. — ମୁଁ ବି ସେଇଆ ଭାବୁଛି ।

ହେଡ୍‌ଦିଦି — ପଛପଟ ଦରଜା ଦେଇ ପଳାଇ ଯିବା ଚାଲନ୍ତୁ । ନହେଲେ ଆମ ମୁଣ୍ଡରେ ଠେଙ୍ଗା ବାଜିବ ।

ବି.ଇ.ଓ. — ପୋଲିସ୍‌କୁ ଖବର କରନ୍ତୁ ସାର ।

ସୀତା — ସାର୍ ଆପଣଙ୍କ ବ୍ୟାଗ୍ ରହିଗଲା ।

ଡି.ଇ.ଓ. — ଆପଣ ନେଇ ଆସନ୍ତୁ । ମୁଁ ଚାଲିଲି । ଆପେ ବଞ୍ଚିଥିଲେ ବୋପାର ନାଁ ।

ବି.ଇ.ଓ. — ଯଃ ପଳାୟତି ସ ଜୀବତି ।

ସୀତା — ହେ ପ୍ରଭୁ ! ଏ ଦେଶର ଗତି କୁଆଡ଼େ କେଜାଣି– (ଗଣ୍ଡଗୋଳ, ମାରପିଟ ଭିତରେ ଅନ୍ଧାର)

## ୫ମ ଦୃଶ୍ୟ

(ସୀତାର ଘର । ଟିଭି ଦେଖୁଛି ସୀତା)

ଟିଭି — ଏଇମାତ୍ର ମିଳିଥିବା ଖବରରୁ ଜଣାଯାଏ ଷଣ୍ଢପୁର ଗାଁର ୟୁ.ପି. ସ୍କୁଲରେ ୬ ମାସ ହେଲା ତାଲା ପଡ଼ିଛି । ମାଷ୍ଟରମାନେ ବି.ଡ଼ି.ଓ. ଅଫିସ୍‌ରେ ହାଜିରା ଦେଇ ଦରମା ନେଉଛନ୍ତି । ପିଲାମାନେ ବହିବସ୍ତାନି କାନ୍ଥରେ ଝୁଲେଇ, ନଇନାଳରେ ମାଛ ମାରୁଛନ୍ତି । ମେଣ୍ଢା ଚରାଉଛନ୍ତି ନହେଲେ ମାଙ୍କଡ଼ ଡିଆଁ ମାରୁଛନ୍ତି । ସ୍କୁଲ ଘରେ ତାଲା ଝୁଲୁଛି ।

ସୀତା ଏଇ ଆମ ଦେଶର ଶିକ୍ଷା ବ୍ୟବସ୍ଥାର ଅବସ୍ଥା ।

ଟିଭି ବିଶେଷ ସୂତ୍ରରୁ ଜଣାଯାଏ, ସ୍କୁଲର ଶିକ୍ଷାସହାୟୀକାଙ୍କୁ ନିଲମ୍ବନ କରିବା ପାଇଁ ଯୋଜନା ଚାଲିଛି । ସେଇ ଶିକ୍ଷା ସହାୟିକା ଯିଏ ଫଟୋ ପଠାଇ ସ୍କୁଲର ଗୁମର ପଦାକୁ ଆଣିଥିଲେ । ଏହାକୁ ଶିକ୍ଷାରେ ରାଜନୀତିର ପ୍ରଭାବ–ବୋଲି ନକହି ଆଉ କ'ଣ କହିବେ ?

ସୀତା ଭାବିଥିଲି ଶିକ୍ଷକ ହେବି । ହେଲି ମଧ୍ୟ । ହେଲେ ରାଜନୀତିର ପ୍ରଭାବ ଯଦି ଏଇଆ ଚାଲେ, ତା'ହେଲେ ମୋର ଏବେ କ'ଣ କରିବା ଉଚିତ ? ଏଇ ପ୍ରଶ୍ନ ଆପଣମାନଙ୍କ ଆଗରେ ଉପସ୍ଥାପନ କରିବାକୁ ବାଧ ହେଉଛି । କହିଲେ ନିଜକୁ ଲାଜ । ନକହିଲେ କୂଳ ଭାସି ଯାଉଛି । ଆପଣମାନେ ନିରବ ରହିବେ ନାହିଁ । ଉତ୍ତର ଦେବେ ନିଶ୍ଚୟ । ଆପଣଙ୍କର ଉତ୍ତର ଉପରେ ନିର୍ଭର କରୁଛି ମୋ ଭଳି ଯୁବକଯୁବତୀମାନଙ୍କର ଭାଗ୍ୟ । ଖାଲି ସେତିକି ନୁହେଁ । ଏ ଦେଶର ଶିକ୍ଷାବ୍ୟବସ୍ଥା, ଆଉ ତା'ର ସୁଦୂର ପ୍ରସାରୀ ପ୍ରଭାବ ମଧ୍ୟ ନିର୍ଭର କରେ ଆପଣଙ୍କର ପ୍ରତିକ୍ରିୟା ଉପରେ ।

ରହିଲି ।

ନମସ୍କାର ।

(ଅନ୍ଧାର)

♦ ♦ ♦

# ବ୍ରହ୍ମ-ବିଷାଦ, ବିସମ୍ବାଦ

## ଚରିତ୍ର

୧. ଗାଁ ମୁଖିଆ/ ରାଜଗୁରୁ-ସୌମେନ୍ଦ୍ର ପାତ୍ର

୨. ଚକୁଳିଆପଣ୍ଡା - ଉପେନ୍ଦ୍ର ପତି

୩. ପୂଜକ/ ଭୀଷ୍ମ/ ଶ୍ରୀବଳଭଦ୍ର - ବଟକୃଷ୍ଣ ସ୍ୱାଇଁ

୪. ମକରା/ ଶ୍ରୀକୃଷ୍ଣ-କେଦାର ନାଥ ଜେନା

୫. ବାବାଜୀ/ ବାଦ୍ୟକାର - ବୈକୁଣ୍ଠ ନାଥ ସ୍ୱାଇଁ

୬. ବଡ଼ପଣ୍ଡା- ପ୍ରଭାତ କୁମାର ପାତ୍ର

୭. ଗଜପତି - ଅସିତ କୁମାର ମହାନ୍ତି

୮. ଗ୍ରାମବାସୀ -୧, ପ୍ରହରୀ, ପଣ୍ଡା-୧/ ସାରଥି/ ସୁଦର୍ଶନ-ନିରଞ୍ଜନ ବେହେରା

୯. ଗ୍ରାମବାସୀ-୨, ପଣ୍ଡା-୨/ ସାରଥି - ନିରଞ୍ଜନ ରଣା

୧୦. ଗ୍ରାମବାସୀ -୩, ପଣ୍ଡା-୩/ ସେନାପତି/ ଅଶ୍ୱାରୋହୀ/ ଅର୍ଜୁନ-ପ୍ରଦୀପ ନାୟକ

୧୧. ଶ୍ରୀଜଗନ୍ନାଥ - ଦେବୀ ପ୍ରସାଦ

୧୨. ଗାଁ ନାରୀ/ ମହାରାଣୀ/ ଦେବଦାସୀ/ ସୁଭଦ୍ରା - ଲୀନା

ନିର୍ଦ୍ଦେଶନା - ନବୀନ କୁମାର ପରିଡ଼ା

ସହକାରୀ ନିର୍ଦ୍ଦେଶକ - ଧନେଶ୍ୱର ସାହୁ

କଣ୍ଠ ଓ ସଙ୍ଗୀତ - ମାରୁତି ପୁହାଣ, ସହକାରୀ-ଅଭିଳାଷ ଓ ପୁଅ

ମଞ୍ଚ - ଅସୀମ ବସୁ

ପୋଷାକ - ଜନତା ଚିତ୍ରାଳୟ, ଭୁବନେଶ୍ୱର

ଆଲୋକ/ ଶବ୍ଦ - ରବୀନ୍ଦ୍ର ମଣ୍ଡପ, ଓଡ଼ିଶା ସରକାର

ପ୍ରଯୋଜନା - ଓଡ଼ିଶା ସଚିବାଳୟ ମିଳିତ ସାଂସ୍କୃତିକ ପରିଷଦ,ଭୁବନେଶ୍ୱର

ତାରିଖ - ୨୬/୦୯/୨୦୧୫

ସମୟ - ସନ୍ଧ୍ୟା ୭ ଘଟିକା

ସ୍ଥାନ - ରବୀନ୍ଦ୍ର ମଣ୍ଡପ

# ବ୍ରହ୍ମ-ବିଷାଦ, ବିସମ୍ବାଦ

## ପ୍ରଥମ ଦୃଶ୍ୟ

(ଗାଁ ଭାଗବତ ଟୁଂଗୀ । ଭାଗବତ ପଢ଼ା ଚାଲିଛି)

ପୂଜକ — ନାରାୟଣଂ ନମଃକୃତ...

ଗାଁବାଲା — (ପ୍ରବେଶ କଲେ କୀର୍ତ୍ତନ ଦଳ, କୀର୍ତ୍ତନ ଚାଲିଲା)
ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେହରେ
ହରେ ରାମ ହରେ ରାମ ରାମ ରାମ ହରେ ହରେ ।

ଗାଁ ମୁଖିଆ — ଆନନ୍ଦେ ଏକବାର ହରି ହରି ବୋଲ...
(ପ୍ରବେଶ କଲେ ଚକୁଳିଆ ପଣ୍ଡା ଗୀତ ଗାଇ ଗାଇ)

ଚ:ପଣ୍ଡା — ଶୁଣହୋ ଭକତ ଶ୍ରୁତିରେ ପ୍ରଭୁ ଶ୍ରୀମୁଖ ବାଣୀ
କଳିରେ ଯେ ରୂପେ ଖେଳିବେ ପ୍ରଭୁ ସାରଙ୍ଗ ପାଣି ।
କୋଟି କୋଟି ଭକ୍ତ ଆସିବେ ପ୍ରଭୁ ଗୁଣକୁ ଗାଇ
କଟକ କଟିରେ ଧରମ ଦେବ ଥିବେ ଟି ରହି (୨)
ଯୋଗମାୟା ଖେଳ କରିବେ ଯୋଗୀ ହୋଇବେ ଭୋଳ
ଡାଙ୍କେଣି ଘେରିବ ଜଗତେ ଦୁଷ୍ଟ ହେବେ ପ୍ରବଳ(୩)

ପୂଜକ — ହଇହେ ପଣ୍ଡାଏ... କେଉଁଠୁ ଦି'ପଦ ଗାଇ ଦେଲହେ...ମନକୁ ପାଇଲା ।

ଚ : ପଣ୍ଡା — ପଞ୍ଚସଖା କବି ଶ୍ରୀ ଶ୍ରୀ ଅଚ୍ୟୁତାନନ୍ଦ ଦାସଙ୍କ ମାଳିକାରୁ ପଦେ ବଖାଣି ଦେଲି । ଦୋଷ ଧରିବ ନାହିଁ ପଣ୍ଡିତେ...କଳିକାଳ ଗତି ବଡ଼ ବିଷମ । ଉଭାକୁ ଯେତେ ପୋତାକୁ ତା'ର ସହସ୍ର ଗୁଣ ।

ମୁଖିଆ — ଆଜି ପରା ଆମ ଉତ୍କଳର ପ୍ରଭୁ, ଓଡ଼ିଆ ଜାତିର ପିତା...ଶ୍ରୀଶ୍ରୀଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ନବ କଳେବର ଉତ୍ସବ । ଦୀର୍ଘ ୧୯ ବର୍ଷ ପରେ ଆଜି ଘଟ ପରିବର୍ତ୍ତନ ହୋଇ ବ୍ରହ୍ମ ପରିବର୍ତ୍ତନ ହେବାକୁ ଯାଉଛି । ଆଜି ଏକ ଘଡ଼ିସନ୍ଧି ବେଳ । ଏପଟରେ ପୁରାତନ ବିଗ୍ରହଙ୍କର ବିଦାୟ ଜନିତ ଦୁଃଖ, ସେପଟେ ନବ ବିଗ୍ରହ ମାନଙ୍କର ଆଗମନ ଜନିତ ଆନନ୍ଦ । ଅତଏବ ଏହାକୁ ପାଳନ କରିବା ପାଇଁ ସାରା ଗ୍ରାମର ପ୍ରତ୍ୟେକ ଘରେ ଆଜି ଚୁଲି ଜଳିନି କି ଅନ୍ନ ବ୍ୟଞ୍ଜନ ପ୍ରସ୍ତୁତ ହୋଇନି ।

ପୂଜକ — ସମସ୍ତେ ଉପବାସ, ବ୍ରତ ଧାରଣ କରି ପ୍ରଦୀପ ଜାଳି ଭଜନ କୀର୍ତ୍ତନରେ ମାତିଛନ୍ତି ଏ ଭାଗବତ ଟୁଂଗୀରେ ।

ଚ:ପଣ୍ଡା — ସେ କଥା ସତ ଯେ...ହେଲେ ମାଳିକା ପରା ଲେଖିଲା...
'ଏ କଳି ଯୁଗ ଅଟଇ ବହୁତ ଭୀଷଣ — ଏ ଯୁଗରେ ଭକ୍ତ ବହୁ ଲଭିବେ କଷଣ(୧)
ଶ୍ରୀମୁଖ ବଚନ କେବେ ଆନଟି ନୁହଁଇ — ଅନନ୍ତ କୋଟି ବୈଷ୍ଣବ ସେବା ପାଦ ଦୁଇ (୨)
ଯାହାର ଏ ଆଜ୍ଞା ଅଟେ ଜଗତେ ବିଦିତ — ଯାହା ନାମ ଧରି ଭକ୍ତେ ଅଛନ୍ତି ଜଗତ (୩)'

| | |
|---|---|
| ମୁଖିଆ | ସତ କହିଲ ପଣ୍ଡାଏ...ଏଥିକୁ ଆମେ ବା କ'ଣ କରିବା ? କଳିଯୁଗକୁ ହରିନାମ ମନ୍ତ ଏକା ଭରସା ବୋଲି ତୁଳସୀ ଦାସ ମହାରାଜ, ଚୈତନ୍ୟ ମହାପ୍ରଭୁ କହିଯାଇଛନ୍ତି । ସେଇ ନାମ ହିଁ ତ' ଆମର ଭରସା । |
| ପୂଜକ | ଆନନ୍ଦେ ଏକବାର ହରିହରି ବୋଲ...ଯାହାର ଆଦି ଅନ୍ତ ନାହିଁ, ତା' ଲୀଳା କେମନ୍ତେ ବଖାଣୀ...କରି କରାଉ ଥାଏ ମୁହିଁ, ମୋ ବିନୁ ଅନ୍ୟ ଗତି ନାହିଁ । |
| ଚ:ପଣ୍ଡା | ହେଲେ ପଣ୍ଡିତେ, ମାଳିକା ପରା ଗାଇଲା...<br>ଅନେକ ଦୁଷ୍ଟ ଦଳ ଯେ ହୋଇବେ ପ୍ରବଳ   ପିତାପୁତ୍ର ନମାନିବେ ହୋଇ ମତ୍ତ ଭୋଳ (୧)<br>ଏ ଯୁଗର ଧର୍ମମାନ ଅତି ଅଲୌକିତ   କହିଲି ତୋ ଆଗେ ମୁହିଁ ଶୁଣ ହେ ଅଚ୍ୟୁତ(୨) |
| ମୁଖିଆ | ସେହି ଭକ୍ତ ବତ୍ସଳ ହରି, କେବଳ ଭକ୍ତ ମାନଙ୍କ ପାଇଁ ନବ କଳେବର ଧାରଣ କରିବାକୁ ଯାଉଛନ୍ତି । କୁହ ସମସ୍ତେ...ସମସ୍ତଙ୍କର ମନବାଞ୍ଛା ପୂର୍ଣ୍ଣ ହେଉ ଆନନ୍ଦେ ଏକବାର... |
| ସମସ୍ତେ | ହରିବୋଲ... |
| ପୂଜକ | ନାହିଁ ହେ' ଦାଶେ...ସେମିତି କୁହନି... । ବରଂ କୁହ ଇଚ୍ଛାମୟଙ୍କର ଇଚ୍ଛା ପୂର୍ଣ୍ଣ ହେଉ ଆନନ୍ଦେ ଏକବାର... |
| ସମସ୍ତେ | ହରିବୋଲ... |
| ମୁଖିଆ | ପୂଜକ ମହାଶୟ ! ଆପଣ ଏମିତି କାହିଁକି କହିଲେ ବୁଝି ହେଲା ନାହିଁ... |
| ପୂଜକ | ଆରେ ଆମେ ହେଲୁ ଗୃହସ୍ଥ ମଣିଷ । ଆମର ମନବାଞ୍ଛା ଅପରିସୀମ । କାହାର ଧନରେ ଇଚ୍ଛା ତ' କାହାର କ୍ଷମତା ଲାଳସା, କାହାର କାମିନୀ ଚିନ୍ତା ତ' ପୁଣି କାହାର କାଞ୍ଚନରେ ଦୁର୍ବଳତା...ଏମିତି ପ୍ରଭୁ ଯଦି ସମସ୍ତଙ୍କର ମନୋବାଞ୍ଛା ପୂର୍ଣ୍ଣ କରିବେ, ତା'ହେଲେ ଏ ସୃଷ୍ଟିତ ନିଶୁନ ହୋଇଯିବ ହେ ମୁଖିଆ ମହାଶୟ । |
| ଚ:ପଣ୍ଡା | "ସଂସାର ଭାବ ଯେ ବଡ଼ ବିଷମ ହୋଇବ   ଆଙ୍ଗୁଳି ଖାଇବ ବୋଲି ବାହୁକୁ ଗିଳିବ<br>କାମିନି କାଞ୍ଚନ ଆଦି ସବୁ ସୁଖ ଭୁଂଜି   ତଥାପି ଲୋଡ଼ିବେ ପ୍ରଭୁ ସୁଖ ଦିଅ ଗୁଂଜି(୨) |
| ମୁଖିଆ | ଠିକ୍ କଥା କହିଛନ୍ତି ପଣ୍ଡିତେ । ଏଥର ସମସ୍ତେ କୁହ : ପ୍ରଭୁଙ୍କର ଇଚ୍ଛାପୂର୍ଣ୍ଣ ହେଉ, ଆନନ୍ଦେ ଏକବାର ହରିହରି ବୋଲ... |
| ସମସ୍ତେ | ହରିବୋଲ... |
| ଚ:ପଣ୍ଡା | ଆଚାର ତେଜି ବ୍ରାହ୍ମଣ ହେବେ ଅନାଚାରୀ   ରାଜାଙ୍କ ସେବା କରିବେ ଦଣ୍ଡ ପାଟ ଧରି (୧)<br>ଶାସ୍ତ୍ରକୁ ନିନ୍ଦା କରିବେ କଳିଯୁଗ ଲୋକେ   କିଞ୍ଚିତ କଥାରେ କଳି କରିବେ ଅନେକ(୨)<br>ବ୍ରାହ୍ମଣ ଚଣ୍ଡାଳ ଦୁହେଁ ଏକତ୍ର ହୋଇବେ   ଗୁରୁଜନ ମାନଙ୍କର କଥା ନ ଶୁଣିବେ(୩)" |
| ମୁଖିଆ | ଏସବୁ କ'ଣ ମାଳିକାରୁ ଗାଉଛ ପଣ୍ଡାଏ ? ପୁରା ଖାଣ୍ଟି ସତକଥା ମାଳିକା ଲେଖିଛି । ଗାଅ ଗାଅ...ଦି'ପଦ ଶୁଣି ମନ ବୋଧ ହୋଇଯାଉଛି । |
| ଚ:ପଣ୍ଡା | ପରଧନ ଦ୍ରବ୍ୟ ହରି ମରିବେ ଯେ ପ୍ରାଣୀ   କୁବିଚାର କରି ନିଜେ ହେବେ ହଣାହଣି(୪)<br>ନିତ୍ୟାଚାର ତେଜିନର ହେବେ ନୀଚ ମନ   ସଂକ୍ରାନ୍ତି, ଅମାବାସ୍ୟାରେ ଆମିଷ ଭକ୍ଷଣ(୫)<br>ବାରବ୍ରତ ତେଜି ହେବେ ଅନାଚାରୀ ଭୋଗି  ପରନାରୀ ସଙ୍ଗ ହୋଇ ହେବେ ଜନ୍ମ ରୋଗୀ (୬) |

| | |
|---|---|
| ମକରା | : (ପ୍ରବେଶୀ) ଶୁଣ ଶୁଣ ଶୁଣ...ସମସ୍ତେ ଶୁଣ...ଏଇନେ ଟିଭିରେ କହୁଥିଲା ।...ଗଜପତି ମହାରାଜ ମନ୍ଦିରକୁ ବିଜେ ହେଲେଣି... |
| ମୁଖିଆ | ତାହାହେଲେ, ଯଜ୍ଞ ସରିଗଲାଣି...ଗଜପତି ମହାରାଜ ଏଣିକି ପୂର୍ଣ୍ଣାହୁତି ଦେବେ । ତା'ପରେ ବ୍ରହ୍ମ ପରିବର୍ତ୍ତନ ହେବ । |
| ପୂଜକ | ହେଲା ଯେ...କିନ୍ତୁ ଏତେ ବିଳମ୍ବ କ'ଣ ପାଇଁ ବୁଝି ହଉନି...ପୂର୍ଣ୍ଣାହୂତି କାର୍ଯ୍ୟ ତ' ରାତ୍ରିର ଦ୍ୱିତୀୟ ପ୍ରହର ପୂର୍ବରୁ ଶେଷ ହେବା କଥା । ରାତ୍ରିର ତୃତୀୟ ପ୍ରହର ଶେଷ ହେବାକୁ ବସିଲାଣି । ମନକୁ ତ' ପାପ ଛୁଉଁଛି ମୁଖିଆ । |
| ମୁଖିଆ | ପ୍ରଭୁଙ୍କ ନୀତି କାନ୍ତିରେ ଆଉ କିଛି ବିଘ୍ନ ଘଟିନିତ ? ନ'ହେଲେ ଏତେ ବିଳମ୍ବ କିଆଁ, ଏଇଆ ଭାବୁଛନ୍ତି ତ ପୂଜକ ମହାଶୟ ? |
| ପୂଜକ | ନୁହେଁ ତ ଆଉ କ'ଣ ? ରାତ୍ରି ପାହିବା ପୂର୍ବରୁ ଏ ସମସ୍ତ ନୀତିକାନ୍ତି ସରିପାରିବ ତ ? ମୋତେ କାହିଁକି ସନ୍ଦେହ ଲାଗୁଛି... |
| ମକରା | ହଁ ହଁ...ଟିଭିରେ ବି ସେମିତି କିଛି ସନ୍ଦେହ କରି କହୁଥିଲା । |
| ଚ:ପଣ୍ଡା | କିବା ବିଚିତ୍ର କଥା ଇଏ କହିଲ ଭଲା...ଇଏପରା କଳିକାଳ । ଠାକୁରଙ୍କର ନୀତିକାନ୍ତିରେ ବିଳମ୍ବ ଘଟିବା ପରା ଏବେ ନିତିଦିନିଆ ଘଟଣା ହୋଇଗଲାଣି । କାହାର ସେ କଥାକୁ ଖାତିରି ଅଛି । ଠାକୁରେ ଖାଇଲେ କେତେ ଓପାସ ରହିଲେ କେତେ ? ନିଜର ଅନ୍ନ ବ୍ୟଞ୍ଜନ ତ ସୁରକ୍ଷିତ ଅଛିନା... |
| ପୂଜକ | କେଜାଣି ପ୍ରଭୁଙ୍କର ନୀତି, କାଳ ତ ବୋହି ଚାଲିଛନ୍ତି । ସାକ୍ଷାତ୍ ମାୟାଧର ସିଏ । ଆମ୍ଭେ କି ତାଙ୍କ ମାୟା ହେଜି ପାରିବା ? |
| ମୁଖିଆ | ଠିକ୍ କହିଛନ୍ତି ପଣ୍ଡିତ ମହାଶୟ । ଲୀଳାମୟଙ୍କର ଲୀଳା ବୁଝିବାକୁ ଆମର ଜ୍ଞାନ ଅଛି ନା ବୁଦ୍ଧି ଅଛି ? |
| ଚ:ପଣ୍ଡା | ଆମେ ପରା ଅଜ୍ଞାନୀ ମଣିଷ...ନୀତି ଅନୀତି ଆମ୍ଭେ କାହିଁ ଜାଣିବୁ ? ମାଳିକା ପରା ଗାଇଲା...<br>''ଅତି ଅନୀତି ଯେ ହେବ ପ୍ରବଳ, ପୂଜା ନ କରିବେ ଦେବତା ଆଳ(୧)<br>ଗୁରୁଙ୍କୁ ଶିଷ୍ୟ ଯେ ମାନିବେ ନାହିଁ, ଗୁରୁଙ୍କୁ ଦେଖିଲେ ଲୁଚିବେ ଯାଇ(୨)<br>ପ୍ରାଣୀ ଯେ ଏମନ୍ତେ ହୋଇବେ ହୀନ, ଯେତେ ଅର୍ଜିଲେ ନ ଅଣ୍ଟିବ ଅନ୍ନ(୩) |
| ମକରା | ମାଳିକା କ'ଣ ମିଛକୁ ଗାଇଲା ପଣ୍ଡିତେ ? ଏଇ ଦେଖୁନା, ଆଜି ଆମେ ସଭିଏଁ ଏକାଠି ହୋଇ ଭଜନ କୀର୍ତ୍ତନ କରୁଛେ...କାଲି ରାତି ପାହିଲେ କିଏ କାହାର ଗୋହି ଖୋଳାଖୋଳି ନ'କରି ଛାଡ଼ିବା କି ଆଉ ? |
| ପୂଜକ | ଅଙ୍ଗାର ଶତ ଧୌତେନ ମଳିନତ୍ୱ ନ ମୁଞ୍ଚତି...ମୋତେ ଯେତେ ମାଠିବୁ ମାଠ ମୁଁ ସେଇ ଦରପୋଡ଼ା କାଠ । |
| ମୁଖିଆ | ହଁ, ଘୁଷୁରୀ ପ୍ରକୃତି ପଙ୍କରେ ଲୋଟେ...ମଣିଷ ପ୍ରକୃତି ମରିଲେ ତୁଟେ । |
| ଚ:ପଣ୍ଡା | ପ୍ରକୃତି କଥା କାହିଁକି ପଡ଼ିଛି, ମାଳିକା ପରା ଗାଇଲା ।<br>''ପତିପତ୍ନୀରେ ହୋଇବ କନ୍ଦଳ ଚତୁର୍ଦ୍ଦିଗେ ଘୋଟିଯିବ କାଳ<br>କନିଆ ବିକିରି ହୋଇବ ସବୁରି ତହିଁର ବିଚାର ନୋହିବ କାହାରି<br>ଦୟା ନଥିବ ଯେ କୁଟିଳ ଲୋକେ ବ୍ରହ୍ମଜ୍ଞାନରେ ମାତିଥିବେ ଥୋକେ |

ବ୍ରହ୍ମ ନଚିହ୍ନି ହେଉଥିବେ ବଣା ।ଖି ଥାଇବି ପୁଣି ହୋଇବେ କଣା

ମକରା ଆଚ୍ଛା ପଣ୍ଡିତେ...ଏଇ ବ୍ରହ୍ମ ପରିବର୍ତ୍ତନଟା କ'ଣ, ମୋତେ ବିଲକୁଲ ହେଜ ହେଉନି...

ମୁଖିଆ କାହିଁକି ବୁଝି ପାରୁନୁ ଶୁଣେ ?

ମକରା ଦେଖନ୍ତୁ, ମୋର ମୂର୍ଖ ବୁଦ୍ଧିରେ ଆମେ କ'ଣ ଆମ ବ୍ରହ୍ମକୁ ଦେଖି ପାରୁଛୁ ?

ପୂଜକ ନା...

ମକରା ତା'ହେଲେ ତାକୁ ବଦଳ କରିବୁ କେମିତି ?

ଚ:ପଣ୍ଡା ସେଇଟା ତୋ ବ୍ରହ୍ମ ନୁହଁରେ ମୂର୍ଖ...ମହାପ୍ରଭୁଙ୍କ ବ୍ରହ୍ମ ପରିବର୍ତ୍ତନ କଥା ପଡ଼ିଛି । ପୂର୍ଣ୍ଣମଦଃ...ପୂର୍ଣ୍ଣମିଦଂ...ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ, ପୂର୍ଣ୍ଣଷ୍ୟ ପୂର୍ଣ୍ଣମାଦାୟ...ପୂର୍ଣ୍ଣମେବା ବସିଷ୍ୟତେ । ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ । ହରି ଓଁ ତତ୍ ସତ୍ ।

ମକରା ତାଙ୍କ ବ୍ରହ୍ମ କ'ଣ ଗୋଟିଏ ଭିନ୍ନ ପଦାର୍ଥ ? ଯଦି ଭିନ୍ନ ପଦାର୍ଥ, ତା'ହେଲେ ତାଙ୍କର ରୂପ ତ' ଥିବ, ଆକାର ଥିବ ଅଥଚ ସେଦିନ ଭାଗବତରେ ପଣ୍ଡିତେ ଗାଉଥିଲେ । ଏଇନେ ପୁଣି ଚକୁଳିଆ ପଣ୍ଡା ମହାଶୟ ଆପଣତ କହିଲେଣି...ବ୍ରହ୍ମର ରୂପ ନାହିଁ, ଆକାର ନାହିଁ । ଏଇଟା ବଡ଼ ଗଣ୍ଡଗୋଳିଆ କଥା...ମୋ ମୁଣ୍ଡରେ କିଛି ପଶୁନି । ଆପଣମାନେ ଟିକିଏ ବୁଝେଇ ଦେଲେ...

ଗ୍ରାମବାସୀ ୧ : ଏତିକି କଥା ଜାଣିନୁ ? ଖବରକାଗଜରେ ପରା ବାହାରିଥିଲା...କେହିକେହି କହୁଛନ୍ତି ବ୍ରହ୍ମ ହେଉଛନ୍ତି ରଘୁନାଥ ଶିଳା...

ଗ୍ରାମବାସୀ ୨ ନା ନା... ସିଏ ସୁବର୍ଣ୍ଣ ପ୍ରତିମା...

ଗ୍ରାମବାସୀ ୩ ନା ନା...ସେଇଟା ଗୋଟିଏ ଯନ୍ତ୍ର...

ମକରା ଦେଖିଲେ ତ' ? ନାନା ମୁନି ନାନା ମତ...ଏଥର କୁହନ୍ତୁ ପଣ୍ଡିତେ...ଆପଣ କ'ଣ କହିବେ ?

ଚ:ପଣ୍ଡା ଆରେ ତାକୁ ଦେଖିବାକୁ ଚାହୁଁଛ ଯଦି, ଅଚ୍ୟୁତ ଦାସ ତାଙ୍କ ''ଜାଇଫୁଲ ମାଳିକା''ରେ ଲେଖିଛନ୍ତି...ଗୋଇଲି, ଶୁଣ...

''ବେଳୁ ସାବଧାନ ହୁଅ ଏକାକ୍ଷର ଜପି ଦିନ କଟାଅ, ଜାଇଫୁଲଲୋ

ତୁହି ଗୀତା ଭାଗବତ ଗାଅଲୋ (୧)

କୁଳ କୁଣ୍ଡଳିନୀ ଜାଗୃତ କରି, ଜାଇ ଫୁଲଲୋ ତେବେ ଦେଖିବୁ ତୁହି ଶ୍ରୀହରି (୨)

ପୂଜାରୀ ଅଖଣ୍ଡ ମଣ୍ଡଳାକାରଂ, ବ୍ୟାପ୍ତ ଯେନ ଚରାଚରଂ...

ମୁଖିଆ ସେ' ତ ନିଜେ ଚରାଚର ବ୍ୟାପ୍ତ ହୋଇଛନ୍ତି...ତାଙ୍କର ବ୍ରହ୍ମ ପୁଣି କ'ଣ ?

ମକରା ବାସ୍...ମୋର ଗଣ୍ଡିତ ସେଇଠି ?

ଚ:ପଣ୍ଡା ନରାକାର ପରଂବ୍ରହ୍ମ, ରୂପାୟ ଅଜ୍ଞାନ ହାରିଣେ

ଆତ୍ମଜ୍ଞାନ ପ୍ରଦାନେନ ତସ୍ମୈଶ୍ରୀ ଗୁରବେ ନମଃ ।

ସେଇ ନିରାକାର ପରଂବ୍ରହ୍ମ ପୁଣି ସାକାର ହୋଇ ଶ୍ରୀଗୁରୁ ରୂପରେ, ସଦ୍‌ଗୁରୁ ରୂପରେ, ଧରାପୃଷ୍ଠରେ ଅବତୀର୍ଣ୍ଣ ହୁଅନ୍ତି ।

ମକରା : ସେଇଆ...ଯିଏ ସାକାର ହେଲେ, ସେ ଆଉ ନିରାକାର ରହିବେ କେମିତି ? ଶ୍ରୀଜଗନ୍ନାଥତ ସାକାର ହେଲେ । ହେଲେ ନା ନାହିଁ ? ତାଙ୍କର ପୁଣି ବ୍ରହ୍ମ କ'ଣ ? ଯଦି ବ୍ରହ୍ମ ହେଲା...ତାହା ପୁଣି ଆକାର କେମିତି ଧାରଣ କଲା ? ମୋତେ ବୁଝେଇ କହନ୍ତୁ ବାସ୍...

ମୁଖିଆ — ବୁଝିଲୁ ମକରା, ''ନ ଦେଖିଲା ଓଉ ଛଅ ଫଡ଼ା'' ଭଳିଆ ଇଏ ସେମିତି ଗୋଟିଏ କଥା...

ଗ୍ରାମବାସୀ ୧ : କାହିଁକି ? ଦଇତାମାନେ ପରା ବ୍ରହ୍ମ ପରିବର୍ତ୍ତନ କରୁଛନ୍ତି ? ସେମାନେ ଦେଖି ନଥିବେ କି ?

ପୂଜକ — ଦେଖିବେ କେମିତି ? ସେଇଟା ଅତ୍ୟନ୍ତ ଗୁପ୍ତ ନୀତି । ମୁଁ ଯାହା ଶୁଣିଛି ଦଇତାମାନେ ଆଖିରେ ପଟିବାନ୍ଧି, ଦୁଇ ହାତରେ ପାଟ ପତନି ଗୁଡ଼େଇ ହୋଇ, ମଧ୍ୟ ରାତ୍ରିର ଅନ୍ଧକାର ଭିତରେ ଅତି ସନ୍ତର୍ପଣରେ ଏ କାର୍ଯ୍ୟ କରିଥାଆନ୍ତି । ସେମାନେ ଦେଖିବାକୁ ଚାହିଁଲେ ଦେଖି ପାରନ୍ତେ । ମାତ୍ର ଦେଖନ୍ତି ନାହିଁ ।

ଗ୍ରାମବାସୀ ୨ : ସତକଥା...କେହି ଜଣେ ବି ଦେଖିଥିଲେ କଥାଟା ଏଯାକେ କ'ଣ ଛପି ରହିଥାନ୍ତା କି...? ନିଶ୍ଚୟ ପ୍ରଘଟ ହୁଅନ୍ତା ନା ନାହିଁ ?

ଗ୍ରାମବାସୀ ୩ : ଆମେ ପରା ଗୋଟିଏ କଥାକୁ ଦିନେ ଦି'ଦିନ ପେଟରେ ରଖି ପାରୁନୁ ? ଯା' ତା' ଆଗରେ ଓଗାଳି ପକାଉଛୁ...ନା କ'ଣ ପଣ୍ଡିତ ମହାଶୟ ?

ମକରା — ଆଚ୍ଛା । ପଣ୍ଡିତ ମହାଶୟ...ଗୋଟିଏ ଟିଭି ଆଣି ଏ ଭାଗବତ ଟୁଂଗୀରେ ଲଗେଇ ଦେଲେ ତ' କଥା ସରନ୍ତା । ଏଠି ବସି ସବୁ ଦେଖନ୍ତେ ।

ପୂଜକ — କ'ଣ ? ବ୍ରହ୍ମ ପରିବର୍ତ୍ତନ ଦେଖିବୁ ? ଶୁଣ ମକରା...ଟିଭି ଦେଖିବା କଥା ଯଦି ଘରେ ଯାଇକରି ଆରାମରେ ଦେଖ, ଏଇଟା ଭାଗବତଙ୍କ ଆସ୍ଥାନ...ଭଗବତ୍ ଚିନ୍ତା, ଭାଗବତ ପଠନ, ମନନ ଆଉ କୀର୍ତ୍ତନର ଜାଗା । ଏଠି ଟିଭି ଦର୍ଶନ ଚଳିବ ନାହିଁ ।

ମକରା — କାହିଁକି ?

ଚ:ପଣ୍ଡା — ସେଇଟା ମନୋରଞ୍ଜନର ପଦାର୍ଥ...ଯେଉଁଠି ମନୋରଞ୍ଜନ ହେବ ସେଠି ହରି ଭଜନ ହେଇପାରିବନାହିଁ, ଆଉ ଯେଉଁଠି ହରି ଭଜନ ହେବ ସେଠି ମନୋରଞ୍ଜନ ହୋଇପାରିବ ନାହିଁ । ତୋର ବ୍ରହ୍ମ ଦର୍ଶନରେ ଯଦି ଏତେ ମନ ତା'ହେଲେ ଆଗ ସ୍ୱବ୍ରହ୍ମ ଦର୍ଶନ କର । ଆଗ ନିଜ ହୃଦୟର ଆତ୍ମ ଦର୍ଶନ କର । ଆତ୍ମ-ସାକ୍ଷାତ୍କାର କର । ତା'ପରେ ଶ୍ରୀଜଗନ୍ନାଥଙ୍କ ବ୍ରହ୍ମ ଦର୍ଶନ କଥା ଚିନ୍ତା କରିବୁ ।

ମକରା — ନା'...ସେ କଥା ନୁହେଁ ଯେ ଗୋସେଇଁ...କଥାଟା ହେଲା...ଶ୍ରୀ ବିଗ୍ରହ ମାନଙ୍କର ନାଭିରେ ଅଛି କ'ଣ ?

ପୂଜାରୀ — ଯାହା ବି ଅଛି ତାହା ପ୍ରତୀକାତ୍ମକ ଭାବେ ରଖାଯାଇଛି । ଏଇ ଧର...ଆମ ଗ୍ରାମର ମଦନ ମୋହନ ଠାକୁରଙ୍କ ଏଡ଼େବଡ଼ ପଥର ମୂର୍ତ୍ତିକୁ ଆମେ ଯେମିତି ରାସ କେଳି ସମୟରେ ସାଙ୍ଗରେ ନେଇ ନ ପାରି ତାଙ୍କର ପ୍ରତୀକ ଭାବେ ରଘୁନାଥ ଶିଳାକୁ ଚାପରେ ରଖି ରାସୋତ୍ସବ ଆଉ ନାବକେଳି କରୁଛୁ । ସେମିତି ବ୍ରହ୍ମର ପ୍ରତୀକ ଭାବରେ ସେଠି କୌଣସି ମୂର୍ତ୍ତି ବା ଶିଳାର ସ୍ଥାପନ କରାଯାଇଥାଇପାରେ ।

ମକରା — ଆଚ୍ଛା ଧରନ୍ତୁ... କୌଣସି ଅନୀତି ବା ଅନାଚାର ହୋଇ ଆଜି ରାତ୍ରିରେ ବ୍ରହ୍ମ ସ୍ଥାପନ ହୋଇପାରିଲା ନାହିଁ, ତା'ହେଲେ କ'ଣ ହେବ ?

ପୂଜାରୀ — ମୁଁ କେମିତି କହିବି ? ତେବେ ସେମିତି କିଛି ଅଘଟଣ ନ ଘଟୁ ତାହା ହିଁ ପ୍ରାର୍ଥନା କରିବି ।

ଚ:ପଣ୍ଡା — କ'ଣ ଆଉ ହବ ? ମାଳିକା ଗାଇଲା...

'ଅକାଳରେ ଯେଣୁ ସର୍ବ କାର୍ଯ୍ୟଟି ହୋଇବ   ସମୁଦ୍ର ବୁଧାକୁ ଯେ ଅକାଳ ଗ୍ରାସିବ (୧)

ବରଷ ବରଷ ହେବ ଧୋଇ ଓ ମରୁଡ଼ି          କୂଳ ଲଂଘି ସାଗର ଯେ ଆସିବଟି ମାଡ଼ି (୨)''

ମକରା — ପଣ୍ଡା ମହାଶୟ, କହିଲ ଯେ ମାଳିକା ଲେଖିଛି, ହେଲେ ଏ କଥା କ'ଣ ସତ ହେବ ? ମୋତେ କାହିଁକି ବିଶ୍ୱାସ ହେଉନି...

ମୁଖିଆ — ବିଶ୍ୱାସ ନ ହେଉଛି ଯଦି ବିଶ୍ୱାସ କରିବା ଆବଶ୍ୟକ ନାହିଁ ।

ଚ:ପଣ୍ଡା — ବିଶ୍ୱାସ ହବ ନାହିଁ ମାନେ ? ମାଳିକା ଆହୁରି କହିଛି...

'ଛନକା ପୁରାଇ ବଡ଼ ପଣ୍ଡା ହେବ ନାଶ          ଛାର ଅଚ୍ୟୁତି ଦାସ ଯେ ହୋଇବ ପ୍ରକାଶ (୧)
ନୂଆ ନ ହେବ ଯେ ଆଉ ପୁରୁଣା ନ ଥିବ          ନିଶ୍ଚୟ କଲ୍‌କୀ ରୂପ ପ୍ରକାଶ ପାଇବ (୨)
ଦାରୁବ୍ରହ୍ମ ନୀଳଗିରି ଛାଡ଼ି କରି ଯିବ          ଦିବସେ ଉଇଁବ ତାରା ମୋ ବଚନ ଧ୍ରୁବ (୩)
ନାମ ବ୍ରହ୍ମ ଆଶ୍ରାକର ଲୀଳାକୁ ଦେଖିବୁ          ନିଶ୍ଚେ ଅଚ୍ୟୁତ ଦାସର କଥା ଭାବୁ ଥିବୁ (୪)

ସମସ୍ତେ — ହରିବୋଲ...ସତକଥା...ନିଶ୍ଚେ ହୋଇପାରେ ।

ପୂଜାରୀ — ଏତେ କଥାକୁ ମୁଣ୍ଡରେ ପୁରାଇ କାହିଁକି ବାଇଆ ବାତେରାଙ୍କ ଭଳିଆ ହେଉଛ କହିଲ ? ପ୍ରଭୁଙ୍କ କଥା ତାଙ୍କ ଉପରେ ଛାଡ଼ିଦେଇ ଆମେ କ'ଣ କରିପାରିବା ସେଇଆ କର । ବସି ବସି ପ୍ରଭୁ ନାମ ଗାଇଗାଇ, କୀର୍ତ୍ତନ କରି, ନମ ବ୍ରହ୍ମ ଯଜ୍ଞ ଜପ କରି ଚାଲିଥିବା...ଆଉ କିଛି କଥା ଆମର ଭାବିବାର ଆବଶ୍ୟକତା ନାହିଁ ?

ମୁଖିଆ — ବୁଝିଲେ ପଣ୍ଡିତେ...ଏଇଟା ଗଣତନ୍ତ୍ରର ଯୁଗ...ଆଉ ରାଜତନ୍ତ୍ର ନାହିଁ ଯେ, ଗଜପତି ମହାରାଜ ଆଦେଶ ଦେବେ ଆଉ ଦଇତାପତିଏ ତାକୁ ଏଡ଼ାଇ ଦେବେ କି ଅସମ୍ମାନ କରିବେ । ଏବେ ପରା ସମସ୍ତଙ୍କ କାନରେ କଲମ । ସେଇଥିପାଇଁ କେହି କାହାରି କଥା ଶୁଣିବାକୁ ରାଜି ନୁହଁନ୍ତି । ଯାହାର ସଂଖ୍ୟା ଅଧିକ ତାହାର ମନକୁ ଯାହା ଆସିଲା ସେ କଲା । ଏଣୁ ଆମକୁ ମଧ୍ୟ ଏ ଅନ୍ୟାୟର ପ୍ରତିବାଦ କରିବା ଉଚିତ ।

ମକରା — ଟିଭିରେ ଯୋଉ ହୋ ହଲ୍ଲା ହେଉଛି ସେଥିରୁ କ'ଣ କେହି କିଛି ଶିଖି ପାରୁ ନାହାନ୍ତି ? ସେଇଥିରୁ ଦେଖି ନିଜେ ନିଜେ ଚେତିଯିବା କଥା ସିନା, ହେଲେ ହଉଛି କ'ଣ ? ଦିନକୁ ଦିନ ସବୁ ଅସମ୍ଭାଳ ହେଲାଣି ?

ଗ୍ରାମବାସୀ ୧ : ନବକଳେବରରେ ଯେତେସବୁ ବିବାଦ ଉଠିଲାଣି...

ଗ୍ରାମବାସୀ ୨ : ଦାରୁ ଚିହ୍ନଟଠାରୁ ଆରମ୍ଭ କରି, ବନଯାଗ, ଦାରୁ ଶଗଡ଼ି, ଦାରୁଦିଅଁ ନିର୍ମାଣ...ସବୁଠି ବିବାଦ । କ'ଣ ହେଉଛି କିଛି ବୁଝି ହଉନି ।

ଗ୍ରାମବାସୀ ୩ : ଅତି ଉଗ୍ର ଅବସ୍ଥା ହେଲାଣି । ସାଧାରଣରେ ଗଣ୍ଡଗୋଳ ହେଲାଭଳିଆ ସେବାୟତ ମାନେ ଅତି ଉଗ୍ର ଅବସ୍ଥା ହେଲେଣି...ଏତେ ଉଚ୍ଛୃଙ୍ଖଳା ଠାକୁରେ ସହିଛନ୍ତି କେମିତି କେଜାଣି ?

ଚ:ପଣ୍ଡା — ''ଏ ତ କଳିକାଳ ରୀତି ବିପରୀତ ଭାଇରେ...ବୀରବର ଠେଙ୍ଗାଧର (୨ଥର)
ଆଉ ବାଟ ନାହିଁ, ନାହିଁରେ... ।'' ''ଶୁଣ ଆରେ ବାଇମନ...
କଳିଯୁଗ ଭବିଷ୍ୟତ ପୁରାଣ ଲୋ ଜାଇଫୁଲ,          କହୁଅଛି ହୁଅ ସାବଧାନ (୧)
ବେଲୁଁ ଆଶ୍ରାକର ନାମ          ହୃଦେ ଭଜ ସେହି ଛନ୍ଦାଚରଣ ଲୋ ଜାଇଫୁଲ,
ଯେବେ ଦେଖିବୁ ପଦ୍ମ ନୟନ (୨)

| | |
|---|---|
| ପୂଜାରୀ | ଗର୍ବ ଗଂଜନ ନରହରି ଗର୍ବ ନରଖନ୍ତି କାହାରି । ଆରେ...ତୁମ୍ଭେମାନେ ଏମିତି ଅଧୈର୍ଯ୍ୟ ହେଉଛ କାହିଁକି ? ଯାହାର କର୍ମ ସିଏ କରିବେ ନାହିଁ ? |
| ମୁଖିଆ | ନାଇଁ ନାଇଁ ପଣ୍ଡିତେ ! ସାଗର କୂଳ ଡେଇଁଲେ ସରକାର ପଥର ବନ୍ଧ କରୁଛନ୍ତି ନା ନାହିଁ ? ଆଉ ଏମାନେ ହଜାର ହଜାର ବର୍ଷର ପରମ୍ପରା ଡେଇଁଲେ ଆମକୁ ବି ବାଡ଼ ପକେଇବାକୁ ପଡ଼ିବ ନା ନାଇଁ ? |
| ମକରା | ଖବର କାଗଜରେ ପଢୁଛନ୍ତି ଗୋସେଇଁ... ! ନିତି-ପ୍ରତିଦିନ ଶ୍ରୀମନ୍ଦିରରେ ଅଘଟଣ ଲାଗି ରହୁଚି । କେଉଁ ଦିନ ଭକ୍ତକୁ ବାଡ଼େଇ ଟଙ୍କା ପଇସା ଛଡ଼େଇ ନେଲେଣି ତ' ପୁଣି କେତେବେଳେ ମା' ଭଉଣୀ କରି ଶୋଧିଲେଣି...ପୁଣି କେଉଁଦିନ ନିଜ ନିଜ ଭିତରେ ପାଉଣା ପାଟଣାକୁ ନେଇ ମୁଥ ମରାମରି ହୋଇ ଶ୍ରୀମନ୍ଦିର ଭିତରେ ଲହୁ ଲୁହାଣ ହେଲେଣି । ସବୁ କ'ଣ ପ୍ରଭୁଙ୍କ ଇଛାରେ ହେଉଛି ବୋଲି କହି ଛାଡ଼ି ଦେବା ? |
| ଗ୍ରାମବାସୀ ୧ | ସବୁ ସେଇ ସେବକମାନଙ୍କ ଇଛାରେ ହେଉଛି...ସେଠି ନାନା ପ୍ରକାର ଗୋଷ୍ଠୀ, ଦଳ, ହୋଇ ନିଜ ନିଜ ଇଛାରେ ନିୟମ ତିଆରି କରି ପଲିଟିକ୍ସ୍ କରୁଛନ୍ତି । |
| ଗ୍ରାମବାସୀ ୨ | ନ କରିବେ କାହିଁକି ? ଆମ ନେତା, ମନ୍ତ୍ରୀଙ୍କଠାରୁ ଆରମ୍ଭ କରି ପୋଲିସ୍, ହାକିମ ପର୍ଯ୍ୟନ୍ତ ସମସ୍ତେ ତାଙ୍କ ଗୋଡ଼ ତଳେ ଲମ୍ବ ହୋଇ ଗଡ଼ିଯାଉଛନ୍ତି । ତେଣୁ ପ୍ରଭୁଙ୍କୁ ସାଆନ୍ତେ ଡାକିବେ କ'ଣ ନିଜେ ପରା ସାଆନ୍ତ ବୋଲାଇ ହେଉଛନ୍ତି । |
| ଚ:ପଣ୍ଡା | ରଥ କହେ ମୁଁ ଦେବତା, ପଥ କହେ ମୁଁ ଦେବତା...ରଥପଥ କେହି ନାହିଁ, ସବୁ ସେ ଜଗତ ସାଇଁ...ବଡ଼ ମଜା ଏ ଦୁନିଆଁ ଭାଇ, ମଜା ଏ ଦୁନିଆଁ । |
| ପୂଜାରୀ | ହଉ ହେଲା ହେଲା...ସେମାନଙ୍କ କର୍ମ ସେମାନେ କରନ୍ତୁ, ତୁମେ ତୁମର ଆପଣା କର୍ମ କରିଚାଲ । |
| ଗ୍ରାମବାସୀ ୩ | ତା'ହେଲେ ଆମେ କ'ଣ ପ୍ରତିବାଦ କରିବା ନାହିଁ ? |
| ପୂଜାରୀ | ସେ କଥା ମୁଁ କହି ପାରିବି ନାହିଁ । ତେବେ ମୋ ମତରେ ତୁମେ ଯେତିକି ପ୍ରତିବାଦ କରି ସାରିଲଣି ସେ କଥା ନୀଳକନ୍ଦରରେ ଶ୍ରୀଛାମୁଙ୍କ ନିକଟରେ ଯଥେଷ୍ଟ ଜଣାଣ ସରିଲାଣି । |
| ମୁଖିଆ | ଶ୍ରୀଛାମୁରେ ଜଣାଇଲା କିଏ ? |
| ପୂଜାରୀ | ସେ ପରା ଭାବବିନୋଦିଆ ଠାକୁର...ଭକ୍ତର ଭାବକୁ ସେ ବେଶ୍ ଶୁଣିପାରନ୍ତି । ସେଇଥିପାଇଁ ଦାସିଆର ନଡ଼ିଆ ନେଇଗଲେ, ରଘୁ ଅରକ୍ଷିତ ହାତରୁ ପୋଡ଼ ପିଠା ଖାଇଲେ, ସାଲବେଗ ପାଇଁ ଆପଣା ରଥକୁ ଅଚଳ କରିଦେଲେ । ଭକ୍ତ ସହ ଭାବ ଲଗେଇ ଏମିତି କେତେ କେତେ ଲୀଳା ସେ କରିଛନ୍ତି ସେ କଥା ତ' ତୁମେ ଶୁଣିଛ । ସେମିତି ଆଜି ତୁମ୍ଭଙ୍କୁ ପ୍ରଭୁଙ୍କର ଅନ୍ୟ ଏକ ଲୀଳା କହୁଛି ଶୁଣ...(କହିଛନ୍ତି) |
| ଚ:ପଣ୍ଡା | ସମସ୍ତେ କୁହ ଜୟ ଜଗନ୍ନାଥଙ୍କର ଜୟ... । |
| ଗ୍ରାମବାସୀ | ଜୟ । |
| ପୂଜାରୀ | ବେଶ୍ କିଛି ଦିନ ତଳର କଥା...ପଞ୍ଜାବରୁ ଜଣେ ଦଣ୍ଡବତୀ ସାଧୁ, ଯାହାକୁ ଆମେ ଦଣ୍ଡ ପ୍ରଣାମି ସାଧୁ ବୋଲି କହୁ । ଖାଲି ପାଦରେ, ଏକବସ୍ତ୍ର ହୋଇ ଭଜନ ଜଣାଣ ଗାଇ, ରାଜ ରାସ୍ତାରେ ଶୋଇ ପୁରୀ ଚାଲିଥାନ୍ତି ଜଗନ୍ନାଥଙ୍କ ଦର୍ଶନ କରିବାକୁ । |
| ଚ:ପଣ୍ଡା | ପଞ୍ଜାବରୁ ପୁରୀ ? ତାଙ୍କୁ କେତେ ସମୟତ ଲାଗିଥିବ ? |

ପୂଜାରୀ ସାତ ବର୍ଷ ଲାଗିଥିଲା... ।

ମକରା ଆରେ ବାପ୍‌ରେ...କୁହନ୍ତୁ କୁହନ୍ତୁ ପଣ୍ଡିତେ...ସେଇ କଥା କୁହନ୍ତୁ । ଟିକିଏ ଶୁଣିବା ।

(ଦୃଶ୍ୟାନ୍ତର)

(ଦେଖାଗଲା ଦଣ୍ଡ ପ୍ରଣାମୀ ସାଧୁଙ୍କ ପ୍ରବେଶ, ପିଠିରେ ଗୋଟିଏ ପୁଟୁଳି ଓ ପୁଟୁଳି ଭିତରେ ଏକ ତାରା । ସେଇ ଗ୍ରାମବାସୀ ଭିନ୍ନଭିନ୍ନ ବେଶରେ ପ୍ରବେଶ)

ଗ୍ରାମବାସୀ ୧ ମହାରାଜ, ଏତେ କଷ୍ଟ କରି ଧାଇଁଛନ୍ତି କୁଆଡ଼େ ? କ'ଣ କିଛି ମାନସିକ କରିଛନ୍ତି ?

ବାବାଜୀ ମୋର ପରିବାର ନା ଆତ୍ମୀୟ...କିଏ ଅଛି ଯେ, କାହା ପାଇଁ ମାନସିକ କରିବି ବାବା ? ମୋର ଏକମାତ୍ର ଲକ୍ଷ୍ୟ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପାଦରେ ବିଲୟ ହେବା ।

ଗ୍ରାମବାସୀ ୨ ହେଲେ ମହାରାଜ ! ଆପଣଙ୍କ ଗମନର ଉଦ୍ଦେଶ୍ୟ ?

ବାବାଜୀ କେବଳ ପ୍ରଭୁଙ୍କର ଚତୁର୍ଦ୍ଧା ମୁରତି ଦର୍ଶନ କରି, ମହୋଦଧିରେ ସ୍ନାନ କରି, ଜୀବନ ଧନ୍ୟ କରିବି । (ଗୀତ ଗାଇ ଚାଲିଲେ)

ଚାଲ ସଖୀ ଆମେ ଦର୍ଶନ କରିବା ନୀଳଗିରି କାଳିଆକୁ...

ସମସ୍ତେ ଜୟ ଜଗନ୍ନାଥ...

ଗ୍ରାମବାସୀ ୩ ବାବାଜୀ ମହାରାଜ, ଆପଣଙ୍କ ପରିଚୟ ଆଉ ଆପଣଙ୍କ ନିବାସ ?

ବାବାଜୀ ସୁଦୂର ପଞ୍ଜାବରୁ ଆସିଛି । ଆଜନ୍ମ ବ୍ରହ୍ମଚାରୀ...ମୋର ଆଶ୍ରମ ନାହିଁ କି ସ୍ଥାୟୀ ନିବାସ ନାହିଁ । ଅରୁଆନ୍ନ ନ ହେଲେ ବି ଚୂଡ଼ାଘସା ମାଲପୁଆ ଗଣ୍ଡିଏ ଚଳୁ କରିଦେବା ।

ବାବାଜୀ ନା ବତ୍ସ...ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ହେଉଛି ମୋର ଦଣ୍ଡ ଧାରଣର ଅବସ୍ଥା । ତା' ଭିତରେ କେଉଁଠି ଅଟକି ରହିବା ମୋର ନିୟମ ନୁହେଁ । ଯେଉଁଠି ସୂର୍ଯ୍ୟାସ୍ତ ହେବ ସେଇଠି ବିଶ୍ରାମ ।

ଗ୍ରାମବାସୀ ୧ ଏଇ ସାତ ବର୍ଷ ଭିତରେ କେଉଁଠି ବି ଦିନରେ ବିଶ୍ରାମ ନେଇ ନାହାନ୍ତି ?

ବାବାଜୀ କେବଳ ଶାରୀରିକ ଅସୁସ୍ଥତା ବେଳେ ବାଧ ହୋଇ ବିଶ୍ରାମ ନେଇଛି । ଆଳସ୍ୟ ବଶତଃ ବିଶ୍ରାମ ଗ୍ରହଣ କରିନି । ରାସ୍ତା କଡ଼ର ବୃକ୍ଷତଳକୁ ଛାଡ଼ି କୌଣସି ଗୃହସ୍ଥଙ୍କ ଘରେ ବିଶ୍ରାମ ନେଇନି କି କେବେ ପଥ୍ୟ ଗ୍ରହଣ କରିନି ।

ଗ୍ରାମବାସୀ ୨ ତା'ହେଲେ ଔଷଧି ?

ବାବାଜୀ କେବେ କେବେ ଧୂନୀ ସ୍ଥାପନ କରି ତାରି ବିଭୂତିକୁ ଯଜ୍ଞ ମହୋଷଧି ଭାବି ସେବନ କରିଛି ଏବଂ ସୁସ୍ଥ ମଧ୍ୟ ହୋଇଛି ।

ଗ୍ରାମବାସୀ ୩ ସେ ସବୁ ଆପଣଙ୍କ ମହିମା ।

ବାବାଜୀ ନା ନା ନା ଭୁଲ୍ କହୁଛ ବାବା, ତୁମର ବୁଝିବା ଭୁଲ୍ । ସବୁ ସେଇ ଜଗତର ନାଥ ଜଗନ୍ନାଥଙ୍କ ଇଚ୍ଛା, ତାଙ୍କରି ମହିମା । ତାଙ୍କ ବିନା ଏ ଛାର ମାନବର ଅସ୍ତିତ୍ୱ ବା କାହିଁ ? ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବ ତୁମେ । (ପୁଣି ଚାଲିଲେ । ସମୟ ସନ୍ଧ୍ୟା ହୋଇ ଆସିଲା । ପ୍ରଣାମ କରି ଗଛ ମୂଳରେ ବସିଲେ। ଏକତାରା ଧରି ଭଜନ ଗାଇଲେ । ଜଣେ ନାରୀ ତାଙ୍କ ସ୍ୱାମୀକୁ ଧରି ପ୍ରବେଶ)

ଦୀପଂ ଜ୍ୟୋତି ପରଂବ୍ରହ୍ମ, ଦୀପଂ ଜ୍ୟୋତି ଜନାର୍ଦ୍ଦନ ଦୀପଂ ଜ୍ୟୋତି ହରତେ ପାପ
ସନ୍ଧ୍ୟା ଦୀପଂ ନମସ୍ତୁ ତେଃ ।

| | |
|---|---|
| ବାବାଜୀ ଗୀତ | ଦୀନ ବନ୍ଧୁ ଦଇତାରୀ, ଦୁଃଖ ନଗଲା ମୋହରି ।<br>ହେଲ କି ନିଷ୍ଠୁର ଚିତ୍ତ, ନୀଳାଚଳେ ବିଜେ କରି |
| ନାରୀ | ପ୍ରଣାମ ଗ୍ରହଣ କରନ୍ତୁ ବାବାଜୀ ମହାରାଜ... |
| ବାବାଜୀ | ଶୁଭମ୍‌ଅସ୍ତୁ । କୁଆଡ଼େ ଆସିଲ ମାଆ ? |
| ପୁରୁଷ | ଆମେ ଏଇ ପାର୍ଶ୍ୱ ଗ୍ରାମର ଅଧିବାସୀ, ଆପଣଙ୍କ ସାକ୍ଷାତ ପାଇଁ ଆସିଅଛୁ । |
| ବାବାଜୀ | କି ଆଶ୍ଚର୍ଯ୍ୟ ? ମୋ ସାକ୍ଷାତ ହେତୁ ଆସିଅଛ ? କାରଣ କ'ଣ ବାବା ? ମୁଁ ଅଧମ ବା ଆପଣ ମାନଙ୍କର କ'ଣ ସେବା କରିପାରିବି ? |
| ନାରୀ | ଆମେ ସନ୍ତାନ ହୀନା ବାବା... |
| ବାବାଜୀ | ସବୁ ସେଇ ଜଗନ୍ନାଥଙ୍କ ଇଚ୍ଛା । ତାଙ୍କୁ ପ୍ରାର୍ଥନା କର, ସେ ଦୟାକଲେ ତୁମର ମନବାଞ୍ଛା ପୂର୍ଣ୍ଣ ହେବ । |
| ପୁରୁଷ | ସେ ତ' ସଦୟ ହୋଇଛନ୍ତି, କେବଳ ଆପଣଙ୍କର ଆଶୀର୍ବାଦ ହେଲେ ହେଲା । |
| ବାବାଜୀ | ଜୟ ଜଗନ୍ନାଥ । ଏମିତି କଥା ସବୁ ତୁଣ୍ଡରେ ଧରନା ବାବା । ମୁଁ କିବା ଛାର ଅଧମ ମୁଁ ପୁଣି ପ୍ରଭୁଙ୍କ ଇଚ୍ଛାରେ ବାଧାଦେବି ? ପ୍ରଭୁ ଯଦି କୃପା କରିଛନ୍ତି ମୋର ବା ଆପତ୍ତି କାହିଁକି ହେବ ? ଅବଶ୍ୟ ତୁମ୍ଭେ ସନ୍ତାନ ଲାଭ କରିବ । |
| ନାରୀ | ଏଇ ଆମର ପ୍ରଣାମୀ ଗ୍ରହଣ କରନ୍ତୁ ମହାରାଜ । |
| ବାବାଜୀ | ଏଥିରେ କ'ଣ ଅଛି ମାତା ? |
| ନାରୀ | ଆପଣଙ୍କ ମଣୋହି ପାଇଁ କିଛି ଖାଦ୍ୟ ଆଉ ସାମାନ୍ୟ ବସ୍ତ୍ର ଖଣ୍ଡେ । |
| ବାବାଜୀ | ଦେଖନ୍ତୁ ମାତା, ମୁଁ ଶପଥ କରିଛି, ପ୍ରଭୁ ଜଗନ୍ନାଥଙ୍କର ଚତୁର୍ଦ୍ଧାମୂର୍ତ୍ତି ଦର୍ଶନ ନ କରିବା ଯାଏ ଅନ୍ନ ଦାନା ଗ୍ରହଣ କରିବି ନାହିଁ । |
| ପୁରୁଷ | ତାହା ଆମ୍ଭେ ଜାଣୁ ବାବାଜୀ । |
| ବାବାଜୀ | ଆଶ୍ଚର୍ଯ୍ୟ ? ମୋ ଶପଥ ଆପଣଙ୍କଜ୍ଞାତ ହେଲେ କିପରି ବାବା ? |
| ନାରୀ | କାଲି ରାତିରେ ସ୍ୱପ୍ନରେ ଜଣେ ବ୍ରାହ୍ମଣ ଦେବତା ମୋତେ ଆଶୀର୍ବାଦ କରି କହିଲେ, ତୋର ସନ୍ତାନ ଅବଶ୍ୟ ହେବ, ଯଦି ପଞ୍ଜାବରୁ ଆସିଥିବା ଦଣ୍ଡବତୀ ବାବାଜୀଙ୍କୁ ମନଭରି ଖାଦ୍ୟ ଖୁଆଇ ଶାନ୍ତ କରିପାରିବୁ । |
| ବାବାଜୀ | ଧନ୍ୟ ଧନ୍ୟ ମହାପ୍ରଭୁ...ଧନ୍ୟ ତୁମର ମହିମା । କିନ୍ତୁ ମାତା ମୁଁ ତ' କେବଳ ଫଳ ମୂଳ ହିଁ ଗ୍ରହଣ କରିବି । |
| ପୁରୁଷ | ଆମେ ତ କେବଳ ଫଳମୂଳ ହିଁ ଆଣିଛୁ ବାବାଜୀ ମହାରାଜ। |
| ବାବାଜୀ | ଏଇ ସ୍ଥାନର ମହିମା ତ କିଛି କମ୍ ନୁହେଁ ବାବା । ଦେଖୁନ ମୁଁ ଆସିବା ପୂର୍ବରୁ ମୋ ପାଇଁ ଫଳମୂଳ ସବୁ ପ୍ରସ୍ତୁତ ହୋଇ ରହିଛି । ତୁମେ କ'ଣ ଭବିଷ୍ୟତ ଦ୍ରଷ୍ଟା ? |
| ନାରୀ | ନା ବାବା...ଆପଣଙ୍କ ବିଷୟରେ ସବୁ କଥା ବ୍ରାହ୍ମଣ ମହାରାଜ ସ୍ୱପ୍ନରେ ମୋତେ କହିଛନ୍ତି । |
| ବାବାଜୀ | ଜୟ ଜଗନ୍ନାଥ...ଏ ସ୍ଥାନର ନାମ କ'ଣ ମାତା ? |
| ପୁରୁଷ | ଅଠର ନଳା । ଏହିଠାରୁ ହିଁ ଶ୍ରୀକ୍ଷେତ୍ରର ସୀମା ଆରମ୍ଭ ବୋଲି ଧରି ନେଇ ପାରନ୍ତି । |

ବାବାଜୀ	ଆଃ...ଅତୀବ ଆନନ୍ଦ ଦାୟକ ଏଇ ଶବ୍ଦସବୁ । ଏହା ତ' ମୋ ଲାଗି ଶ୍ରୀକ୍ଷେତ୍ରକୁ ସ୍ୱାଗତ କଲାଭଳି ଘଟଣା । ହେ ପ୍ରଭୁ ପତିତ ପାବନ...ଦୀନବନ୍ଧୁ...ତବଇଚ୍ଛା ପୂର୍ଣ୍ଣ ସଦା ହେଉ ଭଗବାନ । (ସନ୍ଧ୍ୟା ପ୍ରଣାମୀ ସାରି ଲାଉତୁମ୍ବା ଧରି ଗୀତ ଜୟ ଜଗନ୍ନାଥ ।)
ଏକାତୋ ଭକତ ଜୀବନ, ଭକତ ,ନିମନ୍ତେ ତୋର ଶଙ୍ଖ ଚକ୍ର ଚିହ୍ନ
ଗାଇଲେ) ସକାଳ ହେଲା...ବାବାଜୀ ପୂର୍ବବତ୍ ଦଣ୍ଡବତ୍ ହୋଇ ଚାଲିବା ଆରମ୍ଭ କଲେ ।
(ପ୍ରବେଶ କଲେ ତିନି ଚାରି ଜଣ ପଣ୍ଡାଙ୍କ ସହ ବଡ଼ପଣ୍ଡା)

ବଡ଼ପଣ୍ଡା :	ଜୟ ଜଗନ୍ନାଥ । ପ୍ରଣାମୀ ବାବା...ମହାରାଜ ! ଅପେକ୍ଷା କରନ୍ତୁ । ଆପଣଙ୍କୁ ଆମ୍ଭର କିଛି ସମ୍ବାଦ ଦେବାକୁ ଅଛି। । ଦୟା କରି ଶୁଣିବା ହୁଅନ୍ତୁ ।

ବାବାଜୀ	କୁହନ୍ତୁ, କ'ଣ ଆପଣ କହିବାକୁ ଚାହାନ୍ତି ? ଆପଣ କିଏ ବ୍ରାହ୍ମଣ ଗୋସେଇଁ ? ଆପଣଙ୍କ ପରିଚୟ ଏ ଅଧମ ଜାଣିପାରେ କି ?

ବଡ଼ ପଣ୍ଡା	ନିଶ୍ଚୟ କହିବି ବାବାଜୀ ମହାରାଜ । ପ୍ରଥମେ ଆପଣ କୁହନ୍ତୁ ଆପଣ କ'ଣ ସୁଦୂର ପଞ୍ଜାବ ପ୍ରଦେଶରୁ ଦଣ୍ଡ ପ୍ରଣାମୀ ବ୍ରତ ଧାରଣ କରି ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ ନିମନ୍ତେ ଆସିଅଛନ୍ତି ?

ବାବାଜୀ	ଉଚିତ କହିଛନ୍ତି ବ୍ରାହ୍ମଣ ଦେବତା । ଆପଣ ମୋର ପରିଚୟ କିପରି ଜ୍ଞାତ ହେଲେ ମହାଶୟ ? ଆପଣ କ'ଣ ତ୍ରିକାଳଦର୍ଶୀ ମହାତ୍ମା ?

ବଡ଼ପଣ୍ଡା	ନା, ସନ୍ୟାସୀ ମହାରାଜ । ମୁଁ ଆମ ମହାପ୍ରଭୁଙ୍କର ସେବକ, ବଡ଼ପଣ୍ଡା ।

ବାବାଜୀ	ଦଣ୍ଡବତ ହେ ଭାଗ୍ୟବାନ ପୁରୁଷ । ଆପଣଙ୍କ ଶ୍ରୀଚରଣରେ କୋଟି କୋଟି ପ୍ରଣାମ । ଯାହାଙ୍କର ଶ୍ରୀମୁଖ ଦର୍ଶନ ପାଇଁ ଆମ ଭଳି ଲକ୍ଷ ଲକ୍ଷ ପାପିତାପି କାହିଁ କାହିଁ ସ୍ଥାନରୁ ଧାଇଁ ଆସୁଛନ୍ତି । ଆପଣ ଆପଣଙ୍କ ପୁଣ୍ୟ ବଳରେ ସେମିତି ମହାପ୍ରଭୁଙ୍କର ଚରଣ ବନ୍ଦନା କରି ନିତି ପ୍ରତିଦିନ ଶ୍ରୀମୁଖ ଦର୍ଶନର ସୌଭାଗ୍ୟ ଲାଭ କରୁଛନ୍ତି, ଆପଣଙ୍କୁ ଦଣ୍ଡବତ ହେଉଛି ଗୋସେଇଁ ।

ବଡ଼ପଣ୍ଡା	ହେଲେ...ମହାରାଜ ଗତ କାଲି ରାତ୍ରିରେ ମଣିମା ଶ୍ରୀଛାମୁ ସ୍ୱୟଂ ସ୍ୱପ୍ନରେ ମୋ ସମ୍ମୁଖରେ ଉଭା ହୋଇ ଆଦେଶ କଲେ ଅଠର ନଳା ନିକଟରେ ଅଟକିଥିବା ପ୍ରଣାମୀ ସାଧୁଙ୍କୁ ଦର୍ଶନ କରି ତାଙ୍କର ସନ୍ଦେଶ ଦେବାକୁ । ତେଣୁ ଆସିଛି ମହାରାଜ ...ଆପଣ ଦୟାକରି ଠାକୁରଙ୍କ ନିର୍ଦ୍ଦେଶ ଶୁଣନ୍ତୁ ଆଉ ନିଷ୍ପତ୍ତି ନିଅନ୍ତୁ ।

ବାବାଜୀ	କୁହନ୍ତୁ କ'ଣ ସନ୍ଦେଶ ଆପଣ ମୋତେ ଦେବାକୁ ଚାହାନ୍ତି ?

ବଡ଼ପଣ୍ଡା	ଅତ୍ୟନ୍ତ ଦୁଃଖଦ ସମ୍ବାଦ । ପ୍ରଭୁ କାଲି ରାତ୍ରିରେ ସ୍ୱପ୍ନାଦେଶ ଦେଇ ଆପଣଙ୍କୁ ଶ୍ରୀକ୍ଷେତ୍ରରେ ପ୍ରବେଶ କରିବାକୁ ବାରଣ କରିଅଛନ୍ତି ।

ବାବାଜୀ	କି ଆଶ୍ଚର୍ଯ୍ୟ ? ଆପଣ ବୋଧହୁଏ ଭୁଲ୍ ସ୍ୱପ୍ନ ଦେଖିଛନ୍ତି ଅଥବା ପ୍ରଭୁଙ୍କ ଉକ୍ତିର ତାତ୍ପର୍ଯ୍ୟ ସଠିକ୍ ଭାବେ ହୃଦ୍‌ବୋଧ କରି ପାରି ନାହାନ୍ତି । ଏଇ ...ଦେଖନ୍ତୁ...ଗତ କାଲି ସନ୍ଧ୍ୟାରେ ଏକ ସନ୍ତାନହୀନ ଦମ୍ପତ୍ତି ତାଙ୍କ ସ୍ୱପ୍ନ କଥା ଶୁଣାଇ ଶ୍ରୀକ୍ଷେତ୍ରକୁ ସ୍ୱାଗତ କଲେ, ଅଥଚ ଆପଣ ଏଭଳି ସମ୍ବାଦ ଶୁଣାଉଛନ୍ତି ? ମୁଁ କେମିତି ବିଶ୍ୱାସ କରିବି ? ପ୍ରଭୁ ହୁଏତ ଆଉ କାହା ଉଦ୍ଦେଶ୍ୟରେ ସ୍ୱପ୍ନାଦେଶ ଦେଇ ଥାଇପାରନ୍ତି ।

ବଡ଼ପଣ୍ଡା	ନା ମହାଶୟ, ମୁଁ ଆପଣଙ୍କ ପରିଚୟ ପଚାରନ୍ତେ, ଦଣ୍ଡବତୀ ସାଧୁ ପଞ୍ଜାବରୁ ଦଣ୍ଡ ପ୍ରଣାମୀ ବ୍ରତ ଧାରଣ କରି ଆସିଛନ୍ତି ଏବଂ ରାତ୍ରିରେ ଅଠରନଳା ନିକଟରେ ଡେରା ପକାଇ ଅବସ୍ଥାନ କରିଛନ୍ତି ।

ଏ ସବୁ ତଥ୍ୟ କ'ଣ ମିଥ୍ୟା ?

ବାବାଜୀ ନା ବଡ଼ପଣ୍ଡା ମହାଶୟ । ଏସବୁ କଥା ସତ୍ୟ, କିନ୍ତୁ ବୁଝିପାରୁନି ମୋ ପ୍ରତି ପ୍ରଭୁଙ୍କର ଏ କଠୋର ମନୋଭାବ କାହିଁକି ?

ବଡ଼ପଣ୍ଡା ସେ କଥା ବା ମୁଁ ଛାର କିପରି ଜାଣିବି ? ପ୍ରଭୁଙ୍କର କ'ଣ ବା ଇଚ୍ଛା ସେକଥା କିଏ କହିବ ନା ଜାଣିବ ?

ବାବାଜୀ ଠିକ୍ କଥା । ଲୀଳାମୟଙ୍କର ଅଶେଷ ଲୀଳା । ଏ ଛାର ମଣିଷ ବା ବୁଝିବ କେମିତି ? ସଂଜରେ ସ୍ୱାଗତ କରି ଶ୍ରୀକ୍ଷେତ୍ରକୁ ଆମନ୍ତ୍ରଣ କଲେ, ପୁଣି ପ୍ରଭାତରେ ବାରଣ କରି ସନ୍ଦେଶ ପଠାଇ ଦେଲେ । ଧନ୍ୟ ମହାପ୍ରଭୁ...ଧନ୍ୟ ତୁମର ଲୀଳା । ତେବେ ବଡ଼ପଣ୍ଡା ମହାଶୟ...ମୁଁ ଜାଣିବାକୁ ଚାହେଁ ମୋର ଅପରାଧ କ'ଣ ? ମୋ ଜ୍ଞାତରେ ଏ ଜନ୍ମରେ ମୁଁ ଗୋ ହତ୍ୟା, ନରହତ୍ୟା, ଚୋରି, ଭଣ୍ଡାମି, ମିଥ୍ୟାଚାର କିଛି ବି କରିନାହିଁ । ଆଜନ୍ମ ବ୍ରହ୍ମଚାରୀ ମୁଁ । ଆଜକୁ ୭ ବର୍ଷ ଧରି ରାଜରାସ୍ତା ମୋର ଆଶ୍ରୟ ସ୍ଥଳ ପାଲଟିଛି । ଫଳମୂଳ ବ୍ୟତୀତ ଅନ୍ନଦାନାବି ଗ୍ରହଣ କରିନି । କେବଳ ପ୍ରଭୁଙ୍କର ଦର୍ଶନ ପାଇଁ ଖରା, ବର୍ଷା, ଶୀତ କାକରକୁ ଖାତର ନକରି ଚାଲିଛି । ମୋ ଉପରେ ପ୍ରଭୁଙ୍କର ଏପରି କ୍ରୋଧ କାହିଁକି, ତା'ର କାରଣ ନଜାଣି ମୁଁ ଏ ଶ୍ରୀକ୍ଷେତ୍ର ଛାଡ଼ି ଫେରିଯିବି କିପରି ? କୁହନ୍ତୁ ତ' ଦେଖି, ସେ ଯଦି ସ୍ୱପ୍ନରେ ଆପଣଙ୍କୁ ସନ୍ଦେଶ ଦେଇ ପାରିଲେ, ତା'ହେଲେ ସ୍ୱପ୍ନରେ ସେ ମୋତେ ବି ତ' ଆଦେଶ କରିପାରିଥାନ୍ତେ ? ନା ନା ତାଙ୍କର ଶ୍ରୀମୁଖରୁ ମୁଁ ଆଦେଶ ନ ପାଇବା ପର୍ଯ୍ୟନ୍ତ, କାରଣ ନଜାଣିବା ପର୍ଯ୍ୟନ୍ତ, ମୁଁ ଶ୍ରୀମୁଖ ଦର୍ଶନ ଉଦ୍ଦେଶ୍ୟରେ, ଶ୍ରୀମନ୍ଦିରକୁ ନିଶ୍ଚୟ ଗମନ କରିବି । (ବାହାରିବାକୁ ଉଦ୍ୟତ)

ବ:ପଣ୍ଡା ଏହା କିନ୍ତୁ ଉଚିତ୍ କାର୍ଯ୍ୟ ନୁହେଁ ମହାଭାଗ । ମହାପ୍ରଭୁଙ୍କ ଆଦେଶ ଅମାନ୍ୟ କଲେ ଆପଣଙ୍କୁ ଦଣ୍ଡ ଭୋଗିବାକୁ ପଡ଼ିବ ।

ବାବାଜୀ ସେଇଥିପାଇଁ ତ ଦଣ୍ଡ ଧାରଣ କରିଛି । ଆଉ ଅଧିକ ଦଣ୍ଡ କ'ଣ ମିଳିବ ପଣ୍ଡା ମହାଶୟ ? ପ୍ରଭୁଙ୍କ ଆଦେଶ ଅମାନ୍ୟ କରିବାକୁ ମୋର ଜନ୍ମ ହୋଇ ନାହିଁ । ମୁଁ କେବଳ ଜାଣିବାକୁ ଚାହେଁ ସତରେ ଏହା ପ୍ରଭୁଙ୍କ ଇଚ୍ଛା ନା ଆପଣଙ୍କ ସ୍ୱପ୍ନ ଦର୍ଶନର ଏକ ଖଣ୍ଡିତ ଅଂଶ । (ଖୁସିରେ) କାରଣ ମୁଁ ଶୁଣିଛି ଯେ ଯେତେ ବଡ଼ ଅପରାଧି ହେଲେ ମଧ, ଯେତେ ବଡ଼ ପାତକ ହେଲେ ମଧ ଦୁଇବାହୁ ଟେକି ପ୍ରଭୁଙ୍କ ଶରଣ ନେଲେ ଶରଣ ରକ୍ଷଣ ହରି ପାତକିର ସବୁ ପାପ ହରଣ କରି ତାକୁ ଭକ୍ତ ଭାବେ କୋଳେଇ ନିଅନ୍ତି । ତାକୁ ଉଦ୍ଧାର କରି ଦିଅନ୍ତି ।

ବାବାଜୀ ଗୀତ ଗାଇଲେ: ଜଗନ୍ନାଥ କିଛି ମାଗୁନାହିଁ ତୋତେ ଧନ ମାଗୁ ନାହିଁ ଜନ ମାଗୁ ନାହିଁ
ମାଗୁଛି ଶରଧା ବାଲିରୁ ହାତେ... ଜଗନ୍ନାଥ କିଛି ମାଗୁ ନାହିଁ ତୋତେ ।

ମୁଁ ଶୁଣିଛି କିଛି ଦିନ ପୂର୍ବେ ଆପଣଙ୍କ ଶ୍ରୀମନ୍ଦିରର ବଡ଼ ପଣ୍ଡା ମଧ ମହାପ୍ରଭୁଙ୍କ କୃପାରୁ ଗଜପତି ମହାରାଜଙ୍କ ହାତରୁ ଦଣ୍ଡିତ ହେଉ ହେଉ ଅଳ୍ପକେ ରକ୍ଷା ପାଇ ଭକ୍ତ ଭାବେ ମାନ୍ୟତା ପାଇଥିଲେ ସେ କଥା କ'ଣ ଆପଣମାନେ ଜାଣି ନାହାନ୍ତି ନା ମନେ ପଡୁ ନାହିଁ ? ତା'ହେଲେ କହୁଛି ଶୁଣନ୍ତୁ ।

## (ଦୃଶ୍ୟାନ୍ତର)

(ଗଜପତି ମହାରାଜଙ୍କର ରାଜ ଉଆସ...ଗଜପତି ପଦଚାରଣ କରୁଛନ୍ତି... ରାଜଗୁରୁ ପ୍ରବେଶ କଲେ ।)

ରାଜଗୁରୁ　ମଣିମାଙ୍କର ଜୟ ହେଉ...ମଣିମା ଆମ୍ଭଙ୍କୁ ତଲବ କଲେ...

ଗଜପତି　କାଲି ରାତିରେ ଆମ୍ଭେ ସ୍ୱପ୍ନରେ ମହାପ୍ରଭୁଙ୍କୁ ଦର୍ଶନ କଲୁ । ମାତ୍ର ଶ୍ରୀମୁଖ ବିରସ ଥିଲାଭଳି ମନେହେଲା । ପ୍ରଭୁଙ୍କର ବଙ୍କା ଅଧରରୁ ହସ ଯେମିତି ଉଭେଇ ଯାଇଛି ।

ରାଜଗୁରୁ　ବଡ଼ ଆଚମ୍ବିତ କଥା କହୁଛନ୍ତି ମଣିମା ? ଶ୍ରୀମୁଖ ବିରସ ଦିଶୁଛି ? ନିଶ୍ଚୟ କିଛି ଅଘଟଣ ଘଟିଛି । କିଛି ଆଦେଶ କରିଛନ୍ତି କି ମହାବାହୁ ?

ଗଜପତି　ନା'...ସେମିତି କିଛି ନିର୍ଦ୍ଦେଶ ପ୍ରଭୁ ଦେଇ ନାହାନ୍ତି । ମନେହେଲା...ଯେମିତି ସେ ମୁହଁ ଖୋଲି କିଛି କହିବାକୁ ଚାହୁଁ ନାହାନ୍ତି । ଅଥଚ ନିଜେ ଦୁଃଖିତ ଅଛନ୍ତି । କାରଣ ଖୋଜି ଜାଣି ପାରୁ ନାହିଁ । ତେଣୁ ପରାମର୍ଶ ପାଇଁ ଆପଣଙ୍କୁ ତଲବ କଲି ରାଜଗୁରୁ ମହାଶୟ ।

ରାଜଗୁରୁ　ଏହା ଅତ୍ୟନ୍ତ ଚିନ୍ତା ଜନକ ବିଷୟ...ମୋର ମନେ ହୁଏ ମଣିମା ! ହୁଏତ ବା ମହାପ୍ରଭୁ ନିଜର କେହି ଆତ୍ମୀୟ ପରିଜନର ଅନାଚାରରେ ବ୍ୟଥିତ ହୋଇଥାଇ ପାରନ୍ତି ।

ଗଜପତି　ସେ କଥାତ ପ୍ରଭୁ ନିଜେ ଇଙ୍ଗିତରେ ସୂଚନା ପ୍ରଦାନ କରିପାରିଥାନ୍ତେ ?

ରାଜଗୁରୁ　ସେମିତି ହୋଇଥିଲେ ସେ ବ୍ୟକ୍ତି ରାଜରୋଷର ଶିକାର ହୋଇ ମଣିମାଙ୍କ ହସ୍ତରେ ଦଣ୍ଡିତ ହେବାର ସମ୍ଭାବନା ଅଛି । ତେଣୁ ହୁଏତ ନିଜର ପରିଜନ କେହି ରାଜଦଣ୍ଡରେ ଦଣ୍ଡିତ ହୁଅନ୍ତୁ ଏହା ପ୍ରଭୁଙ୍କର ଇଚ୍ଛା ହୋଇ ନ ଥାଇପାରେ । ତେଣୁ ସେ କେବଳ ଦୁଃଖିତ ଥିବାର ଇସାରା ଦେଇଛନ୍ତି ।

ଗଜପତି　ଏହାର କାରଣ ଅନୁସନ୍ଧାନ କରି ମୋତେ ତହିଁରୁ ନିରାକରଣର ମାର୍ଗ ବତାଇ ଦିଅନ୍ତୁ ରାଜଗୁରୁ ମହାଶୟ ।

ରାଜଗୁରୁ　ମହାରାଜ, ମହାପ୍ରଭୁଙ୍କ ଲୀଳା ଭେଦ କରିବା ଏ ଛାର ମଣିଷ ପକ୍ଷରେ କିପରି ବା ସମ୍ଭବ ହେବ, ଯେ ପର୍ଯ୍ୟନ୍ତ ଲୀଳାମୟ ନିଜେ ପ୍ରକଟ କରିନାହାନ୍ତି ତହିଁର ବର୍ଣ୍ଣନା କିଏବା କରିବ ? ତଥାପି ଏକ ଉପାୟ ମୋର ଦୃଷ୍ଟିଗୋଚର ହେଉଛି । ଆପଣ ଯଦି ସମ୍ମତି ପ୍ରଦାନ କରନ୍ତେ ତା'ହେଲେ ତାକୁ କାର୍ଯ୍ୟକାରୀ କରାଯାଇପାରନ୍ତା ।

ଗଜପତି　ତୁରନ୍ତ ବ୍ୟକ୍ତ କରନ୍ତୁ ରାଜଗୁରୁ ଆପଣେ ।

ରାଜଗୁରୁ　ଯଥାଶୀଘ୍ର ଚାଲନ୍ତୁ...ଶ୍ରୀଛାମୁରେ ଗୁହାରୀ ଜଣାଇ ନିବେଦନ କରି ଆସିବା । ତାଙ୍କ ଲୀଳା ନିଜେ ହିଁ ବ୍ୟକ୍ତ କରନ୍ତୁ, ସେଇ ପ୍ରାର୍ଥନା କରି ଆସିବା ।

ଗଜପତି　ଯଥାର୍ଥ କହିଛନ୍ତି ରାଜଗୁରୁ ମହାଶୟ । ଚାଲନ୍ତୁ ତୁରନ୍ତ ରଥରେ ଶ୍ରୀକ୍ଷେତ୍ର ଗମନ କରିବା । କିଏ ଅଛରେ ସାରଥୀଙ୍କୁ ତୁରନ୍ତ ପ୍ରସ୍ତୁତ ହୋଇ ରଥ ଚାଳନର ଆଦେଶ କର ଏବଂ ଜଣେ ଅଶ୍ୱାରୋହୀଙ୍କୁ ତୁରନ୍ତ ପଠାଇ ବଡ଼ ପଣ୍ଡାଙ୍କୁ ଖବର କରାଅ । (ଦୁହିଁଙ୍କର ପ୍ରସ୍ଥାନ)

ନୈପଥ୍ୟରୁ　ସାବଧାନ...ସାବଧାନ...ଗଜପତି ମହାରାଜ ଶ୍ରୀଛାମୁ ମହାପ୍ରଭୁ ଦର୍ଶନକୁ ଶ୍ରୀକ୍ଷେତ୍ର ବିଜେ ହେବେ...ସାବଧାନ...ସାବଧାନ (ଦେଖାଗଲା ରଥରେ ସେମାନେ ଧାଉଁଛନ୍ତି)

ଗଜପତି　କ୍ଷିପ୍ର ଗତିରେ ରଥ ସଞ୍ଚାଳନ କର ସାରଥି । ଶ୍ରୀମନ୍ଦିରର ସିଂହଦ୍ୱାର ଖୋଲିବା ପୂର୍ବରୁ ଆମ୍ଭେ ଯେପରି ଉପସ୍ଥିତ ହେବୁ...

ସାରଥି　ଯଥା ଆଜ୍ଞା ମଣିମା...(ଚାଲିଲେ)

| | |
|---|---|
| ରାଜଗୁରୁ | ସାବଧାନରେ ରଥ ବାହୁଥିବ ସାରଥି...ମହାରାଜଙ୍କର ଶ୍ରୀଅଙ୍ଗକୁ ଯେପରି ବାଧକ ନ ହୁଏ । |
| ଗଜପତି | ସେଥିପାଇଁ ଚିନ୍ତା ନାହିଁ ରାଜଗୁରୁ ମହାଶୟ...ମୁଁ କେବଳ ଭାବୁଛି ପ୍ରଭୁଙ୍କର ଏ ରୂପ କାହିଁକି ଦୃଷ୍ଟିଗୋଚର ହେଲା । ପ୍ରଭୁ ଆଉ ଆମ୍ଭ ଉପରେ ରୋଷ କରିନାହାନ୍ତି ତ ? ନୀତିକାନ୍ତିରେ ବିଭ୍ରାଟ ଘଟି ନାହିଁ ତ ? ଏ ରାଜ୍ୟକୁ ଆଉ ଆମ୍ଭ ଅଜାଣତରେ ବିପଦ ମାଡ଼ି ଆସୁ ନାହିଁ ତ ? |
| ରାଜଗୁରୁ | କେମନ୍ତେ ବର୍ଣ୍ଣିବି ମଣିମା । ଆପଣ ହେଲେ ମହାପ୍ରଭୁଙ୍କର ପ୍ରଥମ ସେବକ...ଆପଣମାନଙ୍କ ମଧରେ ଅତୁଟ ପ୍ରେମର ସଂପର୍କ...ସେ କଥା ଆମ୍ଭେ କିପରି ଅବଗତ ହେବୁ ? ତେବେ ମୋତେ ଯାହା ବୋଧ ହେଉଛି, ମହାପ୍ରଭୁ ନିଶ୍ଚୟ ନିଜ ଆପଣା ଜନର କୌଣସି କୃତକର୍ମ ଉପରେ ଅସନ୍ତୁଷ୍ଟ ହୋଇଛନ୍ତି । |
| ଗଜପତି | ଏମନ୍ତ ବୋଧ କାହିଁକି କରୁଛନ୍ତି ? |
| ରାଜଗୁରୁ | ଆମ୍ଭେ ଯେପରି ଆପଣା ଜନଠାରୁ ଆଘାତ ପାଇଲେ କାହା ଆଗରେ ମୁହଁ ଖୋଲି କିଛି ଅଭିଯୋଗ କରିପାରୁନା, ବୋଧ ହୁଏ ପ୍ରଭୁ ମଧ୍ୟ ସେପରି ସମସ୍ୟାର ସମ୍ମୁଖୀନ ହୋଇଥାଇପାରନ୍ତି । |
| ଗଜପତି | ସେଇ ଭୟ ମୋତେ ମଧ ବିବ୍ରତ କରୁଛି...ସେ ବ୍ୟକ୍ତି ମୁଁ କିମ୍ବା ରାଜପରିବାରର କେହି ନୁହନ୍ତି ତ ? |
| ରାଜଗୁରୁ | କୌଣସି କଥା ସ୍ପଷ୍ଟ କରି କହିବା ଅସମ୍ଭବ ହେବ ମଣିମା । |
| ସାରଥି | ଏଇ ଦେଖନ୍ତୁ । ଶ୍ରୀମନ୍ଦିରର ପତିତପାବନ ବାନା ଦୃଶ୍ୟ ହେଲାଣି ମଣିମା...ଆଉ ଦଣ୍ଡକରେ ଆମେ ସିଂହଦ୍ୱାର ନିକଟରେ ଉପନିତ ହେବା । |
| ଗଜପତି | ରାଜଗୁରୁ ମହାଶୟ...ଅତିବ ଉଦ୍‌ବେଳ ମନ ପ୍ରଭୁଙ୍କର ଦର୍ଶନ ପାଇଁ... |
| ରାଜଗୁରୁ | ଭକ୍ତବନ୍ଧୁ ଭକ୍ତ ବତ୍ସଳଙ୍କର ଦର୍ଶନ ଡୋରି ଲାଗିଛି ଯେତେବେଳେ, ଭକ୍ତର ମନ କ'ଣ ଆଉ ଥୟ ଧରି ରହିପାରେ କି ମଣିମା ? ଏଇତ ଦିଶିଲାଣି ଶରଧାବାଲି, ବଡ଼ଦାଣ୍ଡ, ବଡ଼ ଦେଉଳ ସମସ୍ତେ ଦୃଷ୍ଟି ଗୋଚର ହେଲେଣି । |
| ସାରଥି | ରଥ ଏବେ ସ୍ଥିର ହେଲା । ଶ୍ରୀଛାମୁ ଶ୍ରୀମନ୍ଦିରକୁ ବିଜେ କରନ୍ତୁ । (ଦେଖାଗଲା ଜଣେ ସୈନିକ ଅପେକ୍ଷା କରିଛି) |
| ଗଜପତି | ଅଶ୍ୱାରୋହୀ ସୈନିକ...ସମ୍ବାଦ ଦେଲ କି ବଡ଼ ପଣ୍ଡା ହେତୁ । ଏ ପର୍ଯ୍ୟନ୍ତ ସିଂହଦ୍ୱାର ଖୋଲି ନାହିଁ ପରା... |
| ଅଶ୍ୱାରୋହୀ | ଶୁଣନ୍ତୁ ମଣିମା...ବଡ଼ପଣ୍ଡା ନାହାଁନ୍ତି ସ୍ୱଗୃହେ...ଶ୍ରୀମତୀଙ୍କୁ ତାଙ୍କ ଶ୍ରୀଛାମୁଙ୍କ ଆଗମନ ସମ୍ବାଦ ଜଣାଇ, ଅପେକ୍ଷା ମୁଁ କରିଛି ଏଠାରେ । |
| ଗଜପତି | (ରାଜଗୁରୁଙ୍କୁ ଚାହିଁଲେ) ଆଶ୍ଚର୍ଯ୍ୟ ? ବଡ଼ପଣ୍ଡା ନାହାଁନ୍ତି ସ୍ୱଗୃହେ ? (ବଡ଼ପଣ୍ଡା ଆଦିଙ୍କ ପ୍ରବେଶ) |
| ବଡ଼ପଣ୍ଡା | ସୁ-ସ୍ୱାଗତମ୍ ମଣିମା । ପ୍ରଭୁଙ୍କର ଦର୍ଶନ ହେତୁ ବିଜେ କରନ୍ତୁ । |
| ଗଜପତି | ପ୍ରଭୁଙ୍କର ପହୁଡ଼ ଭାଙ୍ଗିଲାଣି ? |
| ପଣ୍ଡା ୧ | ହଁ ମଣିମା...ପ୍ରଭାତ ନୀତି ଚାଲିଛି... |
| ଗଜପତି | (ବଡ଼ପଣ୍ଡାଙ୍କୁ) ଶୁଣିଲି ଆପଣ ସ୍ୱଗୃହରେ ଉପସ୍ଥିତ ନ ଥିଲେ ? |
| ବ:ପଣ୍ଡା | (ଥ ଥ ମ ମ ହୋଇ) ମହୋଦଧି ସ୍ନାନ ପାଇଁ ଯାଇଥିଲି ମଣିମା... |
| ଗଜପତି | ଆଚ୍ଛା ଆଚ୍ଛା...ପ୍ରଭୁଙ୍କର ନୀତି କାନ୍ତିରେ କେବେ କିଛି ବିଭ୍ରାଟ ଘଟି ନାହିଁତ ? |

ବ:ପଣ୍ଡା — ନା, ମଣିମା...ସେପରି କିଛି ଦୃଷ୍ଟି ଗୋଚର ହୋଇଥିଲେ ଆମ୍ଭେ ନିଶ୍ଚୟ ଶ୍ରୀଛାମୁରେ ଏତାଲା କରିଥାନ୍ତୁ ? ମଣିମା ଆମ୍ଭ ଉପରେ ଭରସା ରଖନ୍ତୁ । ପ୍ରଭୁଙ୍କ ସେବକଙ୍କୁ ମିଛଟାରେ ସନ୍ଦେହ କରିବା ଆପଣଙ୍କୁ ଶୋଭା ଦେଉ ନାହିଁ ।

ଗଜପତି — ନା ନା ବଡ଼ପଣ୍ଡାଏ...ସନ୍ଦେହ ଅଦ୍ୟାବଧି ଆସିନାହିଁ ମନେ, ତେବେ କାଲି ପ୍ରଭୁ ସ୍ୱପ୍ନରେ ଦର୍ଶନ ଦେଲେ । ଅତ୍ୟନ୍ତ ବିମର୍ଷ, ଅତ୍ୟନ୍ତ ଦୁଃଖିତ ହୋଇ ବସିଛନ୍ତି । ସତେ ଯେମିତି ଅନେକ କିଛି କହିବାକୁ ଚାହାଁନ୍ତି । ନିର୍ଦ୍ଦେଶ ଦେବାକୁ ଚାହାନ୍ତି । ଅଥଚ ଦୟାପରବଶ ହୋଇ କିଛି କହି ପାରୁ ନାହାନ୍ତି ।

ରାଜଗୁରୁ — ସେଇଥିପାଇଁ ମଣିମା ତୁରନ୍ତ ଶ୍ରୀଛାମୁରେ ଗୁହାରୀ ହେବାକୁ ଆସିଛନ୍ତି ।

ବ:ପଣ୍ଡା — ଚିନ୍ତା କରନ୍ତୁ ନାହିଁ ମଣିମା...ଆପଣଙ୍କର ଆଦେଶ ଅନୁସାରେ ତୁରନ୍ତ ଅନୁସନ୍ଧାନ କରି ତୃଟି ସଂଶୋଧନ କରାଯିବ । ଜୟ ମହାବାହୁଙ୍କର ଜୟ...(ପ୍ରଣାମ କଲେ ସମସ୍ତେ) ଏଇ ନିଅନ୍ତୁ ମଣିମା...ପ୍ରଭୋଙ୍କର ମସ୍ତକ ଖଚିତ ପୁଷ୍ପ ତୁଳସୀର ଛଡା ସ୍ତବକ । କାଲି ପୂର୍ଣ୍ଣିମା ରାତିରେ ବିଶେଷ ଭାବେ ସଜ୍ଜିତ ହୋଇଥିଲେ ମହାପ୍ରଭୁ । ଏହାକୁ ମହାରାଣୀ ମାଆଙ୍କୁ ଅର୍ପଣ କଲେ ମାତାଶ୍ରୀ ଆନନ୍ଦିତା ହେବେ ।

ଗଜପତି — ଉତ୍ତମ ...ଏବେ ମୁଁ ଏକାନ୍ତ ଚାହେଁ...(ଗଜପତିଙ୍କ ବ୍ୟତୀତ ସମସ୍ତଙ୍କର ପ୍ରସ୍ଥାନ) (ରତ୍ନ ସିଂହାସନ ନିକଟରେ ଛିଡ଼ାହୋଇ ଯୋଡ଼ହସ୍ତରେ) ମହାପ୍ରଭୁ, ମୋତେ କ୍ଷମା କରନ୍ତୁ ମଣିମା...ରାଜ କାର୍ଯ୍ୟରେ ବ୍ୟସ୍ତ ରହି ଶ୍ରୀଛାମୁରେ ନୈବେଦ୍ୟ କରିବା ପାଇଁ ପ୍ରତିଦିନ ଉପସ୍ଥିତ ହୋଇପାରିନି । ମାତ୍ର ଆପଣଙ୍କ ସେବା ପୂଜାରେ ତୃଟି ହୋଇ ନୀତିକାନ୍ତିରେ ବିଶୃଙ୍ଖଳା ହେଉ ତାହା କେବେ ବି ମୁଁ ସହ୍ୟ କରିବି ନାହିଁ । ମୋତେ ଆଜ୍ଞା କରନ୍ତୁ ମଣିମା, କାହିଁକି ଆପଣଙ୍କ ଶ୍ରୀମୁଖ ମଳିନ ପଡ଼ିଛି ? ଏତେ ବିରସ କାହିଁକି ପଦ୍ମମୁଖ ? ଯେ ପର୍ଯ୍ୟନ୍ତ ଆପଣ ଆଦେଶ କରି ନାହାନ୍ତି, ସେ ପର୍ଯ୍ୟନ୍ତ ମୁଁ ଅନ୍ନଜଳ ସ୍ପର୍ଶ କରିବି ନାହିଁ ମଣିମା ।

ଜଗନ୍ନାଥ — (ନୈପଥ୍ୟରୁ) ମହାରାଜ ମୋର ଏଇ ଛଡ଼ାଫୁଲର ସ୍ତବକମାଳ ମହାରାଣୀଙ୍କୁ ଅବଶ୍ୟ ଅର୍ପଣ କରିବେ । ସେଥିରେ ସମସ୍ତଙ୍କର ମଙ୍ଗଳ ହେବ ।

ଗଜପତି — ଜୟ ଭକ୍ତ କଳ୍ପତରୁ ଚତୁର୍ଦ୍ଧାମୂର୍ତ୍ତିଙ୍କର ଜୟ ।

ସମସ୍ତେ — (ପ୍ରବେଶ କଲେ ଓ କହିଲେ) ଜୟ...

ଗଜପତି — ଚାଲନ୍ତୁ ରାଜଗୁରୁ ମହାଶୟ (ଦୁହିଁଙ୍କର ପ୍ରସ୍ଥାନ)

ନୈପଥ୍ୟରୁ — ସାବଧାନ...ସାବଧାନ...ଗଜପତି ମହାରାଜ ନବକୋଟି କର୍ଣ୍ଣାଟକ...

ପଣ୍ଡା ୧ — (ବଡ଼ପଣ୍ଡାଙ୍କୁ) ବୁଝିଲେ ବଡ଼ ପଣ୍ଡାଏ...ଆଜି ଆପଣଙ୍କ ବେଳା ଭଲ ହେତୁ ଅଳ୍ପକେ ଶ୍ରୀଛାମୁଙ୍କ କୋପରୁ ବର୍ତ୍ତିଗଲେ । ନହେଲେ ଆଜି ଆପଣଙ୍କ ସାଙ୍ଗରେ ଆମ ସମସ୍ତଙ୍କୁ କାରାବାସ ନ ହେଲେ ଦେଶାନ୍ତର ହୋଇଥାନ୍ତା ।

ପଣ୍ଡା ୨ — ଆପଣ ଆଜିକାଲି ବଡ଼ ଆନମନା ହେଲେଣି । ପ୍ରଭୁଙ୍କ ନୀତି କାନ୍ତିରେ ଆପଣଙ୍କର ଦୃଷ୍ଟି ରହୁନି ।

ପଣ୍ଡା ୩ — କାଲି ରାତିରେ ପ୍ରଭୁଙ୍କର ପହୁଡ଼ ପକାଇ, ପ୍ରଭୁଙ୍କର ମସ୍ତକ ଲାଗି ପୁଷ୍ପ କିରୀଟ ଧରି ଆପଣ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ କେଜାଣି...

ପଣ୍ଡା ୪ — କାଲି ରାତିରେ ତ' ଆପଣ ସ୍ୱଗୃହରେ ଉପସ୍ଥିତ ନଥିଲେ ? ସକାଳେ ଘୋଡ଼ା ସବାର ସୈନିକ ପହଞ୍ଚିଲା ବେଳକୁ ଘରେ ତ' ହାହାକାର ପଡ଼ିଗଲା । ପୁଅ ଝିଅ ଭାରିଜା ସଭିଏଁ ହେମ୍ପାରଡ଼ି ପକାଇ

କ୍ରନ୍ଦନ କଲେ...ଶେଷରେ ମୁଁ ଯାଇ ଖୋଜି ପାଇଲି । ତଥାପି ଆଜ୍ଞାଙ୍କର ନିଦ ଭାଙ୍ଗି ନଥିଲା । ବାରବଧୂ ଘରୁ ବାହାରି ସିଧାତ ଧାଇଁଲେ ମହୋଦଧିକୁ । ଅଥଚ ମଣିମା ପୁଚ୍ଛିବାରୁ ମହୋଦଧି ସ୍ନାନ କରି ଯାଇଥିଲି ବୋଲି ଉତ୍ତର ଦେଲେ ।

ସମସ୍ତେ — ଆପଣଙ୍କର ଏଇନେ କେବଳ ଦୁଇଟି ଠିକଣା...ସୋମରସ ଆଉ ବାରବଧୂ ନିବାସରେ ପ୍ରେମରସ ।

ପଣ୍ଡା ୧ — ହେଲାଯେ...ତା'ବୋଲି ଠାକୁରଙ୍କୁ ଅଣଦେଖା କରିବ ?

ପଣ୍ଡା ୨ — ଠାକୁରଙ୍କ ଗମ୍ଭୀରାରେ ଶ୍ରୀ ଗୀତଗୋବିନ୍ଦ ଶୁଣି, ଦେବଦାସୀଙ୍କର ନୃତ୍ୟ ଦର୍ଶନ କରି ପ୍ରେମରସ ଟିକିଏ ଉତଳା ଧରୁଥିବ ବୋଧହୁଏ ।

ପଣ୍ଡା ୩ — ହେଇଟି ବଡ଼ପଣ୍ଡାଏ...ଏଥର ଟିକିଏ ସଂଯମ ହୁଅ । ନ ହେଲେ ତୁମ ପୁଅ ମାଇପତ ଅନାଥ ହେବେ...

ପଣ୍ଡା ୪ — ଆମେ ବି ଅନାଥ ହେବୁ କି ଦେଶାନ୍ତର ଭୋଗିବୁ ସେ କଥା କିଏ ଜାଣିଛି ?

ପଣ୍ଡା ୧ — ଛାଡ଼ ଛାଡ଼...କାହିଁକି ଅଶୁଭ ଗୁଡ଼ାଏ ଗପୁଛ କହିଲ ? କାଳିଆ ଦୟାରୁ ଏ ବିପଦ ଟଳି ଗଲାଣି, ଚାଲ ଚାଲ ଦିଅଁଙ୍କର ସକାଳ ଧୂପ ବଢ଼ାଇବା (ପ୍ରସ୍ଥାନ)

(ବଡ଼ପଣ୍ଡା ଦୁଇ ବାହୁ ଟେକି ଛିଡ଼ା ହୋଇଥିଲେ ।)

(ଦୃଶ୍ୟାନ୍ତର)

(ଗଜପତିଙ୍କ ନଅର)

ମହାରାଣୀ — (ବ୍ୟସ୍ତ ଅଛନ୍ତି) ମହାରାଜ ଆଜି ଧ୍ୟାନ ମନ୍ଦିରକୁ ଆସିନାହାନ୍ତି...ଶୟନ କକ୍ଷରେ ନାହାଁନ୍ତି କିମ୍ବା ତାଙ୍କ ବିଷୟରେ ସମ୍ବାଦ ମଧ କିଛି ଜାଣି ହେଉନାହିଁ । ମହାରାଜ କାଲି ରାତ୍ରିରେ କ'ଣ ଉଆସ ଛାଡ଼ି ଆଉ କେଉଁଠି ରାତ୍ରି ଯାପନ କରିଛନ୍ତି... ?

(ପ୍ରହରୀର ପ୍ରବେଶ)

କ'ଣ କିଛି ସମ୍ବାଦ ମିଳିଲା ?

ପ୍ରହରୀ — ନା, ମହାରାଣୀ...ମହାରାଜା ଆଖଡ଼ା ଶାଳରେ କିମ୍ବା କୁସ୍ତି କସରତରେ ନାହାନ୍ତି ।

ମହାରାଣୀ — ସେନାପତିଙ୍କୁ ଖବର କରି ତଲବ କର ।

ସେନାପତି — (ପ୍ରବେଶ) କ୍ଷମା କରିବେ ମହାରାଣୀ, କାଲି ସନ୍ଧ୍ୟାରେ ଆଲୋଚନା ପରେ ମୁଁ ଆଉ ଶ୍ରୀଛାମୁରେ ଦର୍ଶନ କରିନି କିମ୍ବା ସେ ମଧ ତାଙ୍କର ଯୋଜନା ସଂପର୍କରେ ମୋତେ କିଛି ଅବଗତ କରିନାହାନ୍ତି ।

ମହାରାଣୀ — ତା'ହେଲେ କ'ଣ ମହାରାଜ ଅନ୍ତର୍ଦ୍ଧାନ ହୋଇଗଲେ ? ଯଥାଶୀଘ୍ର ସମ୍ବାଦ ସଂଗ୍ରହ କରି ମୋତେ ଜଣାଅ, ସେ ପର୍ଯ୍ୟନ୍ତ ମୁଁ ଅଭୁକ୍ତ ରହିବି ।

ସେନାପତି — ଯଥାଆଜ୍ଞା ମହାରାଣୀ...

ଅଶ୍ୱାରୋହୀ — (ବାହାରୁ ଶୁଭିଲା) ମହାରାଜ ବିଜେ...

ଗଜପତି — (ରଥରୁ ଓହ୍ଲାଇ) ଏଇ ନିଅନ୍ତୁ ମହାରାଣୀ...ମହାପ୍ରଭୁଙ୍କର ମସ୍ତକ ସଜ୍ଜିତ ଏ ଛଡ଼ା ଫୁଲ ଆଉ ତୁଳସୀର ସ୍ତବକ ।

ମହାରାଣୀ — ପ୍ରଭାତରୁ ଆପଣ କ'ଣ ଶ୍ରୀମନ୍ଦିର ଦର୍ଶନରେ ଯାଇଥିଲେ ? ମୋତେ ସମ୍ବାଦ ଦେଇ ପାରିଥାନ୍ତେ ?

ଗଜପତି — କାଲି ରାତ୍ରରେ ପ୍ରଭୁଙ୍କର ସ୍ୱପ୍ନ ଦର୍ଶନ କରି ବ୍ୟସ୍ତ ହୋଇ ପଡ଼ିଲି, ଏଣୁ ରାଜଗୁରୁ ମହାଶୟଙ୍କ ପରାମର୍ଶ ନେଇ ତୁରନ୍ତ ପ୍ରସ୍ଥାନ କଲି । ତେଣୁ ତୁମ୍ଭଙ୍କୁ ସମ୍ବାଦ ଦେଇ ପାରିନି ।

ମହାରାଣୀ — ପ୍ରଭାତରେ ଆପଣଙ୍କୁ ଧ୍ୟାନ ମନ୍ଦିରରେ ନ ଦେଖି ମୁଁ ଖୁବ୍ ଚିନ୍ତିତ ହୋଇପଡ଼ିଥିଲି ।

ଗଜପତି — ଏବେ ନିଶ୍ଚିନ୍ତ ହୋଇ ପୁଷ୍ପ ମାଳାଧରି ଧ୍ୟାନଗୃହକୁ ଗମନ କରନ୍ତୁ ।

ମହାରାଣୀ — (ମସ୍ତକରେ ମାଳାକୁ ଛୁଆଇଁ ଚମକି ପଡ଼ି) ମହାରାଜ ? ସତ୍ୟ କରି କୁହନ୍ତୁ ଏ ଛଡ଼ା ଫୁଲର ମାଳା କାହାର ମସ୍ତକ ଲାଗି ହୋଇଥିଲା ? ରାସରାସେଶ୍ୱର ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ନା ରାସେଶ୍ୱରୀ ଶ୍ରୀରାଧାଙ୍କର ନା ମହାରାଜଙ୍କ ଅଙ୍କଶାୟିନି କେଉଁ ବାରାଙ୍ଗନାର ?

ଗଜପତି — ମହାରାଣୀ ? ଗଜପତିଙ୍କୁ ନେଇ ଆପଣ ହସ କୌତୁକ କରିପାରନ୍ତି...ମାତ୍ର ମହାପ୍ରଭୁଙ୍କୁ ନେଇ ପରିହାସ ବା କୌତୁକ କରିବା ମୁଁ ସହ୍ୟ କରିପାରିବି ନାହିଁ ।

ମହାରାଣୀ — ମୁଁ ପରିହାସ କିମ୍ବା କୌତୁକ କରୁନାହିଁ ମହାରାଜ...ଆପଣ ସ୍ୱୟଂ ଦେଖନ୍ତୁ ଏଇ ପୁଷ୍ପ ସ୍ତବକ ଦେହରେ କାଳ ସର୍ପ ପରି ଗୁଡ଼ାଇ ହୋଇ ରହିଛି ଏକ ଦୀର୍ଘ କୃଷ୍ଣ କେଶ । ଏହା କ'ଣ ମହାପ୍ରଭୁଙ୍କ କେଶ ବୋଲି ଆପଣ ସ୍ୱୀକାର କରିବେ ? ନା ଏ କେଶ କେଉଁ ମୋହିନୀ କନ୍ୟାର । ଆପଣ କ'ଣ ପୂର୍ବରୁ କେବେ ମହାପ୍ରଭୁଙ୍କ ମସ୍ତକରେ ଏପରି କେଶ ବିନ୍ୟାସ ଦେଖିଛନ୍ତି ନା ଆଜି ପ୍ରଥମ କରି ଦେଖୁଛନ୍ତି ମହାରାଜ ?

ଗଜପତି — ନାରୀର ଦୀର୍ଘ କୃଷ୍ଣକେଶ ? ପୁଣି ମହାବାହୁଙ୍କର ଛଡ଼ା ଫୁଲର ସ୍ତବକରୁ ? ଅସମ୍ଭବ । ରାଜଗୁରୁ ମହାଶୟ...ଏହି ମୁହୂର୍ତ୍ତରେ ମହାବାହୁଙ୍କ ଦର୍ଶନରେ ବାହାରିବି । ସାରଥିଙ୍କୁ ସମ୍ବାଦ ଦିଅ ।

(ଦୃଶ୍ୟାନ୍ତର)

(ଦେଖାଗଲା ବଡ଼ପଣ୍ଡା ପୂର୍ବବତ୍ ଛିଡ଼ା ହୋଇ କହୁଛନ୍ତି)

ବଡ଼ପଣ୍ଡା — ଶରଣ ରକ୍ଷଣ ମହାବାହୋ...ଏ ଅଧମକୁ କ୍ଷମା କର ହେ ପତିତ ପାବନ...ମୁଁ ଅଗାଧ ପାପରେ ମଗ୍ନ ହୋଇଯାଇଛି...ମୋତେ ଉଦ୍ଧାର କର ମହାବାହୋ...ମୋ ଦୋଷ ସ୍ୱୀକାର କରୁଛି । ଦଣ୍ଡ ଦେବାକୁ ଚାହଁ ଶ୍ରୀହସ୍ତରେ ଦଣ୍ଡ ଦିଅ ପ୍ରଭୁ...ହେଲେ ରାଜଦଣ୍ଡରୁ ରକ୍ଷା କର ମଣିମା... ଶପଥ କରୁଛି, ଜୀବନରେ କେବଳ ଭକ୍ତିରସ ବ୍ୟତୀତ ସୋମରସ ପାନ କରିବି ନାହିଁ କିମ୍ବା ପରନାରୀ ସଙ୍ଗ କରିବି ନାହିଁ...ମୋତେ ଉଦ୍ଧାର କରହେ ମହାବାହୋ...(ସାଷ୍ଟାଙ୍ଗ ହୋଇ ଶୋଇପଡ଼ିଲେ)

ନୈପଥ୍ୟରୁ — ମହାରାଜ ବିଜେ...

ଗଜପତି — ବଡ଼ପଣ୍ଡାଙ୍କୁ ଆଦେଶ କର । ମୁଁ ଏହିକ୍ଷଣି ମହାପ୍ରଭୁଙ୍କୁ ଦର୍ଶନ କରିବାକୁ ଚାହେଁ ।

ପଣ୍ଡା ୧ — (ଧାଇଁ ଆସି) ବଡ଼ପଣ୍ଡାଏ, ଭୀଷଣ ଅଘଟଣ ଘଟିଛି । ମହାରାଜ ସିଂହଦ୍ୱାରରେ ଥାଇ ପ୍ରଭୁଙ୍କୁ ଦର୍ଶନର ଇଚ୍ଛାବ୍ୟକ୍ତ କରିଛନ୍ତି ।

ବଡ଼ପଣ୍ଡା — ଘଡ଼ିକେ ପହର ତଳୁ ସେ ତ' ସିଂହଦ୍ୱାରରୁ ବିଦାୟ ନେଇ ରାଜ ଉଆସକୁ ଲେଉଟି ଯାଇଥିଲେ ?

ପଣ୍ଡା ୧ — ସେ କଥା ଜାଣିଛି, ହେଲେ କ୍ରୋଧାଗ୍ନିରେ ଜଳୁଛନ୍ତି ସିଏ । ଆଜି ନିଶ୍ଚୟ କିଛି ଅଘଟଣ ଘଟିବ ଏଠାରେ...

ବଡ଼ପଣ୍ଡା — ଯାହାହେବ ସବୁ ଇଚ୍ଛାମୟଙ୍କ ଇଚ୍ଛା । ଚାଲ, ମହାରାଜଙ୍କୁ ସ୍ୱାଗତ କରିବା । (ଚାଲିଲେ) ମହାରାଜଙ୍କର ଜୟ ହେଉ । ଶ୍ରୀମନ୍ଦିରକୁ ମହାରାଜଙ୍କର ସୁସ୍ୱାଗତମ୍ ।

ଗଜପତି — ବଡ଼ପଣ୍ଡା ମହାଶୟ...ମନେଅଛି ପ୍ରତ୍ୟୁଷରେ ଦେଇଥିଲେ ମୋତେ ମହାପ୍ରଭୁଙ୍କର ମସ୍ତକ ଲାଗି ଛଡ଼ା ତୁଳସୀର ସ୍ତବକ ?

ବଡ଼ପଣ୍ଡା — ଜ୍ଞାତ ଅଛି ମଣିମା...

ଗଜପତି — (ଦେଖାଇ) ଏଥର କୁହନ୍ତୁ ଏଇଟା ସେଇ ସ୍ତବକ କି ନୁହେଁ ?

ବଡ଼ପଣ୍ଡା — (ଦେଖି) ହଁ ମଣିମା...ସେଇ ସ୍ତବକ...

| | |
|---|---|
| ଗଜପତି | ସତ୍ୟ କରି କୁହନ୍ତୁ...ଏହା କ'ଣ ମଣିମାଙ୍କ ମସ୍ତକ ଲାଗି ସ୍ତବକ ? ମଣିମାଙ୍କ ମସ୍ତକରୁ ଆଣି ମୋତେ ଏହା ପ୍ରଦାନ କରିଥିଲେ ନା ଏହା କେଉଁ ନାରୀର କେଶ ଗଭାରୁ ଆଣି ଦେଇଥିଲେ ? |
| ବଡ଼ପଣ୍ଡା | (ମନେମନେ) ହେ ହରି । ଭକ୍ତ-ହୃଦ ବିହାରୀ...କିବା ବାକ୍ୟ କହିବି ମୁଁ ଏବେ ...ତବ ଇଚ୍ଛା ପୂର୍ଣ୍ଣ କର ହରି... । |
| ଗଜପତି | ନିରବ କାହିଁକି ? |
| ବଡ଼ପଣ୍ଡା | ସତ୍ୟ ସତ୍ୟ ତ୍ରିବାର ସତ୍ୟ କରୁଅଛି ମୁହିଁ । ମଣିମାଙ୍କ ମସ୍ତକ ଲାଗି ସ୍ତବକ ଏ । ମଣିମାଙ୍କ ମସ୍ତକରୁ ଆଣିବା ପରେ ଶ୍ରୀଛାମୁରେ କରିଛି ଅର୍ପଣ...କିନ୍ତୁ ଏ ପ୍ରଶ୍ନ, ଏ ସନ୍ଦେହ କାହିଁକି ମଣିମା ? |
| ଗଜପତି | ଆପଣ ମିଥ୍ୟାବାଦୀ । ଏଇ ଦେଖନ୍ତୁ...ଏଇ ଗଜରାରେ ଏକ ଦୀର୍ଘ କୃଷ୍ଣ କେଶ । ଆପଣଙ୍କ ବାକ୍ୟକୁ ଯଦି ବିଶ୍ୱାସ କରାଯାଏ, ତା'ହେଲେ ପ୍ରଭୁଙ୍କ ମସ୍ତକରେ ଏତେ ଦୀର୍ଘକେଶ କେବେଠୁ ହେଲାଣି ? ମୁଁ ମଧ୍ୟ ଦର୍ଶନ କରିବାକୁ ଚାହେଁ । ଚାଲନ୍ତୁ (ପ୍ରସ୍ଥାନ) |
| ବଡ଼ପଣ୍ଡା | ନିଜେ ଦଣ୍ଡ ଦିଅ ଦଣ୍ଡଧାରୀ...ରଖ ଅବା ମାର...କିନ୍ତୁ ତ୍ରାହି କର ରାଜଦଣ୍ଡଠାରୁ । |
| ଗଜପତି | (ମନ୍ଦିର ଭିତରେ) କି ଆଶ୍ଚର୍ଯ ? ମହାବାହୁଙ୍କ ମସ୍ତକରେ ବିମଣ୍ଡିତ ଦୀର୍ଘ କେଶରାଶି ? ଏହା କ'ଣ ରାତାରାତି ଉପୁଜିଛି ଅବା ଆପଣ ଏହାକୁ ସଜ୍ଜିତ କରି ମୋତେ ଭ୍ରମିତ କରିବାକୁ ଚାହୁଁଛନ୍ତି । |
| ବଡ଼ପଣ୍ଡା | ଏ କ'ଣ କହୁଛନ୍ତି ମଣିମା ? ମହାପ୍ରଭୁଙ୍କ ମସ୍ତକରେ କେଶ ବିନ୍ୟାସ ? ମୁଁ କରିଛି ଅବା ମହାପ୍ରଭୁ ନିଜେ ଧାରଣ କରିଛନ୍ତି...ମୁଁ କିପରି ଜାଣିବି ମହାରାଜ ? |
| ଗଜପତି | ନିଜର ମିଥ୍ୟା ଆଉ ଦୁର୍ବଳତାକୁ ଲୁଚାଇ ରଖିବା ଲାଗି ଏତେ ହୀନ ଚକ୍ରାନ୍ତ କରିପାରନ୍ତି ଆପଣ ? ଆପଣଙ୍କ ସଂପର୍କରେ ମୁଁ ସମସ୍ତ ସମ୍ବାଦ ସଂଗ୍ରହ କରିସାରିଛି । ଦିଅଁଙ୍କର ରାତ୍ରି ପହୁଡ଼ ପରେ ଆପଣ କେଉଁ ଆଡ଼େ ଯାଆନ୍ତି, କ'ଣ କରନ୍ତି, କେଉଁଠି ରାତ୍ରି ଯାପନ କରନ୍ତି...ସେ ସବୁ ସମ୍ବାଦ ମୁଁ ରଖିଛି । ଏବେ ଆପଣଙ୍କର ମିଥ୍ୟା ବଚନକୁ କେବେ ବି ବିଶ୍ୱାସ କରିବି ନାହିଁ । (ଅନ୍ୟ ପଣ୍ଡାମାନଙ୍କୁ) ପଣ୍ଡା ମହାଶୟ, ଆପଣ ମହାପ୍ରଭୁଙ୍କର ମସ୍ତକରୁ କେଶ ଟାଣି ବାହାର କରି ଆଣନ୍ତୁ । (ପଣ୍ଡାମାନେ ଗଲେ ଓ ଟାଣିଲେ) |
| ପଣ୍ଡାଏ | ଏହା ଖୁବ୍ ଶକ୍ତ ମଣିମା... |
| ଗଜପତି | ବଳ ପ୍ରୟୋଗ କରନ୍ତୁ । ବଡ଼ପଣ୍ଡା ମହାଶୟଙ୍କର ଛଳନା ବଳେ ଜଣା ପଡ଼ିଯିବ । (ପଣ୍ଡା ଭିଡ଼ି ଦେଲେ ରକ୍ତଧାର ବୋହିଲା) |
| ରାଜଗୁରୁ | କ୍ଷମା ମହାରାଜ । ରହିଯା'ନ୍ତୁ ପଣ୍ଡାଏ । ଏଇ ଦେଖନ୍ତୁ ମଣିମା ! ମହାପ୍ରଭୁଙ୍କ ମସ୍ତକରୁ ବୋହିଯାଏ ଶୋଣିତର ଧାର । |
| ଗଜପତି | ହେ ମହାପ୍ରଭୁ, ଏ କିବା ଲୀଳା ଆପଣଙ୍କର, ଏ କି ପରୀକ୍ଷା କଲେ ପ୍ରଭୁ ଆପଣେ ? ବଡ଼ପଣ୍ଡାଙ୍କର ମିଥ୍ୟାଚାର, ମିଥ୍ୟାବାଣୀକୁ ସତ୍ୟରେ ପ୍ରକାଶିତ କରିବା ପାଇଁ ନିଜେ କେଶ ଧାରଣ କରିନେଲେ ପ୍ରଭୁ । ମୁଁ ମହାପାପୀ...ଆପଣଙ୍କ ଲୀଳାକୁ ମିଥ୍ୟା ବୋଲି ଭାବିନେଇ ଶ୍ରୀଅଙ୍ଗକୁ ଅନେକ ଯାତନା ଦେଲି...ମୋତେ କ୍ଷମା କରନ୍ତୁ ପ୍ରଭୁ । (ପ୍ରଣାମ ହେଲେ) |
| ଜଗନ୍ନାଥ | (ନେପଥ୍ୟରୁ) ମୋର ପ୍ରତ୍ୟେକ ଇଚ୍ଛା ଏ ସୃଷ୍ଟିର ସଂସ୍କାର ଲାଗି ଉଦ୍ଦିଷ୍ଟ...ପ୍ରତ୍ୟେକ ଲୀଳା ମାନବର ମଙ୍ଗଳ ସାଧନ ଲାଗି...ତାକୁ ହୃଦ୍‌ବୋଧ କରି ଜୀବନରେ ପ୍ରତିପାଦନ କଲେ ଜଗତର କଲ୍ୟାଣ ହେବ । |

ଗଜପତି	ଆପଣ ଖୁବ୍ ଭାଗ୍ୟବାନ ବଡ଼ପଣ୍ଡାଏ...ମହାପ୍ରଭୁଙ୍କର ଏ ପ୍ରତ୍ୟକ୍ଷ ଲୀଳା ଆଜି ଆପଣଙ୍କୁ ରାଜଦଣ୍ଡରୁ ମୁକ୍ତ କରିଦେଲା । ଏବେ ବି ସମୟ ଅଛି, ସଂଯତ ହୋଇ ଯା'ନ୍ତୁ । ଚାଲନ୍ତୁ ରାଜଗୁରୁ ଆପଣେ ।(ପ୍ରସ୍ଥାନ)

ରାଜଗୁରୁ	ସାବଧାନ ବଡ଼ପଣ୍ଡାଏ, ଦାରୁ ଦିଅଁଙ୍କୁ ଦାରୁଖଣ୍ଡ ବୋଲି ମନେ କରିଛନ୍ତି ପରା ? ଜୀବନ୍ତ ଠାକୁର ଏ...ଦେଖିଲେ ତ ମୁହୂର୍ତ୍ତକରେ ରାଜଦଣ୍ଡର ପରିଣାମ ଦେଖାଇ ପଲକ ମାତ୍ରକେ ତହିଁରୁ ମୁକ୍ତ ମଧ କରିଦେଲେ । ବେଳହୁଁ ଗୋବିନ୍ଦ ସୁମର । ନହେଲେ ରାଜରୋଷର ଶିକାର ହେବାକୁ ବିଳମ୍ବ ଘଟିବ ନାହିଁ । (ପ୍ରସ୍ଥାନ)

(ପ୍ରଣାମୀ ବାବାଙ୍କ ପୂର୍ବ ଦୃଶ୍ୟକୁ ଦୃଶ୍ୟାନ୍ତର)

ବାବାଜୀ	ଶୁଣିଲେ ତ ବଡ଼ପଣ୍ଡା ମହାଶୟ ? ଏଭଳି ପାପୀଙ୍କୁ କ୍ଷମା କରି ମହାପ୍ରଭୋ ଯଦି ଭକ୍ତ ଭାବେ କୋଳେଇ ନେଇ ପାରନ୍ତି, ତା'ହେଲେ ମୋତେ କ୍ଷମା ନକରିବେ କାହିଁକି ? ଏଣୁ ମୁଁ ଅବଶ୍ୟ ନିଷ୍ଚୟ ଚାଲିବି (ଚାଲିଲେ)

ପଣ୍ଡା ୧	ଏବେ କ'ଣ କରିବା ବଡ଼ପଣ୍ଡା ମହାଶୟ ?

ବଡ଼ପଣ୍ଡା	ଚାଲ ଚାଲ...ଶୀଘ୍ର ଫେରିଯିବା (ପଣ୍ଡାମାନେ ଧାଇଁଲେ ଓ ଡାକ ଦେଲେ) ସିଂହଦ୍ୱାରର ଫାଟକ ବନ୍ଦ କରି ଦିଅରେ ଦ୍ୱାରପାଳ (ଫାଟକ ବନ୍ଦ ହେଲା) ଏଇଠି ସମସ୍ତେ ଜଗିରୁହ ଯେମିତି ବାବାଜୀ ମନ୍ଦିର ପ୍ରବେଶ କରିନପାରନ୍ତି ।

ପଣ୍ଡା ୧	ଗଜପତି ମହାରାଜାଙ୍କୁ ସମ୍ବାଦ ଭେଜି ଦେଲେ ଉଚିତ ହୁଅନ୍ତା ।

ପଣ୍ଡା ୨	ଠିକ୍ କଥା । କାଳେ କିଛି ଅଘଟଣ ଘଟିବ ଏଣୁ ବେଳଥାଉଁ ଶ୍ରୀଛାମୁରେ ପାଇକ ପିଆଦା ଲୋଡ଼ି ଦେଲେ କେମିତି ହୁଅନ୍ତା ?

ବଡ଼ପଣ୍ଡା	: ଦେଖହେ ପଣ୍ଡାଏ...ସେ ହେଲେ ଜଣେ ଏକବସ୍ତ୍ରୀ ସନ୍ୟାସୀ...ପାଖରେ ଲୁଗାପଟା ଖଣ୍ଡିଏ ମଧ ଠିକ୍ ଭାବରେ ନାହିଁ । ସେ କ'ଣ ଆମ ସହିତ ହାତାହାତି ହେବେ ବୋଲି ଭାବୁଛ ? ସେ କଥା ମୁଁ ଭାବୁନି । ଧୈର୍ଯ୍ୟ ଧର ତାଙ୍କର ମତିଗତି ଦେଖି ଶ୍ରୀଛାମୁରେ ଖବର କରିବା । ପାଇକ ପିଆଦା ଲୋଡ଼ିବା ।

ବାବାଜୀ	(ପ୍ରବେଶ) ଦେଖନ୍ତୁ ବଡ଼ପଣ୍ଡା ମହାଶୟ, ମୋତେ ଯଦି ପାଇକ ପିଆଦା ଲଗାଇ ଶାସନ କରିବାକୁ ଚାହାଁନ୍ତି କରନ୍ତୁ...ବନ୍ଦୀ କରି ଶୂଳୀ ଦେବାକୁ ଚାହାଁନ୍ତି ଦିଅନ୍ତୁ...ମାତ୍ର ମୋର ମିନତି ମୋତେ ଟିକିଏ ସେଇ ବିଶ୍ୱନିୟନ୍ତାଙ୍କ ଚକାଡୋଳା ରୂପ ଦର୍ଶନ କରାଇ ଦିଅନ୍ତୁ । ତେଣିକି ଯାହା ଯାତନା ଦେବାକଥା ମୁଁ ହସିହସି ସହିଯିବି ।

ବଡ଼ପଣ୍ଡା	ଆପଣ ବୁଝୁନାହାନ୍ତି ବାବାଜୀ ମହାରାଜ, ଆପଣ କ'ଣ ଆମର ଶତ୍ରୁ ? କିନ୍ତୁ ଆମେ ପ୍ରଭୁଙ୍କର ଶ୍ରୀମୁଖ ଆଦେଶକୁ ତ' ଅମାନ୍ୟ କରିପାରିବୁ ନାହିଁ...ଆମକୁ କ୍ଷମା କରନ୍ତୁ ।

ପଣ୍ଡା ୧	ଅନ୍ୟ ଭକ୍ତସବୁ ଶ୍ରୀମନ୍ଦିରକୁ କିପରି ଯିବେ ପଣ୍ଡାଏ ?

ବଡ଼ପଣ୍ଡା	ଅନ୍ୟ ଦୁଆର ଦେଇ ଯିବାକୁ କୁହ ।

ବାବାଜୀ	ଠିକ୍ ଅଛି, ମହାପ୍ରଭୁ ଯଦି ମୋତେ ମନ୍ଦିର ପ୍ରବେଶ ବାରଣ କରିଛନ୍ତି ତା'ହେଲେ ମୁଁ ମଧ ଯିବାକୁ ଚାହୁଁ ନାହିଁ । ଆପଣମାନେ ଦୟାକରି ସିଂହଦ୍ୱାର ଖୋଲି ଦେଲେ ମୁଁ ଏଇ ଅରୁଣସ୍ତମ୍ଭ ପଛରେ ଥାଇ ପ୍ରଭୁଙ୍କର ପତିତପାବନ ରୂପ ଦର୍ଶନ କରି ଆନନ୍ଦ ମନରେ ବ୍ରତ ଉଦ୍‌ଯାପନ କରି ଫେରିଯିବି ।

ବଡ଼ପଣ୍ଡା	ନା, ନା, ବାବାଜୀ ମହାରାଜ, ସେ କଥା ମଧ ହୋଇପାରିବ ନାହିଁ, କାରଣ ପ୍ରଭୋ ଆପଣଙ୍କ ମୁଖ ଦର୍ଶନ କରିବେ ନାହିଁ କହି ମୋତେ ସିଂହଦ୍ୱାର ବନ୍ଦ କରିବାର ଆଦେଶ ଦେଇଛନ୍ତି ।

| | |
|---|---|
| ବାବାଜୀ | ଏତେ କ୍ରୋଧ ? ଏତେ ଘୃଣା ? ଏହାତ ଏ ଜନ୍ମର କର୍ମଫଳ ନୁହେଁ । ନିଶ୍ଚୟ ପୂର୍ବଜନ୍ମର ଫଳ । ତଥାପି ଜାଣିବାକୁ ହେବ ଗୋପନ ରହସ୍ୟ, ନ ହେଲେ ବା ପ୍ରତିକାର କିଭଳି କରିବି ? ଶୁଣନ୍ତୁ ବଡ଼ପଣ୍ଡା ଆପଣେ, ଆପଣଙ୍କ କଥା ଅନୁସାରେ ମୁଁ ଏଇ ଅରୁଣସ୍ତମ୍ଭ ପାଖରେ ଅଟକି ରହିଲି । ଆପଣ ଶ୍ରୀଛାମୁରେ ଗୁହାରୀ କରି ମୋ ଅପରାଧ ଏବଂ ତା'ର ନିରାକରଣର ମାର୍ଗ ଦର୍ଶାଇ ଦିଅନ୍ତୁ । ସେତିକି ହେଲେ ମଧ ମୁଁ ସନ୍ତୁଷ୍ଟ ହୋଇ ଫେରିଯିବି । ଅନ୍ୟଥା ଅନ୍ନଜଳ ଗ୍ରହଣ ନ କରି ମୁଁ ଏଇଠି ପ୍ରଭୁଙ୍କ ଅରୁଣସ୍ତମ୍ଭ ପଛରେ ପଡ଼ିପଡ଼ି ଶ୍ରୀଛାମୁଙ୍କ ସିଂହଦ୍ୱାରରେ ଜୀବନ ଛାଡ଼ିବି । |
| ବଡ଼ପଣ୍ଡା | ଠିକ୍ ଅଛି, ଆଜି ଶ୍ରୀଛାମୁଙ୍କ ପହଡ଼ ପରେ ଗୁହାରୀ କରିବି । ଯଦି କୃପା ହୁଏ କାଲି ନିଶ୍ଚୟ ଆପଣଙ୍କ ସମସ୍ତ ପ୍ରଶ୍ନର ଉତ୍ତର ପାଇଯିବେ...ଚାଲନ୍ତୁ ସମସ୍ତେ (ପ୍ରସ୍ଥାନ) |
| ବାବାଜୀ | : (ଗୀତ ଗାଇଲେ) (ରାତ୍ର ଆସନ୍ନ । ଦେଖାଗଲା ଦେବଦାସୀ ଆସୁଛନ୍ତି) ।<br>ମାତା, ପ୍ରଭୁଙ୍କ ସମ୍ମୁଖରେ ଆଜି ଶ୍ରୀ ଗୀତଗୋବିନ୍ଦର କେଉଁ ପଦ ମାର୍ଜଣା କରିବେ ? |
| ଦେବଦାସୀ | : ଚନ୍ଦନ ଚର୍ଚ୍ଚିତ ନୀଳ କଳେବର ପୀତ ବସନ ବନମାଳୀ...(ପ୍ରସ୍ଥାନ । ଦେଖାଗଲା ବାବାଜୀ ଗୀତ ଗାଇଲେ, ଦେବାଦସୀ ମନ୍ଦିର ମଧ୍ୟରେ ନୃତ୍ୟ କଲେ । ନୃତ୍ୟ ପରେ ବାବାଜୀ ପଦ୍ମାସନରେ ବସି ଧ୍ୟାନ ଯୋଗରେ ଲୀନ ହେଲେ । ସକାଳ ହେଲା) |
| ବାବାଜୀ | ଜୟ ଜଗନ୍ନାଥଙ୍କର ଜୟ...(ବଡ଼ପଣ୍ଡା ପ୍ରବେଶ କଲେ ଅନ୍ୟ ପଣ୍ଡାମାନଙ୍କ ସହ) ପ୍ରଭୁଙ୍କର ସ୍ୱପ୍ନାଦେଶ ହେଲା ଅବା କିଛି ? |
| ବଡ଼ପଣ୍ଡା | ନା, ବାବାଜୀ ମହାରାଜ । ଗୁହାରୀ କରିଲି ଶ୍ରୀଛାମୁରେ...କିବା ଦୋଷେ ସନ୍ୟାସୀ ଦେବତାଙ୍କୁ ଏ କଠୋର ଆଦେଶ କରିଛନ୍ତି ପ୍ରଭୁ ? କୃପା କରି ମାର୍ଗ ଦର୍ଶନ କରନ୍ତୁ । କିନ୍ତୁ ମନେହୁଏ ଜଣାଣ ମୋହର ନ ଘେନିଲେ ପ୍ରଭୋ । |
| ବାବାଜୀ | ଅପେକ୍ଷା କରିଛି ତେବେ ଏହିଠାରେ ମୃତ୍ୟୁ ଅପେକ୍ଷାରେ, ପ୍ରଭୁଙ୍କର ଗୁଣକୁ ସୁମରି...ଜୟ ଜଗନ୍ନାଥ... |
| ଘୋଷକ | ସାବଧାନ...ସାବଧାନ...ନବକୋଟି କର୍ଣ୍ଣାଟକ...ଶ୍ରୀ ଶ୍ରୀ ଗଜପତି ମହାରାଜ ବିଜେ... |
| ସମସ୍ତେ | ଜୟ ଗଜପତି ମହାରାଜଙ୍କର ଜୟ...ଜୟ ଗଜପତି ମହାରାଜଙ୍କର ଜୟ... |
| ବଡ଼ପଣ୍ଡା | ଜୟ ଜଗନ୍ନାଥ ଏଇମାତ୍ର ଆପଣଙ୍କ ନିକଟକୁ ସମ୍ବାଦ ପଠାଇ ପ୍ରତିକାର ଲୋଡ଼ିଥାନ୍ତି ମଣିମା... |
| ଗଜପତି | କାଲିଠାରୁ ସିଂହଦ୍ୱାର ବନ୍ଦ ରଖିଛନ୍ତି, ଅଥଚ ମୋତେ ଏତାଲା କରି ନାହାନ୍ତି କାହିଁକି ? |
| ବଡ଼ପଣ୍ଡା | ଭାବିଥିଲି...ପ୍ରଭୁ ସ୍ୱପ୍ନାଦେଶ ଦେଇ ସମସ୍ୟାର ସମାଧାନ କରିଦେବେ ବୋଲି । |
| ଗଜପତି | ପ୍ରଭୁ କ'ଣ ଆପଣଙ୍କ ଆଜ୍ଞାଧୀନ ? ଆପଣ ଯାହା ଚାହିଁବେ ପ୍ରଭୁ ସ୍ୱପ୍ନାଦେଶ ଦେଇ ତାହା ସମାଧାନ କରିବାକୁ ବାଧ୍ୟ ହେବେ ? ମନେରଖନ୍ତୁ, ସେ କେବଳ ଭକ୍ତର ଦାସ । ପ୍ରଭୁଙ୍କର ଭକ୍ତ ହୋଇ ଆପଣଙ୍କ ଅହଙ୍କାରତ କିଛି କମ୍ ନୁହେଁ ଦେଖୁଛି ବଡ଼ପଣ୍ଡା ମହାଶୟ । ଏଣିକି ଆପଣ ସାବଧାନ ରହିବେ । ଶୁଣନ୍ତୁ ବାବାଜୀ ମହାରାଜ, ଆପଣଙ୍କ ସମସ୍ୟା ଖୁବ୍ ଜଟିଳ । ଏକଥା ସତ୍ୟ ଯେ ଆପଣ ଏ ଜନ୍ମରେ କିଛି ପାପ କରିନାହାନ୍ତି, ଯାହାପାଇଁ ଆପଣଙ୍କୁ ଦଣ୍ଡିତ ହେବାକୁ ପଡ଼ିପାରେ... |
| ବାବାଜୀ | ତା'ହେଲେ ମୋ' ପ୍ରତି ପ୍ରଭୁଙ୍କର ଏପରି କଠୋର ଆଦେଶ କାହିଁକି ? |
| ଗଜପତି | ମହାରାଣୀ ଗାନ୍ଧାରୀ ଯେମିତି ତାଙ୍କର ୧୦୦ଜନ୍ମ ତଳର ଅନିଚ୍ଛାକୃତ ସର୍ପଅଣ୍ଡା ଦଳନର ପାପ ପାଇଁ ଗାନ୍ଧାରୀ ଜନ୍ମରେ ଶତପୁତ୍ରର ଶୋକ ଭୋଗ କରିଥିଲେ, ଆପଣଙ୍କ ଏ କର୍ମ ମଧ ଅନେକ ଜନ୍ମ ପୂର୍ବରେ... ଯାହା ଅତ୍ୟନ୍ତ ଦୁଃଖଦ ଓ ବ୍ୟଥାଦାୟକ । |
| ବାବାଜୀ | କିନ୍ତୁ ଆପଣ ଏ କଥା ଜାଣିଲେ କିପରି ? |

| | |
|---|---|
| ଗଜପତି | କାଲି ରାତ୍ରିରେ ପ୍ରଭୋ ଦୟାକରି ମୋତେ ସ୍ୱପ୍ନାଦେଶ ଦେଇ ଆପଣଙ୍କୁ ମହାବାହୁଙ୍କ ଶ୍ରୀମୁଖ ଦର୍ଶନରୁ ନିବୃତ୍ତ ରହିବା ପାଇଁ ନିର୍ଦ୍ଦେଶ ଦେବାକୁ ଏଠାକୁ ପଠାଇଛନ୍ତି । |
| ବାବାଜୀ | ଠିକ୍ ଅଛି, ଯେହେତୁ ଆପଣ ପ୍ରଭୁଙ୍କର ପ୍ରଥମ ଓ ପ୍ରଧାନ ସେବକ । ଆପଣଙ୍କ ଶ୍ରୀମୁଖ ବାକ୍ୟ ପ୍ରଭୁଙ୍କ ଅମୃତବାଣୀ ସଦୃଶ୍ୟ । ଆପଣ କୁହନ୍ତୁ ମୋର ପାପର କାରଣ ଓ ତା'ର ପ୍ରତିକାର । |
| ଗଜପତି | ଶୁଣନ୍ତୁ ତା'ହେଲେ... |
| ବଡ଼ପଣ୍ଡା | ଜୟ ଜୟ ମହାପ୍ରଭୁ ଜଗନ୍ନାଥ ସ୍ୱାମୀ କି ...ଜୟ । |
| ଗଜପତି | ଏହା ଆପଣଙ୍କର ହଜାରେ କି ଲକ୍ଷେ ଜନ୍ମ ତଳର କାହାଣୀ...ଦ୍ୱାପର ଯୁଗରେ ମହାଭାରତ ଯୁଦ୍ଧ ସମୟର କାହାଣୀ...ସେଦିନ ପିତାମହ ଭୀଷ୍ମ ଅର୍ଜୁନଙ୍କ ରଥର ସମ୍ମୁଖୀନ ହୋଇ ଅର୍ଜୁନଙ୍କ ସାରଥି ଶ୍ରୀକୃଷ୍ଣଙ୍କୁ ଘନଘନ ଆକ୍ରମଣ ଆରମ୍ଭ କରିଦେଲେ... |
| | (ଦେଖାଗଲା ମହାଭାରତ ଯୁଦ୍ଧର ଦୃଶ୍ୟ) |
| ଶ୍ରୀକୃଷ୍ଣ | ପିତାମହ, ମୁଁ ସେନାପତି ନୁହେଁ, ସାରଥି ମାତ୍ର । ପୁଣି ନିରସ୍ତ୍ର...ମୋତେ ଆକ୍ରମଣ କରିବା ଆପଣଙ୍କ ଭଳି ମହାରଥି ସେନାପତିଙ୍କ ପକ୍ଷରେ ଅଶୋଭନୀୟ ଏବଂ ଯୁଦ୍ଧ ନିୟମର ଉଲଘଂନ ମଧ୍ୟ । |
| ପିତାମହ | ମୁଁ ଆଜି କେବଳ ଯୁଦ୍ଧରେ ବିଜୟୀ ହେବାର ଲକ୍ଷ୍ୟ ରଖି ଆକ୍ରମଣ କରୁଛି ଏବଂ ଛଦ୍ମବେଶୀ ସେନାପତିଙ୍କୁ ହିଁ ଆକ୍ରମଣ କରୁଛି । ସିଏ ନିରସ୍ତ୍ର ନୁହଁନ୍ତି । ଆଜି ପର୍ଯ୍ୟନ୍ତ ଅଦୃଶ୍ୟରେ ସୁଦର୍ଶନ ଚକ୍ର ଧରି ଯୁଦ୍ଧ ସଞ୍ଚାଳନ କରୁଛନ୍ତି । |
| ଶ୍ରୀକୃଷ୍ଣ | ଏହା ମିଥ୍ୟାଳାପ । |
| ପିତାମହ | ତା'ହେଲେ ବେଲାଲସେନଙ୍କୁ ପଚାରିବା ଚାଲନ୍ତୁ । |
| ଶ୍ରୀକୃଷ୍ଣ | ଯୁଦ୍ଧର ନିୟମ ସବୁ ଜଳାଞ୍ଜଳି ଦେଇ ସାରଥିକୁ ଆକ୍ରମଣ କରିବା କ'ଣ ଉଚିତ ? |
| ପିତାମହ | ଗତ ୧୧ ଦିନର ଯୁଦ୍ଧ ଭିତରେ ଦୁଇପକ୍ଷ ଯୋଦ୍ଧାଗଣ ନିୟମକୁ ବହୁବାର ଉଲଂଘନ କରିସାରିଲେଣି । ଏଣୁ ଏବେ ସେ ସବୁ ନିରର୍ଥକ ତର୍କ । |
| ଶ୍ରୀକୃଷ୍ଣ | ପାର୍ଥ, ପିତାମହଙ୍କ ବାଣକୁ ପ୍ରତିହତ କର ? |
| ଅର୍ଜୁନ | ପିତାମହ ମୋତେ ଲକ୍ଷ୍ୟ କରି ଶର ସନ୍ଧାନ କରୁନାହାନ୍ତି । ତାଙ୍କ ଶରକୁ ପ୍ରତିହତ କରିବି କିପରି ? ତା'ଛଡ଼ା ସମୁଦ୍ରର ଢେଉଭଳି ଏ ବାଣ ସବୁ ଶତ ଚେଷ୍ଟା ସତ୍ତ୍ୱେ ମଧ୍ୟ ପରାହତ କରାଯାଇ ପାରୁନାହିଁ । ଆପଣ ବରଂ ରଥର ଗତିପଥ ବଦଳାଇ ଦିଅନ୍ତୁ ସଖା... |
| ପିତାମହ | ପୃଷ୍ଠ ଭଙ୍ଗ ଦେଇ ଆଜି କେହି ମୋର ସମ୍ମୁଖରୁ ଖସିଯାଇ ପାରିବେ ନାହିଁ । |
| ଶ୍ରୀକୃଷ୍ଣ | ପିତାମହ ଯୁଦ୍ଧରେ ଅସ୍ତ୍ର ଧରିବି ନାହିଁ ବୋଲି ମୁଁ କରିଛି ଶପଥ । |
| ପିତାମହ | କିନ୍ତୁ ମୁଁ ଜାଣେ ତୁମେ ସୁଦର୍ଶନ ଧାରଣ କରିଆସିଛ, ମାତ୍ର ଅଦୃଶ୍ୟରେ...ଆଜି ପାରୁଛ ଯଦି ସୁଦୃଶ୍ୟ ଭାବରେ ସୁଦର୍ଶନ ଧାରଣ କରି ମୋତେ ସମ୍ମୁଖୀନ ହୁଅ । |
| ଅର୍ଜୁନ | ପିତାମହ, ସାରଥିଙ୍କୁ ଛାଡ଼ି ମୋତେ ଆକ୍ରମଣ କରନ୍ତୁ...ମୁଁ ପ୍ରସ୍ତୁତ... |
| ପିତାମହ | କିଏ ସାରଥି ଆଉ କିଏ ସେନାପତି ? ମୁଁ ଯାହାକୁ ଆକ୍ରମଣ କରୁଛି ସେ ହିଁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ସେନା ନାୟକ । ଆଜି ମୋ ସମ୍ମୁଖରୁ ସେ କେବେ ତ୍ରାହି ପାଇବେ ନାହିଁ । |
| ଅର୍ଜୁନ | ଏବେ କ'ଣ ବା ଉପାୟ ସଖା ? ଆପଣ ଆଦେଶ କଲେ ମୁଁ ବ୍ରହ୍ମାସ୍ତ୍ରର ପ୍ରୟୋଗ କରିବି । |
| ଶ୍ରୀକୃଷ୍ଣ | ନା ନା...ଏବେ ବ୍ରହ୍ମାସ୍ତ୍ର ପ୍ରୟୋଗର ଉପଯୁକ୍ତ ସମୟ ନୁହେଁ । ତା'ଛଡ଼ା ବ୍ରହ୍ମାସ୍ତ୍ରକୁ ନିରସ୍ତ୍ର କରିବାର କୌଶଳ ମଧ୍ୟ ପିତାମହଙ୍କୁ ଭଲଭାବେ ଜଣା । ତେଣୁ ଅଚିରେ ତାହା ନିରର୍ଥକ ହେବ । ଆଗକୁ |

ତୁମେ ହିଁ ବିପଦଗ୍ରସ୍ତ ହେବ ।

ପିତାମହ ହେ କେଶବ, ପାର ଯଦି ନିରସ୍ତ କର ମୋର ଏ ଅସ୍ତ୍ର...

ଅର୍ଜୁନ ସଖା ଏ କି ଅସ୍ତ୍ର ?

ଶ୍ରୀକୃଷ୍ଣ ବୈଷ୍ଣବାସ୍ତ୍ର...କେବଳ ବିଷ୍ଣୁଙ୍କ ବ୍ୟତୀତ ଏଇ ଅସ୍ତ୍ର ନିଷ୍କ୍ରିୟ କରିବା ଅସମ୍ଭବ । ସୁଦର୍ଶନ ! ପାର ଯଦି ନିଷ୍କ୍ରିୟ କର ଏ ଅସ୍ତ୍ର ।

ସୁଦର୍ଶନ : ପ୍ରଭୋ, ଭକ୍ତ ଆଉ ଭଗବାନଙ୍କର ଏଇ ମାନ ଅଭିମାନର ଯୁଦ୍ଧ ଭିତରକୁ ମୋତେ କାହିଁକି ଟାଣି ନେଉଛନ୍ତି ହେ ଭକ୍ତ ବତ୍ସଳ ?

ଶ୍ରୀକୃଷ୍ଣ : (ରଥରୁ ଡେଇଁ ଭଙ୍ଗା ରଥଚକ୍ର ଧରି) ଅସ୍ତ୍ର ସମ୍ବରଣ କରନ୍ତୁ ପିତାମହ...ନ'ହେଲେ ମୁଁ ଅସ୍ତ୍ର ଧରିବାକୁ ବାଧ ହେବି ଏବେ । (ରଥରୁ ଡେଇଁ ଭଙ୍ଗା ରଥଚକ୍ର ଧରିଲେ)

ପିତାମହ (ଅସ୍ତ୍ର ତ୍ୟାଗ କରି ପିତାମହ ହାତ ଯୋଡ଼ିଲେ) ମହାଭାରତ ଯୁଦ୍ଧରେ ଅସ୍ତ୍ର ଧରିବ ନାହିଁ ବୋଲି ଶପଥ କରିଥିଲ ବାସୁଦେବ...ସେ ଶପଥ ଭଙ୍ଗ ହେଲା ଆଜି । ଛଳନାରେ ପଞ୍ଚବାଣ ହରଣ କରି ଏହି ଭୀଷ୍ମର ଶପଥ ଜୀବନରେ ପ୍ରଥମଥର ପାଇଁ ଭାଙ୍ଗିଥିଲ ତୁମେ । ତୁମର ଶପଥ ଭଙ୍ଗକରି ଆଜି ମୁହିଁ ପ୍ରତିଶୋଧ ନେଇଛି ତାହାର । ତୁମ୍ଭ ସାଥେ ଯୁଦ୍ଧ କରିବାର କାମନା କେବେ ବି ମୋହର ନଥିଲା ବା ନାହିଁ । ପ୍ରତିଜ୍ଞା ମୋହର ଭାଙ୍ଗିଥିଲ ଯେଣୁ, ତୁମ୍ଭର ପ୍ରତିଜ୍ଞା ଭଙ୍ଗ କରିବାକୁ ଆଜି ମୁହିଁ କରିଥିଲି ବିଧିବଦ୍ଧ ଆକ୍ରମଣ । ପ୍ରଭୁପଣେ ତୁମ୍ଭ କଳଙ୍କ ଲାଗିଲା ବୋଲି କ୍ଷମା କର ମୋତେ ଭାବଗ୍ରାହୀ...

ବାଜାବାଲା (ବାଜାବଜେଇ) ପ୍ରଭୁ ବୋଲି କହୁଛ ନିଜକୁ...ଲଜ୍ୟା ନାହିଁ ଯାହା, ପ୍ରତିଜ୍ଞା ପୂରଣ କରିପାରୁନାହିଁ ଯଦି...ପ୍ରଭୁ ବୋଲି ବୋଲାଉଛ କିଆଁ ? ଲାଜ ଯଦି ଲାଗୁଥାଇ ପଣତ ଘୋଡ଼େଇ ହେଉନ କାହିଁକି ? ଦେଖ ଦେଖ ସର୍ବେ ଏଇ ପ୍ରଭୁଙ୍କ ମୁହଁକୁ, ଲାଜରେ କାଳିଆ ମୁହଁ ହେଲାଣି ତ୍ରିପଣ୍ଡ କଳା...
ଲାଜ ନାହିଁ ଯାହାରେ, କି କହିବା ତା'ହାରେ
ଭଗବାନ ବୋଲି ବୋଲାଇ ହେଉଛ, ଦେବିକି ଏଥିରେ ପାହାରେ ?
(ବାଜା ବଜାଇବା ବାଡ଼ିରେ କେଞ୍ଚ ଦେବା) ଦେବିକି ଏଥିରେ ପାହାରେ ?

ଅର୍ଜୁନ ଏହାକୁ ଆଜି ଭୀଷଣ ଶାସ୍ତି ଦେବାକୁ ପଡ଼ିବ । ପାଶାଣ୍ଡ ବର୍ବର ।

ଶ୍ରୀକୃଷ୍ଣ ଶାନ୍ତ ହୁଅ ପାର୍ଥ...ବାଦ୍ୟକାର ଅବଧ୍ୟ, ତାହାର ଉଚିତ ଶାସ୍ତି ତୁମେ ନୁହେଁ...ନିୟତି କରିବ

ବାଜାବାଲା ନିୟତି କିଏ ? ଦେଖିଚ କି ତାକୁ ? ମାରିବାକୁ ଚାହଁ ଯଦି ନିଜେ ମାରୁ ନାହିଁ ? ପ୍ରଭୁପଣେ ତୁମ ଡିଣ୍ଡିମ ବାଜିବ ? ଧନ୍ୟ ଧନ୍ୟ କହିବେ ସଭିଏଁ । କାଳ କାଳକୁ ତୁମର ଯଶମାନ ହେବ । ପ୍ରଭୁ ନାମଧାରୀ ଭଣ୍ଡ ଜଣେ କରିଥିଲେ ବାଦ୍ୟକାର ବଧ ...ହାଃ ହାଃ ହାଃ...

(ଦୃଶ୍ୟାନ୍ତର)

ଗଜପତି ସେହି ବାଦ୍ୟକାର ଥିଲେ ଆପଣ । ସେହି ଦିନଠାରୁ ପ୍ରଭୁ ଆପଣଙ୍କ ଉପରେ ରୁଷ୍ଟ ହୋଇଛନ୍ତି । ଆପଣଙ୍କ ମୁଖ ଦର୍ଶନ କରିବାକୁ ସେ ଚାହାନ୍ତି ନାହିଁ । ଦୟାକରି ଆପଣ ଫେରି ଯାଆନ୍ତୁ ।

ବାବାଜୀ ଆଉ କିଛି ଚିନ୍ତା ନାହିଁ ମୋର । ମହାପ୍ରଭୁଙ୍କର ଜୟ ହେଉ...ଧନ୍ୟ ହେଲି ମୁହିଁ, ଧନ୍ୟ ତୁମେ କରୁଣା ସାଗର ହରି...ଧନ୍ୟ କଲ ମୋତେ...(ନାଚିଲେ)

ଗଜପତି ଆପଣ ଏତେ ଆନନ୍ଦିତ କାହିଁକି ବାବାଜୀ ?

ବାବାଜୀ ଦ୍ୱାପର ଯୁଗରୁ ଆଜିଯାଏ ଯିଏ ମୋ ଉପରେ ଶୁଭଦୃଷ୍ଟି ରଖିଆସିଛନ୍ତି, ତାଙ୍କୁ ଅବା ମୁଁ ଅଧିକ ଦର୍ଶନ କରିବି କ'ଣ ? ତାଙ୍କର ଏମିତି ଶୁଭଦୃଷ୍ଟି ଥିଲେ, ଆଉ ଲକ୍ଷେ ଜନ୍ମ ଗଲେ ପଛେ ଯାଉ, ତା'ପରେ

ଅବଶ୍ୟ ଦିନେ ଭକ୍ତଭାବେ କୋଳାଇବେ ମୋତେ । ଶପଥ କରିଲି ଆଜିଠାରୁ ଏ ଜନ୍ମରେ ବଞ୍ଚିଥିବା ଥିବାଯାକେ ଅନ୍ନଦାନା ଗ୍ରହଣ କରିବି ନାହିଁ କେବେ...ଯେଉଁ ଦିନ ମହାପ୍ରଭୁ ବନ୍ଧୁ ମହାନ୍ତିଙ୍କୁ ଯାଚିଦେଲା ଭଳି ଯାଚି ଦେବେ ଅନ୍ନ ଓ ଦର୍ଶନ, ସେଇ ଦିନ ଅନ୍ନ ମହାପ୍ରସାଦ ମୁଁ କରିବି ଗ୍ରହଣ । ଜୟ ଭାବଗ୍ରାହୀ ଭକ୍ତ ବତ୍ସଳ ମହାପ୍ରଭୁ ଜଗନ୍ନାଥଙ୍କର ଜୟ...

ଗୀତ — ଦୀନବନ୍ଧୁ, ଏଇ ଅଳି ଶ୍ରୀ ଛାମୁରେ ଶ୍ରୀରଙ୍ଗାଚରଣ ସେବାରେ ମୋ ମନ
ରହିଥାଉ ନିରନ୍ତରେ...

(ଦୃଶ୍ୟାନ୍ତର)

(ଗ୍ରାମର ଭାଗବତ ଟୁଂଗୀ)

ଚ:ପଣ୍ଡା — ଦୁଷ୍ଟ ନବାରିବେ, ସନ୍ଥଙ୍କୁ ରଖିବେ ପାଳିବେ ଜନ ପରଜା
କଳିଯୁଗ ଶେଷେ ସତ୍ୟ ଉପୁଜିବ, ଅନାଦି ହୋଇବେ ରାଜା (୧)
ଗ୍ରାମ ଭାଙ୍ଗି ଯିବ, ରାଜ୍ୟ ଭାଙ୍ଗିଯିବ, ଦେଶ ଭାଙ୍ଗିଯିବ ଜାଣ
ଗ୍ରାମ ମଧ୍ୟେ ଦୁଇଚାରି ଜଣ ଥିବେ ଉଚ୍ଚାରି ମହିମା ନାମ (୨)

ପୂଜାରୀ — କରି କରାଉ ଥାଏ ମୁହିଁ, ମୋ ବିନୁ ଅନ୍ୟ ଗତି ନାହିଁ...ଦେଖିଲ ତ' ? ଜନ୍ମ ଜନ୍ମାନ୍ତରରେ ଯଦି ବିଶ୍ୱାସ ଥାଏ ତା'ହେଲେ ସମର୍ପଣ ଭାବ ନେଇ ଆପଣା ଆପଣା କର୍ମ କରିଚାଲ । ଯେମିତି କର୍ମ, ସେମିତି ଫଳ...ନିଶ୍ଚୟ ପାଇବ । ସେ ବ୍ରାହ୍ମଣ ହୁଅନ୍ତୁ ଅବା ଚଣ୍ଡାଳ...ମାନବର ଧର୍ମ ହେଲା - ଜୀବେ ଦୟା, ସତ୍ୟ କଥନ ଏବଂ ପରର ସେବା...ଅନ୍ୟର ବିଶ୍ୱାସକୁ ଧୋକା ଦେଇ ଯିଏ ବଞ୍ଚିବାକୁ ଚାହେଁ ତାକୁ ବିଶ୍ୱାସ ଘାତକ କୁହାଯାଏ...ଆଉ ବିଶ୍ୱାସ ଘାତ ଠାରୁ ବଡ଼ ମହାପାପ ନାହିଁ, କାରଣ ନରହତ୍ୟାକାରୀ ଜଣେ ଦୁଇ ଜଣକୁ ମାରିପାରେ...କିନ୍ତୁ ବିଶ୍ୱାସର ହତ୍ୟାକାରୀ ହଜାର ହଜାର ଲୋକଙ୍କର ବିଶ୍ୱାସକୁ ହତ୍ୟା କରିଥାଏ । ତେଣୁ ତା'ର ଫଳ ନର୍କ ଭୋଗ ବ୍ୟତୀତ ଆଉ କିଛି ନୁହେଁ । ନିୟତି ହାତରେ ସେ ନିଶ୍ଚୟ ଦଣ୍ଡ ପାଇବା ସାର ହେବ...

ମୁରବୀ ୨ — ନିୟତୀ ତାକୁ ଦଣ୍ଡ ଦେଉକି ନଦେଉ, ଆମ ମହାପ୍ରଭୁଙ୍କର ବ୍ରହ୍ମ ବିବାଦ ହେଉ ବା ନୀତିକାନ୍ତିର ବିବାଦ ବା ଶ୍ରୀମନ୍ଦିର ବେଢ଼ାରେ ଭକ୍ତମାନଙ୍କ ହଟହଟା ହେଉ ଏପରି କୁକର୍ମ ଯିଏ ବି କରିବ, ଆମେ ତା' ବିରୁଦ୍ଧରେ ଏକ ସ୍ୱରରେ ସ୍ୱର ଉତ୍ତୋଳନ କରିବୁ । ତେଣିକି ତାଙ୍କ କଥା ସିଏ ବୁଝିବେ । ନା କ'ଣ କହୁଛରେ...

ସମସ୍ତେ — ନିଶ୍ଚୟ ନିଶ୍ଚୟ...ଆମ ମହାପ୍ରଭୁଙ୍କର ନୀତିରେ ଅନ୍ୟାୟ ହେବ, ଶ୍ରୀମନ୍ଦିରରେ ଭକ୍ତଙ୍କର ଅପମାନ ହେବ...ଆମ ଓଡ଼ିଆ ଜାତିକୁ କଳଙ୍କ ଲାଗିବ ନା ନାହିଁ ? ଆମେ ତାହା କେବେ ସହିବୁ ନାହିଁ...ନିଶ୍ଚୟ ପ୍ରତିବାଦ କରିବୁ...

ଚ:ପଣ୍ଡା — ଯାହା ମୁଁ କହୁଛି ବାବୁ ଚିତ୍ତରେ ତୁ ଘେନ ଜାଗ ମନେ ହେତୁ କରି ପଶ ଯା ଶରଣ
ରାମ ନାମ ଦୁଇ ଅକ୍ଷର ଭିତରେ ବାହାରେ ଲକ୍ଷ ଲକ୍ଷ ନିରନ୍ତର ସ୍ମରହୋ ଚିତ୍ତରେ
ରସ ରସନାର ରସ ଭାବନାରେ ରସ ରାହାସ ଦେଖିବୁ କହେ ଅଚ୍ୟୁତ ଯେ ଦାସ...

ସମସ୍ତେ — **ଜୟ ଜଗନ୍ନାଥଙ୍କର...ଜୟ ଜୟ ଜଗନ୍ନାଥଙ୍କର...ଜୟ**

**ଜୟ ଜଗନ୍ନାଥଙ୍କର...ଜୟ**

ଅନ୍ଧାର...

♦ ♦ ♦

# କଲେ ଯେତେ ହୁନ୍ଦର

## ଚରିତ୍ରମାନେ

| ଚରିତ୍ର | | | ଅଭିନେତା |
|---|---|---|---|
| ମ୍ୟାନେଜର | - | | ଶଙ୍କର୍ଷଣ ପ୍ରଧାନ |
| ଭୂତନାଥ | - | | ପ୍ରଜ୍ଞାରଞ୍ଜନ ଖଟୁଆ |
| ରତିକାନ୍ତ | - | | ଶଙ୍କର୍ଷଣ ପ୍ରଧାନ |
| ପ୍ରସୂନ | - | | ଦେବବ୍ରତ ପଟ୍ଟନାୟକ |
| ଦିଲୁ | - | | ରାକେଶ କୁମାର ଶତପଥୀ |
| ଜନ୍ | - | | ଚିରଞ୍ଜୀବ ବିଶ୍ୱାଳ |
| ପୋଲିସ ଇନ୍ସପେକ୍ଟର | - | | ସୁଶାନ୍ତ ଦାସ ମହାପାତ୍ର |
| ଅଶରିରୀ | - | ୧. | ସୂରଜ ଶତପଥୀ |
| | | ୨. | ହିମାଂଶୁ ବେହେରା |
| | | ୩. | ନବ କୁମାର ଘୋଷ |
| | | ୪. | ଚିନ୍ମୟ ପଣ୍ଡା |
| ପାଗଳୀ | - | | ଅର୍ପିତା ନନ୍ଦ |
| ପ୍ରଶାନ୍ତି | - | | ସୋନିକା ସାହୁ |
| ମେନକା | - | | ମାମାଲି |
| ପୋଷାକ/ରୂପସଜ୍ଜା | - | | ବୁଟୁ |
| ମଞ୍ଚ | - | | ପ୍ରହ୍ଲାଦଚ୍ଚ ସାହୁ |
| ଆଲୋକ | - | | ଶୁଭ୍ରାଂଶୁ ପରିଡ଼ା |
| ସଂଗୀତ | - | | ପ୍ରଜ୍ଞାରଞ୍ଜନ ଖଟୁଆ, ଚିଣ୍ଟୁ, ଶକ୍ତିସ୍ୱରୂପ |
| ନିର୍ଦ୍ଦେଶନା | - | | ନବୀନ କୁମାର ପରିଡ଼ା |
| ପ୍ରଥମ ପ୍ରଯୋଜନା | - | | ବର୍ଣ୍ଣାଳୀ ଥିଏଟର୍ସ, ଭୁବନେଶ୍ୱର |

ଅଗଷ୍ଟ ୩, ୨୦୧୫,

ଭଞ୍ଜ କଳା ମଣ୍ଡପ, ନାଟ୍ୟଧାରା କାର୍ଯ୍ୟକ୍ରମ

# କଲେ ଯେତେ ହୁନ୍ଦର

## ପ୍ରଥମ ଦୃଶ୍ୟ

(ଗୋଟିଏ ପୁରୁଣା ଚଟିଘର ର ରିସେପସନ୍ କାଉଣ୍ଟର ସାମ୍ନାରେ ସମସ୍ତ ଘଟଣା ଘଟିବାକୁ ଯାଉଛି । କାଉଣ୍ଟର ପାଖରେ ଠାକୁର ଖଟୁଳି । ତାକୁ ଲାଗି ଚାବି ଗୁଡ଼ିକ ଝୁଲିବା ପାଇଁ ଏକ ବୋର୍ଡ଼ ଲାଗିଛି । ସେଇ ବୋର୍ଡ଼ ଉପରେ ୧୧୩ ନମ୍ବର ଜାଗାରେ ନାଲି "୦" କରାଯାଇଛି । ସମୟ ସନ୍ଧ୍ୟା । ପ୍ରବେଶ କଲେ ମ୍ୟାନେଜର ବୁଢ଼ା ।)

ମ୍ୟାନେଜର : ଆରେ ଭୂତ । ଏ ଭୂତିଆ ! ଆରେ କୁଆଡ଼େ ଗଲୁ ଜଲଦି ଆସ । ସଞ୍ଜ ଗଡ଼ି ଆସିଲାଣି । ମୁଁ ଘରକୁ ଯିବାକୁ ତରତର ହେଲିଣି । ଏତିକିବେଳେ କୁଆଡ଼େ ପଳେଇଲା କେଜାଣି । ଆରେ ଭୂତ, ଶୁଣୁଛୁ ନା ନାହିଁ ।

ଭୂତନାଥ ଆଜ୍ଞା ଯାଉଛି । (ପ୍ରବେଶୀ) ଆପଣଙ୍କୁ କେତେଥର କହିଲିଣି, ମୋତେ ଭୂତ ବୋଲି ଡାକିବେ ନାହିଁ ।

ମ୍ୟାନେଜର : କହିଲୁଣି ଯେ, ହେଲେ ମୋର ପରା ଅଭ୍ୟାସରେ ପଡ଼ିଗଲାଣି । ଆଚ୍ଛା ଠିକ୍ ଅଛି, ଏଣିକି ମୁଁ ତୋତେ ଭୂତିଆ ଡାକିବି ?

ଭୂତନାଥ ନାନା, ଆପଣଙ୍କୁ ମୋର ପୁରନାମ ଧରି ଡାକିବାକୁ ପଡ଼ିବ। "ଭୂତନାଥ" । ନହେଲେ ଆଉ ମୁଁ ଶୁଣିବି ନାହିଁ ।

ମ୍ୟାନେଜର ତୁ କ'ଣ ମୋତେ ଧମକ ଦେଉଛୁ ? ମୁଁ ଡାକିପାରିବି ନାହିଁ । ଦେଖିବା ତୁ କେମିତି ନଶୁଣିବୁ ।

ଭୂତନାଥ ମୁଁ ବି ଜମାରୁ ଶୁଣିବି ନାହିଁ ।

ମ୍ୟାନେଜର ତୋର ତ ଭାରି ଗର୍ଭ ଦେଖୁଛି । ମୋ ଡାକ ନ ଶୁଣିଲେ ତୋତେ ଛଟେଇ କରିଦେବି ଜାଣିଥା ।

ଭୂତନାଥ ଛଟେଇ କରିଦେବେ ?ସେଇଟା ପୁଣି କ'ଣ ?

ମ୍ୟାନେଜର ତୋତେ ଚାକିରିରୁ ବାହାର କରିଦେବି ।

ଭୂତନାଥ (କାନ୍ଦି) କ'ଣ କହିଲେ ବାହାର କରିଦେବେ ? କାହିଁକି ? ଏଇ ଡାକ ନ ଶୁଣିବି ବୋଲି ମୋତେ ଚାକିରିରୁ ବାହାର କରିଦେବ ?

ମ୍ୟାନେଜର : ନ ହେଲେ ଆଉ କ'ଣ କରିବି ? ମୋ କାମ କରିବ କିଏ ?

ଭୂତନାଥ ହଉ ହେଲା, ଥରକରେ ଯଦି ମୋତେ ନ ଶୁଭିଲା, ପରପର ୨/ ୪ ଥର ଡାକିଦେଲେ ମୁଁ ବନ୍ଦେ ଆଜ୍ଞା କହିବିନି ।

ମ୍ୟାନେଜର ଶୁଣିବୁଟି । ତା'ହେଲେ ତ' ହେଲା । ଆଉ ଚାକିରି ଯିବ କାହିଁକି ?

ଭୂତନାଥ : ବୁଝିଲେ ନା ସାରେ ! ଆପଣ ଏମିତି ବାରମ୍ବାର ଧମକେଇଲେ, ମା' ରାଣ ମୋର ପୁରା ଟେନ୍‌ସନ୍ ହୋଇଯାଉଛି ।

ମ୍ୟାନେଜର ଧମକାଉ ନାହିଁରେ, ସତରେ ପରା ଚାକିରି ଚାଲିଯିବ ।

ଭୂତନାଥ ହୁଁ...ଏମିତି ଖାଲି ବାଟରେ ପଡ଼ିଛି ? ଚାକିରି ଚାଲିଯିବ।

ମ୍ୟାନେଜର  ବାଟରେ ପଡ଼ି ହାଟରେ ଗଡ଼ଗଡ଼ ହେଉଛି । ଏଇଟା କ'ଣ ସରକାରୀ ଚାକିରି ହୋଇଛି କିରେ, ପ୍ରାଇଭେଟ୍ ଚାକିରି ପରା, ଘଡ଼ିକେ ଅଛି ଘଡ଼ିକେ ନାହିଁ ।

ଭୂତନାଥ  ଖାଲି କ'ଣ ମୋରି ବେଳକୁ ସବୁ ନିୟମ ଲାଗୁ ?

ମ୍ୟାନେଜର  ଆରେ ନାଇଁ ନାଇଁ । ଆମେ ସମସ୍ତେ ସେଇ ଏକା ଭାଡ଼ିର ପାରା । ମୁଁ ଯେମିତି ତୋତେ ଧମକ ଦେଉଛି । ମାଲିକ ସେମିତି ମୋତେ ଶୋଧୁଛି । ଓଡ଼ିଆ ମିଶା ଇଂରାଜୀ, ହିନ୍ଦୀରେ । ଆରେ ବୋକା ମୁଁ ଚାକିରିରେ ଥିଲେ ସିନା ତୁ ମୋ ପାଖରେ ଚାକିରିରେ ରହିବୁ । ଆଉ ମୋ ଚାକିରି ନ ଥିଲେ ତୋ କଥା ପଚାରେ କିଏ ?

ଭୂତନାଥ  ଆଚ୍ଛା ଆଚ୍ଛା । ଏମିତି କଥା । ତେବେ ମ୍ୟାନେଜର ସାରେ ଆପଣ ମୋତେ ଆଉ କିଛି ଡାକିଲେ ଚଳନ୍ତା ନାହିଁ । ସେ ''ଭୂତ''ଡାକ ଶୁଣିଲେ ପରା ରାତିରେ ମୁଁ ଚମକି ପଡୁଛି । ମା' ରାଣ ।

ମ୍ୟାନେଜର  ହଉ ହେଲା ଏଣିକି ମୁଁ ତୋତେ ''ନାଥ'' ବୋଲି ଡାକିବି ।

ଭୂତନାଥ  ସେଇ ଯୋଗୀଆ ନାଥ ? ଯିଏ ଛିଡ଼ା କନ୍ଥା, ଫଟା ଲୁଗା ସବୁ ସିଲେଇ କରେ ସେଇ ନାଥ ? ନା...ନା...

ମ୍ୟାନେଜର  ନା– ନା– ସେ ନାଥ ନୁହେଁ ଯେମିତି ଲୋକନାଥ, ଜଗତନାଥ...ସେମିତି ନାଥ...ଏଥର ଯା...ଜଲଦି ଠାକୁରଙ୍କ ପାଖରେ ସଂଜବତୀ ଜଳେଇ ଭୋଗ କରିଦେ ମୁଁ ଚାଲିଲି ।

ଭୂତନାଥ  କୁଆଡ଼େ ?

ମ୍ୟାନେଜର  ଆଜି ପରା ଚିତଉ ଅମାବାସ୍ୟା ପୁଣି ଶନିବାର । ଘରେ ପିଠା ପଣା ହୋଇଥିବ, ମୁଁ ଘରକୁ ଯାଉଛି କାଲି ସକାଳେ ତୋ' ପାଇଁ ନେଇ ଆସିବି ।

ଭୂତନାଥ  ଆଉ ଏଠି ଚଳିବ କେମିତି ?

ମ୍ୟାନେଜର  କିରେ ଚଟି ଘର ତ ପୂରା ଖାଲି । ସଂଜ ଗଡ଼ି ଆସିଲାଣି । ସହରରୁ ଶେଷ ବସ୍ ଆସିବା ସମୟ ବି ଗଡ଼ି ଗଲାଣି । ଆଜି ଆଉ ଗରାଖ କେହି ଆସିବାର ସମ୍ଭାବନା ନାହିଁ ।

ଭୂତନାଥ  କାହିଁକି ନାହିଁ ?

ମ୍ୟାନେଜର  ନିର୍ଜନ ଜଙ୍ଗଲ ଘେରା ପାହାଡ଼ ଉପରେ ଏ ଚଟି ଘର । ଖାଲି ମରହଟ୍ଟା ଅମଳର ଶିବ ମନ୍ଦିରଟିଏ ଅଛି ବୋଲି ଶିବଙ୍କର ପର୍ବ ପର୍ବାଣିରେ ଏଠି ଭିଡ଼ ଜମେ । ବର୍ଷ ଯାକର ଖର୍ଚ୍ଚ ଖାଲି ଶିବ ରାତ୍ରି ଆଉ ଶ୍ରାବଣ ମାସର ବୋଲବମ୍ ଭକ୍ତଙ୍କଠାରୁ ଆଦାୟ ହୋଇଯାଏ, ଏ ଚଟି ଘରର ବାରଣ୍ଡା, ଦୁଆର କେଉଁଠି ପାଦ ପକେଇବାକୁ ଜାଗାଟିକିଏ ମିଳେନା, ନ ହେଲେ ବର୍ଷଟା ଯାକ ଫାଙ୍କା । କାଁ ଭାଁ ବିଦେଶୀ ପର୍ଯ୍ୟଟକ କିମ୍ୱା ମାନସିକ ଯାତ୍ରୀ ଆସନ୍ତି ତାଙ୍କଠାରୁ ବି ବେଶ୍ ଦି'ପଇସା ମିଳେ । ହେଲେ ଆଜି ତ ସେମିତି କିଛି ତିଥିବାର ନାହିଁ । କିଏ କାହିଁକି ଆସିବ ।

ଭୂତନାଥ  ଅମାବାସ୍ୟା ରାତିରେ ଭୂତପ୍ରେତ ଯଦି ବାହାରେ ?

ମ୍ୟାନେଜର  ତୁ କ'ଣ ଆଜି ନୂଆ ଜଗୁଛୁ । ମୁଁ ସକାଳେ ଆସି ପହଞ୍ଚିଯିବିନି । ଶୁଣ ମୁଁ ଗଲାପରେ କବାଟ ଝରକା ଭିତରୁ ଲଗେଇ ଦେଇ ଶୋଇପଡ଼ିବୁ ବୁଝିଲୁ । ମୁଁ ବ୍ୟାଗ ସଜାଡ଼େ (ଭିତରକୁ ଗଲେ)(ଭୂତନାଥ ଧୂପ ଦେଇ ଘଣ୍ଟି ବଜାଇ ବୁଲି ପଡ଼ିଲା ବେଳକୁ ଦେଖିଲା ପାଗଳୀ ଠିଆ ହୋଇଛି । ଚମକିପଡ଼ି ହାଉଳି ଖାଇଲା ।)

ଭୂତନାଥ  ଭୂତ...ଭୂତ...

| | |
|---|---|
| ପାଗଳୀ | (ହସି ଉଠିଲା) ଡରିଗଲା ଭୂତ ଡରିଗଲା । |
| ଭୂତନାଥ | (ଛାତିରେ ଛେପ ପକାଇ) ଥୁ...ଥୁ...ମୋତେ ଡରେଇ ଦେଇ ମଜା ଦେଖୁଛୁ ? |
| ପାଗଳୀ | ଭୋଗ ଦେ । ମୋ ଭୋଗ ଦେ । ଜାଣିନୁ କି ପ୍ରସାଦ ବାଣ୍ଟିଣ ଖାଇବ, ଅଳ୍ପ ବହୁତ ନ କହିବ । |
| ମ୍ୟାନେଜର | (ପ୍ରବେଶୀ) କ'ଣ ହେଲା କିରେ ? ଏମିତି ହାଉଳି ଖାଉଛୁ କାହିଁକି ? |
| ଭୂତନାଥ | ଦେଖୁନ ସଂଜ ବେଳଟାରେ ଡରେଇ ଦେଲା ଯେ, ଛାତି ଧଡ଼ଧଡ଼ ହଉଛି । |
| ମ୍ୟାନେଜର | ତାକୁ ଦେଖି ଡରିଯାଉଛୁ କାହିଁକି ? ସଂଜ ସକାଳେ ଘଣ୍ଟି ବାଜିଲେ ତ ସେ ଆସି ପହଞ୍ଚିଯାଏ । ଭୋଗ ଖାଇବ ବୋଲି । |
| ଭୂତନାଥ | ମୋ ପଛରେ ଚୁପ୍ ଚାପ ଠିଆ ହୋଇଛି, ମୁଁ ବୁଲି ପଡ଼ିଲା ବେଳକୁ ତାକୁ ଦେଖି ଡରିଗଲି । ମୋର ଅମାବାସ୍ୟାର ଭୂତ କଥା ମନେ ପଡ଼ିଗଲା । ମୁଁ କ'ଣ କରିବି । |
| ପାଗଳୀ | ନିଜ ଛାଇ ଦେଖି ଡରିଯାଇଛି, ମିଛରେ ମିଛରେ ଦୋଷ ଦେଉଛି ଆପଣା ଦନ୍ତେ ଜିହ୍ୱା ଛେଦି, କେ ହେବ ତା'ର ପ୍ରତିବାଦି । |
| ମ୍ୟାନେଜର | ତାକୁ ଭୋଗ ଦେ । (ଭୂତ ଭୋଗ ଦେଲା) ନେ ଖାଇଦେ । |
| ପାଗଳୀ | ତୁମେ ନିଅ । (ମ୍ୟାନେଜରକୁ ଦେଲା) (ତା'ପରେ ଭୂତକୁ ଦେଲା) ତୁ ବି' ନେ... । |
| ଭୂତନାଥ | ନା...ନା ମୁଁ ଖାଇବି ନାହିଁ । |
| ପାଗଳୀ | ନା ନା...ପ୍ରସାଦକୁ ନାଇଁ କରିବୁ ନାହିଁ । ମୁଣ୍ଡରେ ଲଗାଇ ପାଇବୁ ଭାଇ । ନେ ପାଇଦେ । (ଭୂତ ନେଲା ଓ ଖାଇଲା) ଉପରେ କହୁଛି ନାଇଁ ନାଇଁ, ଭିତରେ କହୁଛି ଗିଳିବି ସାଇଁ । (ହସିଲା) |
| ଭୂତନାଥ | ଦେଖୁଛ ଦେଖୁଛ । ୟା କଥାକୁ । ମାନିଲେ ମଲ, ନମାନିଲେ ବି ମଲ । |
| ପାଗଳୀ | ଜାଣନୁ କି ? ଶଙ୍ଖାରି କରତ ଦିପଟେ ଧାର । ଗଲେ କାଟେ, ଆସିଲେ ବି କାଟେ । |
| ମ୍ୟାନେଜର | ତା କଥାକୁ ଧରନା । ଯାଆ ତୁ ତୋ କାମକର । ହଁ ଶୁଣ ଆଜି ରାତି ପାଇଁ ପଖାଳ ଭାତ ଅଛି, ଆଳୁ ସିଝା ବି ଅଛି । ଦରକାର ପଡ଼ିଲେ ବଡ଼ି ଦି'ଟା ପୋଡ଼ି ଦେଇ ପାଗଳୀକୁ ଡାକି ଖୁଆଇବୁ ଆଉ ତୁ ବି ଖାଇନେବୁ । ଆଉ ଏଇ ମହମବତୀଟା ରଖିଥା କାଳେ ଲାଇଟ୍ ପଳେଇବ । |
| ଭୂତନାଥ | ଏଇ ଗୋଟିଏ ମହମବତୀରେ କ'ଣ ହେବ ? |
| ମ୍ୟାନେଜର | କାହିଁକି ହବନି ? କିରେ ସବୁ ରୁମ୍ ତ' ଖାଲି । ମହମବତୀ ଆଉ କ'ଣ ହେବ । କ'ଣ ଏଠି ଦିପାବଳୀ ପାଳିବୁ ? ଶୁଣ ସଂଜବେଳେ ଯଦି କରେଣ୍ଟ ଯାଏ ଶୀଘ୍ରଶୀଘ୍ର ଖାଇପିଇ ଶୋଇପଡ଼ିବୁ । ଆଉ ଶୋଇବା ଆଗରୁ ମହମବତୀଟା ଲିଭାଇ ଦେବୁ, ବୁଝିଲୁ । ମୁଁ ସକାଳେ ଆସି ପହଞ୍ଚିଯିବିନି । |
| ଭୂତନାଥ | ଯଦି ଏଇଟା ଲିଭିଗଲା । |
| ମ୍ୟାନେଜର | ମୁର୍ଖଟା କିରେ । ଠାକୁରଙ୍କ ପାଖରେ ଦିଆସିଲି ଅଛି ଜଳେଇ ଦେବୁ । ଜାଣି ଶିଆଣାଙ୍କ ଭଳି ଏତେ ପେଖନା କାଢୁଛୁ କାହିଁକି ? |
| ପାଗଳୀ | ଜାଣି ଶିଆଣାକୁ କହିବୁ ଯାଇ, ଅଜଣା ଚାଉଳ ଖାଇବ ନାହିଁ । |
| ଭୂତନାଥ | ତୁ ଚୁପ୍ କର । ବୁଝିଲେ ମ୍ୟାନେଜର ବାବୁ ଆଜି ଭାରି ଡର ଲାଗୁଛି । ଏକା ଏକା ଲାଗୁଛି । |

ମ୍ୟାନେଜର — ଡର କ'ଣ । ପାଗଳୀ ପରାଅଛି । ଆଚ୍ଛା ତୁ ଏଠିକି ବର୍ଷେ ଦେଢ଼ବର୍ଷ ହେଲା ଆସିଲୁଣି । ଅତି କମ୍‌ରେ ୮/ ୧୦ ଥର ଏକା ଏକା ଚଟ୍‌ିଘର ଜଗିଛୁ କି ନାହିଁ ? କେବେ ଡରିଛୁ ? ଭୂତ କି ପ୍ରେତ କିଛି ଦେଖିଛୁ ?

ଭୂତନାଥ — ନା...

ମ୍ୟାନେଜର — ତା'ହେଲେ ଆଜି ପୁଣି ଡରୁଛୁ କାହିଁକି ? ଦାରକାର ହେଲେ ମୋତେ ଫୋନ୍ କରିବୁ । ଆଉ ଯଦି ବାଇ ଚାନ୍‌ସ କେହି ଆସେ ୧୧୩ ନମ୍ବର ରୁମ୍‌ର ଚାବି କାହାକୁ ଦେବୁ ନାହିଁ । ଆଉ ଟିକିଏ ରାତି ଗଡ଼ିଲେ ଖାଇପିଇ ମସ୍ତ ହୋଇ ଶୋଇପଡ଼ିବୁ ମୁଁ ଆସୁଛି । (ପ୍ରସ୍ଥାନ)

ପାଗଳୀ — ମୁଁ ଗୀତ ଗାଇଦେବି । ଧୋରେ ବାଇଆ ଧୋ, ଯେଉଁ କିଆରୀରେ ଗହଳ ମାଣ୍ଡିଆ ସେଇ କିଆରୀରେ ଶୋ । (ଭୂତନାଥ ଧୂପ ଧରି ବାହାରକୁ ବାହାରିଗଲା ରାଗରେ ତମ ତମ ହୋଇ ପାଗଳୀ ଯାଇ ଠାକୁରଙ୍କ ପାଖରୁ ଭଗବତ ଉଠାଇ ଆଣି ପଢ଼ିବା ଆରମ୍ଭ କରିଦେଲା ।)
''ନାରାୟଣ ନମସ୍କୃତଂ ନରୋଚୈବ ନରୋତ୍ତମ''ଦେବୀ ସରସ୍ୱତୀ ବ୍ୟାସ ତ଼ତୋଦ୍ଧଜୟ ମୁଦିରୟେତ୍ ।

ଭୂତନାଥ — (ଫେରିଆସି) ଅଇଁଠା ହାତରେ ଭଗବତ ଆଣି ପଢ଼ିବା ଆରମ୍ଭ କରିଦେଲୁ ତ ? ଦେବି ଯେ ଖୁନ୍ଦେ...

ପାଗଳୀ — (କାନ୍ଦିଛି) ଗାଳି ଦେବୁ ନାହିଁ କାହିଁକି ? ରାତିଟା ପାଇଁ ମ୍ୟାନେଜର ଚାକିରି ପାଇଛୁ ତ । ମିଛରେ କହନ୍ତି ।
ଘିଅଅସରସର, ଗୁଡ଼ ସରସର, ଫୁଲୁଥାଏ ବିରିବରା ।
ତୁଚ୍ଛା ପଲମରେ ଫୁଲି ମରୁଥାଏ, ନିଳଠା ଚିଡଉ ପିଠା ।

ଭୂତନାଥ — ମୋର ଭୁଲ୍ ହୋଇଗଲା । ଚାଲ ରୋଷେଇ କରିବା । କହ କ'ଣ ଖାଇବୁ ?

ପାଗଳୀ — ଖେଚେଡ଼ି ଡାଲମା ହରିପୁରି, ସାଆନ୍ତେ ଖାଆନ୍ତି ଚକା ପାରି ।

ଭୂତନାଥ — ଏତେ ଆଉ ସାଆନ୍ତ ହଅନା ମ... । ପଖାଳ ଭାତକୁ ଆଳୁ ସିଝା ସେଥିରେ ଚାରିଟା ବଡ଼ି ପୋଡ଼ି ମଛି ଦେଲେ ହେଲା, ତା'ସାଙ୍ଗକୁ ସୋରିଷ ତେଲ, ରସୁଣ ଦି'କଲି ପକେଇ ଦେଲେ ତ କଥା ସରିଲା ।

ପାଗଳୀ — ବାର ତିଅଣ ତେର ଭଜା, ଲୁଣ ନ ଥିଲେ ସବୁ ଫିକା ।

ଭୂତନାଥ — ଲୁଣ ପଡ଼ିବ ନା...ଯା ଗଲୁ ଦେଖିଲୁ ଚୁଲୀରେ ନିଆଁ ଅଛି ନା ପାଉଁଶ ହୋଇଗଲାଣି ? (ପାଗଳି ଚାଲିଗଲା । ଭୂତ ଠାକୁର ଖଟୁଳି ସଜାଡ଼ି ଦେଲା ।)

ପାଗଳୀ — (ପ୍ରବେଶୀ) ହଁ ହଁ...ଚୁଲୀ ଅଛି, ନିଆଁ ଅଛି । ପାଉଁଶ ବି ଅଛି । ପାଉଁଶ ତଳର ନିଆଁ, ନିଆଁ କୁହଳିଲେ ଧୂଆଁ, ମନ କୁହୁଳିଲେ ହା ହୁତାଶନ, ଜୀବନଟା ଲଗେ ଛିଆ ।

ଭୂତନାଥ — ସେଇ ଅଧାପାଉଁଶ ଅଧା ନିଆଁରେ ବଡ଼ି ପୋଡ଼ିବାଟା ଠିକ୍ । ପୋଡ଼ିବ ଅଥଚ ପୋଡ଼ିବ ନାହିଁ । ଗଲୁଗଲୁ ସେଇଠି ଡବାରୁ କେତେଟା ବଡ଼ି ନେଇ ଚୁଲୀରେ ପକେଇ ଦେଇ ଆସିଲୁ ।

ପାଗଳୀ — ମେଘ ବରଷିଲା ଟପର ଟାପର, କେଣ୍ଡୁର ମାଇଲା ଗଜା ।
ସାରୁ ଗଛମୂଳେ ବେଙ୍ଗଟିଏ ବସି, ଆପେ ବୋଲାଉଛି ରଜା ।

ଭୂତନାଥ — ହଉ ହେଲା । ତୁ ଯାଇପାରିବୁନି ତ ମୁଁ ଯାଉଛି । ମହାରାଣୀ ଏଇଠି ଚକାପାରି ବସିଥା । ଖାଇଲାବେଳକୁ ଯାଇ ଗେମ୍ପା ମାରିବୁ । (ପ୍ରସ୍ଥାନ)

| | |
|---|---|
| ପାଗଳୀ | କାହାକୁ କହିଲୁ ? ମୋତେ କହିଲୁ ତ । ଠିକ୍ ଅଛି ମୁଁ ଖାଇବି ନାହିଁ । (ଭୂତକୁ ଶୁଣେଇ ଶୁଣେଇ ବଡ଼ ପାଟିରେ)<br>ନ ଖାଇଲେ କହେ ରାଗିଲା ରଷିଲା ଖାଇଲେ କହିବ ଗେମ୍ଭିଲା ।<br>ଭିତରେ କାନ୍ଦଇ ଉପରେ ହସଇ ଦୁନିଆ କହଇ ବାଇଆ ।<br>ଜହ୍ନିଫୁଲ ଠୋ' ଠା', କାକୁଡ଼ି ଫୁଲ ଠୋ ଠା<br>ଗୁଣ୍ଡୁଚି ମୂଷା କହିଯାଇଛି, ଚାଉଳ ମୁଠେ ଥୋଇଥା ।<br>(ଭୂତ ଆଡ଼କୁ ଚାହିଁ) ଆରେ ଶୁଭୁଛି ନା ନାହିଁ ? କାହିଁକି ଶୁଭିବ। କାନରେ ତ ଡିଙ୍କି ପଡ଼ିଛି । କଂସାରୀ ଘର ପାରା କୁଳା ଢାଉଁ ଢାଉଁ କଲେ ଖାତର ପଡୁଛି କି ? କୁଆଡ଼େ ଗଲା ବା ଘଡ଼ିଏ ହେଲା ସୋର ଶବଦ ନାହିଁ । (ସେଆଡ଼କୁ ଚାହିଁ ଦେଖିଲା ଓ ଆସୁଥିବାର ଦେଖି) କଥାରେ ନାହିଁ । |
| ପାଗଳୀ | କ୍ଷୀର ଉତୁରିଲେ ଚୁଲୀକି, ରାଗ ଉତୁରିଲେ ବଇଦ ଡକାରେ<br>ମନ ଉତୁରିଲେ ବାଇଆ ବୋଲାଇ, ମଣିଷ ଉତୁରା ନଈବାଲିକି । |
| ଭୂତନାଥ | ତୁ ଟିକିଏ ଚୁପ୍ କର ଭଲା । ମଣିଷ ଏଇନେ କି ଦଶାରେ ପଡ଼ିଛି ଯା'କୁ ଏଇନେ ଢଗଢ଼ମାଳି ଲାଗିଛି । |
| ପାଗଳୀ | ଯିଏ ଯାହାକୁ ଦେଖି ନ ପାରେ, ଅନ୍ଧାର ରାତିରେ ଉକୁଣୀ ମାରେ...ଉଁ । |
| ଭୂତନାଥ | ଦେଖିଲୁ ଦେଖିଲୁ ତୋ ସାଂଗରେ ପଡ଼ି ମୋ ମୁଣ୍ଡ ବି ବାଉଳା ହେଲାଣି । କେତେବେଳକୁ ଚୁଲୀରେ ବଡ଼ି ପକେଇଥିଲି ଯେ ଭୁଲି ଗଲିଣି । ହଉ ଗଲୁ ଗଲୁ, ଚୁଲୀରୁ ବଡ଼ିଗୁଡ଼ା ବାହାର କରିଦେବୁ । |
| ପାଗଳୀ | ପରଷିଲା ବେଳକୁ ମୁହିଁ, ମୁହିଁ ବେସର ବଟାକୁ ଡାକ ସଉତୁଣୀ, ନାଇଁ ନାଇଁ ମୁଁ ଯିବିନି । |
| ଭୂତନାଥ | ନିଜେ ତ ଯିବୁନି ଆଉ ମୁଁ ଯାଇ ଆଳୁ ଚକଟା, ବଡ଼ିଚୁରା କଲାବେଳକୁ ତୁ ଏଡ଼େବଡ଼ ରଡ଼ି କରି ବାହୁନି ହେଉଛୁ କାହିଁକି ? (ପ୍ରସ୍ଥାନ) (ପାଗଳୀ ଢଗ ଗାଇଲା) |
| ପାଗଳୀ | ଅତି ଦର୍ପେ ହତାଃ ଲଙ୍କା, ଅତି ମାନେ ଚ କୌରବା ।<br>ଅତି ଦାନେ ବଳି ବଧ, ଅତି ସର୍ବତ୍ର ଗର୍ହିତମ୍ ।<br>ଓଳିକିଆ ମେନେଜର ହେଇଛୁ ତ ଗର୍ବରେ ବେଲୁନ୍ ଭଳିଆ ଫୁଲୁଛି । ଆଉ ଟିକେ ପବନ ଆଉ ଟିକେ ଫୁଲିବ । ଆଉ ଟିକେ ପବନ ଆଉ ଟିକେ ଫୁଲିବ । ତା'ପରେ ତ ଢୋ କରି ଫାଟିବ । (ହସିକି) |
| ଭୂତନାଥ | (ପ୍ରବେଶି) ଗଲୁ ଗଲୁ ଦାଣ୍ଡ ଦରଜା ଭିତରୁ ଲଗେଇ ଦେବୁ । ମୁଁ ଆଳୁସିଝାରେ ବଡ଼ି ପକେଇ ମଛି ଦେଇ ଆସିଛି ଚାଲ ପଖାଳ କଂସାଏ ଲେଖା ଗେଳ୍ପଦେବା । (ପାଗଳୀ ପ୍ରସ୍ଥାନ) (ଭୂତନାଥ ବିଛଣା ପାରିଲା) |
| ପାଗଳୀ | (କହି କହି ଆସିଲା)<br>ଉଦୁମା ଦୁଆର ଉଦୁମା ଟାଟି କୁଳ ଭୂଆସୁଣୀ ବେସର ବାଟି ।<br>ନିବୁଜ ଗମ୍ଭୀରା ନିଶୁନ ରାତି ଦାଣ୍ଡେ ବୁଲେ ସତୀ ମୁଣ୍ଡେ ହାତେ ଓଢ଼ଣୀ । |
| ଭୂତନାଥ | (ପ୍ରବେଶୀ) ଚାଲ ଖାଇବା, ଏଇଠି ବିଛଣା ପାରିଦେଇଛି ଖାଇସାରି ଆସି ଶୋଇ ପଡ଼ିବା । |
| ପାଗଳୀ | ଆଇଁଚି ମନ୍ତର କାଇଁଚି ମନ୍ତର, ପିଠାକୁ ମନ୍ତର କୁଆଣି । ଯିଏ ଯହିଁ ପାଇଁ ନସର ପସର, ଆମ୍ଭେ ସେଇକଥା ଜାଣି । |

ଭୂତନାଥ ହେ, ପାଗଳୀ କିଛି ନ କହିଲା ବେଳକୁ ବେଶୀ ବକର ବକର ହେଉଛୁ ତ । ଯାଉନୁ ସେଇ ୧୧୩ ନମ୍ବର ରୁମ୍‌ରେ ଶୋଇବୁ । ଦି' ବିଧା ଥୋଇଲେ ତୋ ପାଗଳାମି ଛାଡ଼ିଯିବ ।

ପାଗଳୀ (କାନ୍ଦି) ଆଳୁ କୋଚି ବୋଲ ମାଳୁ କୋଚି ବୋଲ, ଭାତ ପରି କିଏ ହେବ । ମାଉସୀ ବୋଲ ପିଉସୀ ବୋଲ,ମାଆ ପରି କିଏ ହେବ ।

ଭୂତନାଥ ମୋତେ ଯାତୁ ସେଯାତୁ କହୁଛୁ ସେଥିରେ କିଛି ନାହିଁ । ଆଉ ମୁଁ ପଦେ କହିଲେ ବାଧି ଯାଉଛି । ଆଖିରୁ ଲୁହ ଝରିଯାଉଛି । ଚାଲ ଖାଇବୁ ଚାଲ ।

ପାଗଳୀ ନା ମୁଁ ଖାଇବି ନାହିଁ । କାହା କରମକୁ ଘିଅ ସାକର, କାହା କରମକୁ ଲଡୁ, କାହା କରମକୁ ଖାରିଆ ଖଡ଼ା, ଚୋବେଇ ଚୋବେଇ ମରୁ ।

ଭୂତନାଥ (କାନଧରି) ମୋର ଭୁଲ୍ ହୋଇଗଲା । ମୁଁ ଆଉ କିଛି କହିବି ନାହିଁ ।

ପାଗଳୀ ମୁଁ ଏଠି ଶୋଇବି ନାହିଁ ।

ଭୂତନାଥ ଖାଇସାରି ତୋର ଯେଉଁ ଘରେ ଇଚ୍ଛା ଯାଇ ଶୋଇବୁ ।

(ଦୁହେଁ ପ୍ରସ୍ଥାନ)

(ଟେଲିଫୋନ୍ ବାଜିଲା ଅଇଁଠା ହାତରେ ଖାଉ ଖାଉ ଭୂତନାଥ ପ୍ରବେଶ) ହାଲୋ ହାଲୋ କିଏ କହୁଛନ୍ତି ? କିଛି ଶୁଭୁନି । (ରଖିଦେଲା)

ଏଇଟା ବି ଏତିକିବେଳେ ବାଜିବାକୁ ଥିଲା । ମଣିଷକୁ ଟିକେ ଶାନ୍ତିରେ ଖାଇବାକୁ ବି ଦେବେନି । (ପାଗଳୀ ପ୍ରବେଶ) କିରେ ଖାଇସାରିଲୁଣି ।

ପାଗଳୀ ଖାଇପିଇ ସାରି ବାସନ କୁସନ ଧୁଆଧୁଇ କରି ଆସିଲି। ନହେଲେ ପୁଣି କହିବୁ, ଆରେ ଲଣ୍ଡା ଭାତ ଖାଇସାରି ଦେଖାଏ ଖଣ୍ଡା।

ଭୂତନାଥ ଆଉ ମୋ ବାକି ପଖାଳ ?

ପାଗଳୀ ତୁ ପରା ଖାଇପିଇ ସାରି ହାତ ଧୋଇବାକୁ ଆସିଲୁ । ମୁଁ ତାକୁ ପେଜ ନଳାରେ ଢାଳିଦେଇଛି ।

ଭୂତନାଥ ନଳାରେ ଢାଳିଦେଇଛୁ ? ଭଲ କରିଛୁ।

ପାଗଳୀ କାହିଁକି ଭୁଲ୍ କଲି କି ?

ଭୂତନାଥ ନାଁ ନାଁ ଠିକ୍ କରିଛୁ । ଯା ଏବେ ହାତଗୋଡ଼ ଲମ୍ବେଇ ଶୋଇପଡ଼ ।

ପାଗଳୀ ଆଉ ତୁ ?

ଭୂତନାଥ ମୁଁ ଯାଉଛି ଲୋଟେ ପାଣି ପିଇ ହାକୁଟି ମାରି କମ୍ବଳ ଘୋଡ଼େଇ ଶୋଇପଡ଼ିବି । (ପ୍ରସ୍ଥାନ)

ପାଗଳୀ ଆ ଲୋ ମୁତୁରୀ ଶୋଇବା ତୁ ତ ମୁତୁରୀ ମୁଁ ତ ମୁତୁରୀ ହେଁସ କାହାପାଇଁ ଧୋଇବା । ନୂଆ ଡାହାଣୀର ଅଲରା କେଶା, ପୁରୁଣା ଡାହାଣୀ ମୁଣ୍ଡରେ ଖୋସା । ନୂଆ ନୂଆ ମେନେଜର ହେଇଛି ତ ନୂଆ ଡାହାଣୀ ନୂଆ ନୂଆ ଗୁହ ଖାଇଲା ପରି ବାଡ଼େଇ ଛାଟି ହେଉଛି ।

ଭୂତନାଥ (ପ୍ରବେଶୀ) ହେ..ହେ... ଡାହାଣୀ ମନ୍ତ୍ର ଛାଡ଼ି ଶୋଇଲେ ଶୋ ନ ହେଲେ ମୁଁ ଶୋଇଲି । (ଶୋଇଲା)

ପାଗଳୀ ଆ ଜହ୍ନ ମାମୁ ଶରଗ ଶଶୀ ମୋ କାହ୍ନୁ ହାତରେ ପଡ଼ରେ ଖସି... (ଭୂତ ଘୁଙ୍ଗୁଡ଼ି ମାରିଲା) (୧୧୩ ନମ୍ବର ରୁମ୍‌ର ଚାବି ନେଇ ପାଗଳୀର ପ୍ରସ୍ଥାନ) (ମ୍ୟୁଜିକ୍‌ରେ ସସ୍‌ପେନ୍‌ସର ସ୍ୱର ଭାସିଆସିଲା ଆଲୁଅ ଲିଭିଗଲା ଅଶରୀରୀମାନଙ୍କ ନୃତ୍ୟରେ ଏକ ଭୟଙ୍କର ସ୍ୱପ୍ନିଳ ପରିବେଶ ଭାସି ଉଠିଲା) (ବାହାରୁ ଆସିଛନ୍ତି ମଧ୍ୟମ ବୟସ୍କ ରତିକାନ୍ତ ଓ ତାଙ୍କର ୨ୟା ପତ୍ନୀ ମେନକା )

| | |
|---|---|
| ରତିକାନ୍ତ | (ବାହାରୁ) ମ୍ୟାନେଜର ବାବୁ ଅଛନ୍ତି ? (ପ୍ରବେଶୀ) ଆରେ କେହି କୁଆଡ଼େ ନାହାନ୍ତି ନା କ'ଣ ? |
| ପାଗଳୀ | (ପ୍ରବେଶୀ) ଅନେଇ ଅନେଇ ହଂସା ଉଡ଼େ, ମୁଡି ଗଲାବେଳେ ଡକରା ପଡ଼େ । ମୁଁ ପରା ଅଛି । କ'ଣ ଦରକାର କୁହନ୍ତୁ । |
| ରତିକାନ୍ତ | ଆମର ଗୋଟିଏ ଡବଲ ବେଡ୍ ରୁମ୍ ଦରକାର ଅଛି । ମିଳିବ ? |
| ପାଗଳୀ | ଭୂତ, ଭୂତ... |
| ମେନକା | ଆରେ ଭୂତକୁ ଡାକୁଛ କାହିଁକି ? |
| ପାଗଳୀ | ସେଇଟା ଅସଲ ଭୂତ ନୁହେଁ ମଣିଷ ଭୂତ । |
| ଭୂତନାଥ | (ଉଠି) କ'ଣ ହେଲା ? ମୋତେ ଡାକିଲୁ କାହିଁକି ? ଆପଣମାନେ କିଏ ? |
| ପାଗଳୀ | ଅତିଥି ଦେବୋଭବଃ । |
| ରତିକାନ୍ତ | କ'ଣ ସଞ୍ଜ ନ ବାଜୁଣୁ ଶୋଇପଡ଼ିଲଣି । |
| ପାଗଳୀ | କାର୍ଯ୍ୟ ମଧ୍ୟେ ଦୁଇ, ଖାଇ ଆଣ୍ଠୁ ଶୋଇ । |
| ରତିକାନ୍ତ | ରୁମ୍ ଖାଲି ଅଛି ? |
| ଭୂତନାଥ | ଅଛି । |
| ମେନକା | ରେଟ୍ କ'ଣ ? |
| ଭୂତନାଥ | ସାତ ଶହ ଟଙ୍କା, ତା'ସାଙ୍ଗକୁ ଆପଣମାନଙ୍କ ପରିଚୟ ପତ୍ର । |
| ରତିକାନ୍ତ | ନିଅ ମୋର ପରିଚୟ ପତ୍ର ଆଉ ଟଙ୍କା । (ଭୂତନାଥ ଦେଖିଲା) |
| ଭୂତନାଥ | ଏଇ ଖାତାରେ ଦସ୍ତଖତ କରନ୍ତୁ । ତାରିଖ ଓ ସମୟ ବି ଲେଖିବେ । ଆପଣଙ୍କ ବ୍ୟାଗପତ୍ର । |
| ମେନକା | ସେଇ କବାଟ ପାଖରେ ଅଛି । (ଭୂତ ବାହାରୁ ବ୍ୟାଗ ଧରି ଆସିଲା) |
| ଭୂତନାଥ | ଏଇଟା କ'ଣ ଏତେ ଭାରୀ ହୋଇଛି । |
| ରତିକାନ୍ତ | ସେଥିରୁ ତୁମକୁ କ'ଣ ମିଳିବ । |
| ପାଗଳୀ | ଅଦାବେପାରୀ, ଜାହାଜ ମୂଲ ତଉଲୁଛି । |
| ମେନକା | ଏଠି ଆମେ ୪/୫ ଦିନ ଏଠି ରହିବୁ ତ ତେଣୁ ଆମ ଦି'ଜଣଙ୍କର ଖାଇବା, ପିଇବା, ଲୁଗାପଟା ସବୁ ସେଥିରେ ଅଛି । |
| ଭୂତ | ମୁଁ ଭାବିଲି, ଆଉ କିଛି ଥିବ । |
| ପାଗଳୀ | ଭାବୁକ ଟାଏ ତ । ଭାରି ଜ୍ଞାନୀ । ହେଲେ ସାଧାରଣ ଜ୍ଞାନ ମୂଳରୁ ନାହିଁ । କହିଲା ଭଳିଆ – ଅତି ପଣ୍ଡିତ ବାଇ, ତାକୁ ମୁରୁଖ ଚୁକାଉ ଥାଇ । |
| ଭୂତନାଥ | ତୁ ଚୁପ୍ କର । ଖାତାରେ ଦସ୍ତଖତ କଲେ ତ ? ଏଇ ନିଅନ୍ତୁ ଚାବି, ରୁମ୍ ନମ୍ବର ୧୧୪ । |
| ରତିକାନ୍ତ | ନାଇଁ, ନାଇଁ ଆମକୁ ୧୧୩ ନମ୍ବର ରୁମ୍‌ର ଚାବି ଦରକାର । |
| ଭୂତନାଥ | ସେ ରୁମ୍‌ର ଚାବି ତ କାହାକୁ ଦିଆଯାଏନି । ମୁଁ ଦେଇପାରିବି ନାହିଁ । |
| ମେନକା | ଆହା, ତୁମେ ରାଗୁଛ କାହିଁକି ? ପ୍ରାୟ ପନ୍ଦର ବର୍ଷ ତଳେ ଶିବମନ୍ଦିରକୁ ବ୍ରତ କରିବାକୁ ଆସି ଆମେ ସେଇ ଘରେ ରହିଥିଲୁ । ଆଉ ଏଇଠୁ ଫେରିଯାଇ ଆମ ଜୀବନର ଧାରା ସଂପୂର୍ଣ୍ଣ ବଦଳି ଯାଇଥିଲା । (ସ୍ୱାମୀକୁ) ହେ ଦେଲ ଦେଲ ତୁମ ପର୍ସଟା । (ପର୍ସ ନେଇ ଟଙ୍କା ବାହାର କଲେ) ନିଅ ମିଠାଇ ଖାଇବ ଆଉ ଆମକୁ ୧୧୩ ନମ୍ବର ରୁମ୍‌ର ଚାବିଟା ଦିଅ । |

| | |
|---|---|
| ପାଗଳୀ | ଟଙ୍କା କରେ ମୁହଁ ବଙ୍କା ସଜନୀଲୋ ଟଙ୍କା କରେ ମୁହଁ ବଙ୍କା । |
| ଭୂତନାଥ | କିଛି ଅସୁବିଧା ହେବ ନାହିଁ ତ ? |
| ମେନକା | ଅସୁବିଧା କ'ଣ ? |
| ପାଗଳୀ | ଲୋଭେ ପାପ, ପାପେ ମୃତ୍ୟୁ । |
| ଭୂତନାଥ | ମ୍ୟାନେଜର ବାବୁ ଯଦି ରାଗନ୍ତି ? |
| ରତିକାନ୍ତ | ଠିକ୍ ଅଛି । ଆଜି ରାତିଟା ଆମେ ସେଇଠି ରହିବୁ । ଯଦି ମ୍ୟାନେଜର ବାବୁ ତୁମକୁ ରାଗିଲେ ତା'ହେଲେ କାଲି ସକାଳେ ଆମେ ଅନ୍ୟ ରୁମ୍‌କୁ ଚାଲିଯିବୁ । ହେଲା ତ । ଏଥର ଚାବି ଦିଅ । |
| ଭୂତନାଥ | (ପାଗଳୀକୁ ପଚାରିଲା) ଚାବି ଦେଇ ଦେବି । |
| ପାଗଳୀ | ଦିନେ ନାହିଁ କାଳେ ନାହିଁ । ଗହ୍ମା ପୂନେଇଁରେ ମାଇଁ ମାଇଁ । |
| ଭୂତନାଥ | ଆରେ କ'ଣ କରିବି କହୁନୁ । |
| ପାଗଳୀ | ଆଖି ନାହିଁକି କାନ ନାହିଁ, ଦେଖୁଛି ବୋଇଲେ ଦେଖି ନାହିଁ, ବାଜିଗଲେ ଦୋଷ ନାହିଁ । |
| ମେନକା | ଆରେ ଭାବୁଛ କ'ଣ ? ଦରକାର ହେଲେ ଆହୁରି ପଇସା ଦେବି । |
| ଭୂତନାଥ | କାଲି ସକାଳେ ଅନ୍ୟ ରମ୍‌କୁ ଚାଲିଯିବେ ତ ? |
| ରତିକାନ୍ତ | ନିଶ୍ଚୟ ନିଶ୍ଚୟ...(ଚାବି ଦେବାକୁ ବାହାରିଛି ଭୂତନାଥ) |
| ପାଗଳୀ | ମନ୍ଦୁ ଖୋଜୁଥିଲା ପଇଡ଼ ପାଣି, ବଇଦ କହିଲା ପିଅ ତୋରାଣୀ । (ପ୍ରବେଶ କଲେ ପ୍ରସୂନ ଓ ପ୍ରଶାନ୍ତି) । |
| ପ୍ରସୂନ | ଓହୋ ...ଶେଷରେ ଆମେ ଆସି ଆମ ଲକ୍ଷ୍ୟ ସ୍ଥଳରେ ପହଞ୍ଚିଗଲେ । |
| ପ୍ରଶାନ୍ତି | ପୃଥିବୀ ସାରା ବୁଲେଇ ବୁଲେଇ ଶେଷରେ ଏମିତି ଗୋଟିଏ ଅପନ୍ତରିଆ ଜାଗାରେ ଆଣି ପହଞ୍ଚେଇଲ ଯେ ମଣିଷ ଅଧାପ୍ରାଣ ହେଲାଣି । |
| ପାଗଳୀ | ଏ ମନ ଚିନ୍ତୁଥାଇ ଯାହା କାଳେ ପ୍ରାପତ ହୁଏ ତାହା । |
| ପ୍ରସୂନ । | ଏ ଜାଗାର ମାହାତ୍ମ୍ୟ ପରା ସେମିତି । ଡୋରି ନ ଲାଗିଲେ ଆସିପାରିବନି ଆଉ ଡୋରି ଲାଗିଲେ ନ ଆସି ରହିପାରିବ ନାହିଁ । ହେ ଟୋକା ଆମକୁ ଚାବି ଦେଲୁ । |
| ଭୂତନାଥ | ଆପଣମାନେ କିଏ ? କି ଚାବି ? |
| ପ୍ରସୂନ | ସପ୍ତାହେ ଆଗରୁ ଫୋନ୍ କରି ଏଠି ରୁମ୍ ବୁକ୍ କରିଛୁ । ଖାତା ଦେଖ, ଆଉ ଚାବି ଦିଅ । |
| ପାଗଳୀ | ଚିହ୍ନା ନାହିଁ କି ଜଣା ନାହିଁ । ବାତୁଳି ଚାଲୁଛି ସାଇଁସାଇଁ । |
| ଭୂତନାଥ | ନାଁ ଗାଁ କହିଲେ ତ ଖାତା ଦେଖିବି । |
| ପ୍ରସୂନ | ପ୍ରସୂନ ଜିତ୍ ମିଶ୍ର ଘର ବାଲିସାହି, ପୁରୀ (ଭୂତଖାତା ଦେଖିଲା) |
| ଭୂତନାଥ | କାହିଁ ମୁଁ ତ ପାଉନି । ଆପଣ ଖୋଜି ଦେଖିଲେ । |
| ପ୍ରସୂନ | ତୁମେ କେଉଁ ଖାତାରେ ଲେଖିଛ, ମୁଁ କେମିତି ଜାଣିବି ? ମୋତେ ଚାବି ଦିଅ । |
| ପାଗଳୀ | ମାରିନେବେ ମହାପାତ୍ରେ ଚାହିଁଥିବୁ ଜଳକା... ଆଉ ଯେଉଁ ଘର ହେଉ ଗୋଟିଏ ଘରର ଚାବି ଦେଇ ଦେଉନୁ । |
| ପ୍ରଶାନ୍ତି | ନା ନା ଆମେ ଯେଉଁ ଘର ବୁକ୍‌ଙ୍ଗ କରିଛୁ ସେଇ ଘରର ଚାବି ନେବୁ ୧୧୩ ନମ୍ବର ରୁମ୍ । |
| ଭୂତନାଥ | ସେଇଟା ମୁଁ ଦେଇ ପାରିବି ନାହିଁ । |

| | |
|---|---|
| ପ୍ରସୂନ | ତା'ହେଲେ ତୁମ ମ୍ୟାନେଜରଙ୍କୁ ଡାକ । |
| ପାଗଳୀ | କାଲକ ଥିଲା ଅନ୍ଧାର ଘର ।         ଏବେ ଲାଗିବ ଯୋଡ଼ିମଶାଲ । |
| ମେନକା | ଆମେ ପରା ଟିକିଏ ଆଗରୁ ସେ ରୁମ୍ ବୁକିଙ୍ଗ୍ କରିଛୁ । |
| ପ୍ରଶାନ୍ତି | ଆମେ ପରା ସାତ ଦିନ ଆଗରୁ ତାକୁ ବୁକ୍‌ଙ୍ଗି କରିଛୁ । |
| ଭୂତନାଥ | ହେଉ ହେଲା । ଏଠି ତ ସବୁ କୋଠରୀ ଏକାଭଳି ଆପଣମାନେ ଯେ କୌଣସି ରୁମ୍ ନେଲେ ବି କିଛି ଫରକ ପଡ଼ିବ ନାହିଁ । |
| ପ୍ରସୂନ | ସବୁ ରୁମ୍ ଏକାପରି ସତ । କିନ୍ତୁ ସବୁ ରୁମ୍‌ତ ୧୧୩ ନମ୍ବର ରୁମ୍ ନୁହେଁ ନା, ଆମକୁ ୧୧୩ ନମ୍ବର ରୁମ୍ ଦରକାର । ନହେଲେ ଆମକୁ ସେ ଦିନ ମନା କରିଦେଇଥାନ୍ତ । ଆମେ ଏତେବାଟ ଏତେ କଷ୍ଟରେ ଧାଆଁ ଦୌଡ଼ କରି ଆସି ନଥାନ୍ତୁ । ନା କ'ଣ କହୁଛ ? |
| ପ୍ରଶାନ୍ତି | ନୁହେଁ ତ ଆଉ କ'ଣ ?(ମେନକାକୁ) ଦେଖନ୍ତୁ ଆଣ୍ଟି ପ୍ଲିଜ୍ ଆଜି ରାତିଟା ପାଇଁ ଆମକୁ ସେ ରୁମ୍ ଛାଡ଼ି ଦିଅନ୍ତୁ । କାଲି ସକାଳେ ଆପଣଙ୍କୁ ନିଶ୍ଚୟ ଚାବି ଫେରେଇ ଦେବୁ । |
| ପ୍ରସୂନ | (ରତିକୁ) ଅଙ୍କଲ ପ୍ଲିଜ୍, ଆଜି ରାତିଟା ପାଇଁ ଚାବିଟା ଦେଇ ଦିଅନ୍ତୁ । |
| ପାଗଳୀ | ଏକା ଲାଉର ମଞ୍ଜିଲୋ ସଙ୍ଗାତ କାହାକୁ କରିବି କାଞ୍ଜି । |
| ଭୂତନାଥ | ଦେଖୁଛୁ ତ ପାଗଳୀ,ଏ ସଂସାର ରୀତି । |
| ପାଗଳୀ | ଚୋର ଚୋରି କରି ଯେଉଁଠି, ରାତି ପାହିଗଲା  ସେଇଠି । |
| ରତିକାନ୍ତ | (ପ୍ରସୂନକୁ) ମୁଁ ବି ଆପଣଙ୍କୁ ଠିକ୍ ସେଇ କଥା କହିବାକୁ ଚାହୁଁଥିଲି । ଆଜି ରାତିଟା ଆପଣ ଅନ୍ୟ ରୁମ୍‌ରେ ଆଡ଼ଜଷ୍ଟ କରି ନିଅନ୍ତୁ କାଲି ସକାଳେ ବରଂ ମୁଁ ଆପଣଙ୍କୁ ୧୧୩ ନମ୍ବର ରୁମ୍‌ର ଚାବିଟା ଦେଇଦେବି । |
| ପ୍ରଶାନ୍ତି | ଦେଖନ୍ତୁ ଅଙ୍କଲ୍ ଆଜି ମୋର ଜନ୍ମଦିନ । ଆମ ବାହାଘର ଆଗରୁ ଆମେ ଏଇଠି ଶପଥ କରିଥିଲୁ ଯେ, ବାହାଘର ପରର ପ୍ରଥମ ଜନ୍ମଦିନ ଏଇଠି ୧୧୩ ନମ୍ବର ରୁମ୍‌ରେ ପାଳିବୁ ବୋଲି । ଆମର ସେଣ୍ଟିମେଣ୍ଟକୁ ଟିକିଏ ବୁଝିବାକୁ ଚେଷ୍ଟା କରନ୍ତୁ । ପ୍ଲିଜ୍ । |
| ମେନକା | ଆମ କାହାଣୀ ବି ଠିକ୍ ସେମିତି । ତେଣୁ ଆଜି ରାତିଟା ଆମେ ସେଇ ଘରେ ରହିବାକୁ ଚାହୁଁଛୁ । (ରତିକୁ) ହେ ଶୁଣୁଛ । |
| ରତିକାନ୍ତ | ନା ନା ଶୁଣାଶୁଣି କିଛି ନାହିଁ । ଆଜି ପାଇଁ ସେ ଘର ଆଉ କାହାକୁ ଦିଆଯାଇପାରିବ ନାହିଁ । |
| ପାଗଳୀ | ଏମନ୍ତ ମଜାରେ କହିଯାଉଥିବ   –   କେହି ନ କହିବେ ଝୁଟ୍<br>ଏମନ୍ତ ମଜାରେ ବସିଯାଉଥିବ   –   କେହି ନ କହିବେ ଉଠ୍<br>ଏମନ୍ତ ମଜାରେ ଚାଲିଯାଉଥିବ   –   କେହି ନ କହିବେ ଝୁଣ୍ଟ । |
| ପ୍ରସୂନ | ଦେଖନ୍ତୁ ଅଙ୍କଲ୍ ଭଲରେ ଭଲରେ ରୁମ୍‌ଟା ଆମକୁ ଛାଡ଼ି ଦିଅନ୍ତୁ ନ ହେଲେ ମୋତେ ଆଙ୍ଗୁଳି ଟେଢ଼ା କରିବାକୁ ପଡ଼ିବ । |
| ପ୍ରଶାନ୍ତି | ଆରେ ଆରେ। ଏଠି ହୋଟେଲ୍‌ରେ ତୁମେ ମାରପିଟ କରିବ ନା କ'ଣ ? |
| ରତିକାନ୍ତ | ମୋତେ କ'ଣ ବୁଢ଼ା ବୋଲି ଭାବିଛ କି ? ମୋତେ ବି ହାତାହାତି କରିଆସେ । ଦେଖିବ ଏଇନା । |
| ମେନକା | ଆରେ ସେ ପିଲା ଲୋକଟା କ'ଣ କହିଦେଲା ବୋଲି ତୁମେ ବି ହାତାହାତି ହେବାକୁ ବାହାରିପଡ଼ିଲ ନା କ'ଣ ? |
| ପାଗଳୀ | ଆରେ ଏତେ ପାଟି କରୁଛ ଯେ ପିଢ଼ାରେ କାଉ ବସେଇ ଦେଉନ । |

ଭୂତନାଥ — ହଉ ହଉ ଦେଖନ୍ତୁ ଏତେ କଳିଗୋଳ କରି କିଛି ଲାଭ ନାହିଁ । ମୋ ସାନ କୁହା ମାନନ୍ତୁ ଏଇ କାଗଜ ନିଅନ୍ତୁ, ଯିଏ ଯାହା ନାଁ ଲେଖନ୍ତୁ ଲଟରୀ କରିଦେବା, ଯାହା ନାଁ ଉଠିବ ସିଏ ସେଇ ଘର ପାଇବ ହେଲା । ମୁଁ ଟିକିଏ ଆସୁଛି । (ପ୍ରସ୍ଥାନ)

ପାଗଳୀ — ତାକୁ ତ ଲେଖି ଆସୁନି । ସେଇଥିରେ ପୁଣି ମ୍ୟାନେଜର ହୋଇଛି । ଲାଜ ନାହିଁ ଯାହା- କଥାରେ ନାହିଁ । ଏହିଁ କି ଏତେ ମୁଦି ନାହିଁ ଗୋଡ଼ କଚାଡୁ କେତେ
ଗୋଡ଼ରେ ଯେମନ୍ତ ମୁଦି ଥାଆନ୍ତା, କଚାଡ଼ି କଚାଡ଼ି ଭାଙ୍ଗି ଦିଅନ୍ତା ।

ଭୂତନାଥ — (ଫେରିଆସି) କାହାକୁ କହୁଛୁ ? ନିଜେ ତ ଲେଖି ଦେଲୁ ନାହିଁ । ଏଇନେ ଖାଲି ଭାଷଣ ମାରୁଛୁ ।

ପାଗଳୀ — କଥାରେ ନାହିଁ ଅନାହୂତ ପ୍ରବିଶ୍ୟତି ଅପୃଷ୍ଟ ବହୁଭାଷତେଃ ଅବିଶ୍ୱସ୍ତେ ବିଶ୍ୱସିତି ମୂଢ଼ ଚେତା ନରାଧମ । ମୋତେ ଲେଖିବାକୁ କିଏ କହିଛି କି ?

ରତିକାନ୍ତ — ପାଗଳୀ କ'ଣ ସଂସ୍କୃତ କହିଲାଣି ?

ଭୂତନାଥ — ଗାଁରେ ଜନ୍ମ ହୋଇଥିଲା । ପାଠ ପଢ଼ିଛି । ବି.ଏ. ପାସ୍ କରି ଏଠିକି ଆସିଥିଲା ଚାକିରି କରିବାକୁ ।

ପାଗଳୀ — ଗାଁରେ ମଣିଷ ଜନ୍ମ ହୁଏ ଗୋବର ଗଣେଶ ହୋଇ। ହେଲେ ସହରକୁ ଆସି ପାଗଳ ହୋଇଯାଏ । ବିଭିନ୍ନ ନିଶାରେ, କାହାକୁ ପଇସା ନିଶା ତ କାହାର ଚୋରି, ନାରୀ ନିଶା । କାହାର ମଦ ଗଞ୍ଜେଇରେ ନିଶା । ଏଇଠି ଆସି ସମସ୍ତଙ୍କ ଦୁନିଆଁ ବଦଳି ଯାଏ ।

ଭୂତନାଥ — ଆପଣମାନେ ଲେଖିଲେ ? ଏଥର ଦିଅନ୍ତୁ ଯାହା ନା ଉଠିବ ତା'ର ଏ ଚାବିକାଠି- କେହି କ'ଣ ଲେଖି ନାହାନ୍ତି ।

ପାଗଳୀ — କି ବା କଥା ଦେଖ-ଏଣେ ବାହାଘର ତେଣେ ଚଉଠି, ବେଦୀରୁ ଯାଉଛି ବର ଲେଉଟି । ଦେ ମୋତେ ଦେ ମୁଁ ଲେଖିଦେଉଛି ।

ମେନକା — ରୁହ (ରତିକାନ୍ତଙ୍କୁ) ତୁମେ ଲେଖୁନ ?

ପ୍ରଶାନ୍ତି — (ପ୍ରସୂନଙ୍କୁ) ତୁମେ ନିଜ ନାଁଟା ଲେଖିଦେଉନ ? (ଦୁହେଁ ପାଗଳୀ ପାଖରୁ କାଗଜ ନେଇ ସ୍ୱାମୀମାନଙ୍କୁ ଦେଲେ)

ପାଗଳୀ — ଝିଅ କଥାରେ କ୍ୱାଇଁ ଚାଲିଲେ, ମା'ର ଆନନ୍ଦ ଦେଖେ କିଏ ?
ବୋହୂ କଥାରେ ପୁଅ ଚାଲିଲେ ମା'ର ମନ ବିଦାରି ହୁଏ ।

ପ୍ରସୂନ — କ'ଣ ଭଡ଼ଭଡ଼ କରି ଗପୁଛୁ । ତୋ କଥା ଶୁଣୁଛି କିଏ ।

ପାଗଳୀ — କଥାରେ ନାହିଁ, ରୁଚୁ ନ ରୁଚୁ ଖା'ପିତା, ବୁଝ ନ ବୁଝ ପଢ଼ ଗୀତା । ଗୁରୁନାମ ସଦା ତୁଣ୍ଡରେ ଧରି, ବାହିଯା ଧିରେ ସଂସାର ତରୀ ।

ପ୍ରଶାନ୍ତି — ଯାର ମାନେ କ'ଣ ? କ'ଣ କହୁଛୁ ?

ପାଗଳୀ — ମୁଁ କହୁଛି-ସୀତା ହରଣ ରାବଣ ମରଣ ଯୁଗଯୁଗ କଥା ରହିଲା । ଦ୍ରୌପଦୀ ପଣତ ଟାଣିଲାବେଳକୁ ଭାରତେ ଭାରତୀ ଗାଇଲା, ସେ ପାଲା ପୁରୁଣା ହୋଇଲା । ଏଠି ନୂଆ ପାଲା ଲାଗିଲା ।

ଭୂତନାଥ — କି ପାଲା ? ଏଠି ଲାଗିଲା କହିଲୁ ?

ପାଗଳୀ — ଲଟେରି ପାଲା । (ଭୂତ ଲଟେରୀ ପକାଇଲା ଓ ପାଗଳୀକୁ ଉଠେଇବାକୁ କହିଲା ।)

ଭୂତନାଥ — ଏଥିରୁ ଗୋଟିଏ ଉଠା ।

ପାଗଳୀ — ଉଠେଇବି ତ ? ଆଇଁଚି ମନ୍ତର, କାଇଁଚି ମନ୍ତର, କାଳିଆ ମନ୍ତର ଛୁ, ଖେତକୁ ଖାଉ କି ବାଡ଼କୁ

ଖାଉ, ଦୋଷ ଦେବୁ ନାହିଁ ତୁ ।

(ମୁଣ୍ଡିଆ ମାରି କାଗଜ ଉଠେଇବାକୁ ଯାଉଛି, ପ୍ରବେଶ କଲେ ଦୁଇ ଯୁବକ ଜନ୍ ଓ ଦିଲୁ)

ଜନ୍ (ପ୍ରବେଶୀ) ଓ ମାଇ ଗଡ଼ । ଆଜି କ'ଣ ଏତେ ଭିଡ଼ । ଆଜି ଶିବରାତ୍ରି କିରେ ?

ଦିଲୁ ନା ମ ଆଜି ଆଉ କ'ଣ ହୋଇଥିବ ।

ପାଗଳୀ ଆଜି ଅମେଇସା, ଚିତଉ ଅମେଇସା ।

ପିଠା ଆଣିଛ କି ପିଠଉ ଆଣିଛ, କହିଦିଅ ଆମ ସାଇଁକୁ ।

ନାଁ ଲେଖି ଦେଇ ଚିଟାଉ ଲେଖିବେ, ଭେଜିଦେବେ ପୁରସ୍ତମକୁ ।

ଜନ୍ ଆମେ ପିଠାକି ପିଠଉ ଆଣିନୁ । ଏଠି ରହିବାକୁ ଆସିଛୁ ଆମକୁ ରୁମ୍ ଚାବି ଦିଅ ।

ଦିଲୁ ଭଡ଼ା କେତେ ?

ଭୂତନାଥ (ଖାତା ଦେଇ) ସାତଶହ । ପରିଚୟ ପତ୍ର ଦେଇ, ଏଇ ଖାତାରେ ଦସ୍ତଖତ କର । ପଇସା ଦିଅ, ମୁଁ ଚାବି ଦେଉଛି ।(ଦୁହେଁ ଖାତାରେ ଦସ୍ତଖତ କଲେ, ପଇସା ଓ ଭୋଟର କାର୍ଡ଼ ଦେଲେ ।)

ଜନ୍ ନିଅ ପଇସା ଓ ପରିଚୟପତ୍ର । ଆଉ ଆମକୁ ୧୧୩ ନମ୍ବର ରୁମ୍‌ର ଚାବି ଦିଅ ।

ଭୂତନାଥ କେତେ ନମ୍ବର ରୁମ୍ କହିଲେ ?

ଦିଲୁ ଶୁଣିଲା ନାହିଁକି ? ୧୧୩ ନମ୍ବର । ଚାବି ଦିଅ ।

ଭୂତନାଥ ପୁଣି ସେଇ ୧୧୩ । ଆଜି ଯିଏ ଆସୁଛି ସମସ୍ତଙ୍କର କ'ଣ ସେଇ ରୁମ୍‌ଟା ଦରକାର । କ'ଣ କରିବା କିରେ ପାଗଳୀ ।

ପାଗଳୀ ମୁଁ ବି ସେଇଆ ଭାବୁଛି । ଭାରି ଡର ଲାଗୁଛି । କହିଲା ଭଳିଆ

"ବାଘ ଘୋଷଡ଼ା ଠୁଁ ମଣିଷ ଘୋଷରା ମରମକୁ ଭାରି ବାଧେଲୋ ସଙ୍ଗାତ, ମରମକୁ ଭାରି ବାଧେ, ଦେଖି ହୁଏନି କି ଦେଖେଇ ହୁଏନି, ଅଜାଗା ଘାଆଟା ଲାଜେଲୋ ସଙ୍ଗାତ, ଅଜାଗା ଘାଆଟା ଲାଜେ ।

ଭୂତନାଥ ନା ନା, ଆଉ ଲାଜ କରି ଲାଭ ନାହିଁ । ଏଥର ଅଜାଗା ଘାଆଟା ଖୋଲି ଦେଖେଇବାକୁ ପଡ଼ିବ । ନହେଲେ... ।

ପାଗଳୀ ଗୋରୁ ମାଇଲେ ମଲି, ଗୋରୁକୁ ମାଇଲେ ମଲି ।

ଭୂତନାଥ ତା'ହେଲେ ରହସ୍ୟଟା ଏଥର ଖୋଲି ଦେବା ।

ପାଗଳୀ ଖୋଲିବୁ କ'ଣ ? ଏ କଥା କାହାକୁ ଅଜଣା ଅଛି କି ?

କାନ ମୂଳରେ ଉକୁଣୀ ବସା, କାନ କୁହା କଥା ଫୁସୁର ଫାସର ତୁଣ୍ଡ ବାଇଦ ସେ ସହସ୍ର କୋଶ । କଥାଟା ପରା ହାଟରେ ପଡ଼ି ବାଟରେ ଗଡ଼ଗଡ଼ ହେଉଛି ।

ସମସ୍ତେ କେଉଁ କଥା ।

ଭୂତନାଥ ସେଇ ୧୧୩ ନମ୍ବର ରୁମ୍ କଥା ପଡ଼ିଛି ।

ରତିକାନ୍ତ କାହିଁକି ? ସେଠି କ'ଣ ହୋଇଛି କି ?

ଭୂତନାଥ ସେଠି ପରା ଭୂତ ବସା କରିଛି । ନାନା ଉତ୍ପାତ କରୁଛି । ତେଣୁ ଦୁଇ ବର୍ଷ ହେଲା ତାକୁ ବନ୍ଦ କରି ଦିଆଯାଇଛି । କାହାକୁ ଦିଆଯାଉନି । ଦେଖୁ ନାହାନ୍ତି ଚାବି ଜାଗାଟାରେ ନାଲି "୦" ବୁଲେଇ ଦିଆଯାଇଛି ।

| | |
|---|---|
| ମେନକା | ସତେ ନା କ'ଣ ? ତା'ହେଲେ ମୁଁ ସେଇଠି ରହିବି ନାହିଁ । ଚାଲ ଆମେ ଆଉ କେଉଁ ଘରେ ରହିବା । |
| ଭୂତନାଥ | ୧୧୪ ନମ୍ବର ରୁମ୍ ଚାବି ନେଉ ନାହାଁନ୍ତି ? |
| ରତିକାନ୍ତ | ତୁ ତା'ହେଲେ ସେ ରୁମ୍ ଚାବି ଆମକୁ କେମିତି ଦେଉଥିଲୁ ? |
| ପାଗଳି | ମାଣିଆ ଦେଲେ, ବାପା ମାଆ ଛାଡ଼ି ଆଉ ସବୁ ମିଳେ । |
| ରତିକାନ୍ତ | (ତା' ହାତରୁ ଚାବି ନେଇ ପ୍ରସ୍ଥାନ) |
| ଭୂତନାଥ | ଆଉ ଅପାଣମାନେ । |
| ପ୍ରଶାନ୍ତି | ନାଇଁ ବା ବା ନାଇଁ, ମୁଁ ସେ ଘରେ ରହିବି ନାହିଁ । ଆମକୁ ଆଉ ଗୋଟିଏ ଘର ଦିଅ । |
| ଭୂତନାଥ | ଏଇ ନିଅନ୍ତୁ ୧୧୧ ନମ୍ବର ରୁମ୍ ଚାବି । (ପ୍ରସୂନ ଓ ପ୍ରଶାନ୍ତି ଚାବି ନେଇ ପ୍ରସ୍ଥାନ) ଆଉ ଆପଣମାନେ ଠିଆ ହୋଇ ରହିଲେ କାହିଁକି ନିଅନ୍ତୁ ୧୧୨ନମ୍ବର ରୁମ୍ ଚାବି । |
| ଦିଲୁ | ଚାଲରେ ସାଙ୍ଗ, ଧୋଇଧାଇ ହୋଇ ଶୋଇବା । ଭାରି ଟାୟାର୍ଡ଼(ଦୁହେଁ ପ୍ରସ୍ଥାନ) । |
| ଭୂତନାଥ | ଓହୋ ମଣିଷ ଟିକିଏ ତ୍ରାହି ପାଇଲା । |
| ପାଗଳୀ | ବିପତ୍ତି ଆସଇ ସାଙ୍ଗସାଥି ଧରି, ଢେଉ ପରେ ଢେଉ ପଡ଼େ କଚାଡ଼ି । ପାନ ବରଜକୁ ଯୋଖୁଥା ସଙ୍ଗାତ ଖଣ୍ଡିଖଣ୍ଡି ଖଡ଼ି କାଠି । |
| ଭୂତନାଥ | ଚାଲ୍ ଶୋଇବା । (ଭୂତ ଶୋଇଲା ପାଗଳୀ ଭିତରକୁ ଗଲା ।) (ପ୍ରବେଶ କଲେ ଜନ୍ ଓ ଦିଲୁ) |
| ଜନ୍ | କେହି କୁଆଡ଼େ ନାହିଁ । ଗଲେ କୁଆଡ଼େ ? |
| ଦିଲୁ | କୁଆଡ଼େ ସବୁ ଗଲରେ... |
| ଭୂତନାଥ | (କମ୍ବଳ ଭିତରୁ ମୁହଁ କାଢ଼ି) କ'ଣ ହେଲା । କଅଣ ଦରକାର । |
| ଜନ୍ | ପିଇବା ପାଣି... |
| ଭୂତନାଥ | ସେଇଠି ଥୁଆ ହୋଇଛି ନେଇଯାଆନ୍ତୁ । (ଦୁହେଁ ପାଣିବୋତଲ ନେଇ ପ୍ରସ୍ଥାନ) (ଲାଇଟ୍ ପଳେଇଲା) ଯାଃ– ଗଲା । କେତେବେଳେ ଆସିବ କେଜାଣି ? (ମହମବତୀ ଲଗାଇଛି) ଭିତରୁ ପାଗଳୀ ପ୍ରବେଶ) |
| ପାଗଳି | (ପ୍ରବେଶରୀ) ଉଭେଇ ଗଲେ ନଭୁଁ ଜ୍ୟୋତିଷ ଗଣେ, ଜ୍ୟୋତି ଦେଖାଇ ହେଲେ ଜ୍ୟୋତିରିଙ୍ଗଣେ । (ଭିତରୁ ଜଣେ ଜଣେ ପ୍ରବେଶ) |
| ରତିକାନ୍ତ | ତୁ ମ ହୋଟେଲରେ ଇନ୍‌ଭଟର୍ ଲଗେଇନା କାହିଁକି ? |
| ଭୂତନାଥ | ସେଇଟା ପୁଣି କ'ଣ ? |
| ମେନକା | କ'ଣ ଯେ ତୁମେ କହୁଛ ? ଏଇଟା କ'ଣ ସହର ହୋଇଛି । ନିର୍ଜନ ପାହାଡ଼ ଉପରେ ଚଟି ଘର ଏଠି ପୁଣି ଇନ୍‌ଭଟର୍ । ଦେଲ ଦେଲ ମହମବତୀ ଗୋଟିଏ ଦେଲ । |
| ଭୂତନାଥ | ମୋ ପାଖରେ ଏଇ ଗୋଟିଏ । ମ୍ୟାନେଜର ବାବୁ ଆଉ ଅଧିକା ଦେଇ ନାହାଁନ୍ତି । |
| ରତିକାନ୍ତ | ତା'ହେଲେ ଏଇଟା ଆମେ ନେଇ ଯାଉଛୁ । |
| ଭୂତନାଥ | ନା ନା...ଏଠି ଆମକୁ ଡର ଲାଗିବ । |

| | |
|---|---|
| ମେନକା | ଏଇ ଗୋଟିଏ ମହମବତୀ ତ ରଖିଛ ? ଲିଭିଲାଭି ଗଲେ କରିବ କ'ଣ ? |
| ପାଗଳୀ | ଐସା କରେଙ୍ଗ ଡେିସା କରେଙ୍ଗା<br>ସିପେହି ଦେଖିଲେ ଶୋଇ ପଡ଼େଙ୍ଗା । |
| ଭୂତନାଥ | ସେ ଠିକ୍ କହିଛି, ଆମେ ଏବେ କମ୍ବଳ ଘୋଡ଼ି ଶୋଇପଡ଼ିବୁ ଆପଣମାନେ ବି ଯାଆନ୍ତୁ ଶୋଇ ପଡ଼ିବେ । |
| ପାଗଳୀ | ଆଲୋ ମୁତୁରୀ ଶୋଇବା, ତୁ ତ ମୁତୁରୀ, ମୁଁ ମୁତୁରୀ ହେଁସ କାହିଁ ପାଇଁ ଧୋଇବା ? ବେନିଜନେ ପଡ଼ିଛି ସମଦଶା ।<br>(ପ୍ରବେଶ କଲେ ପ୍ରସୂନ-ପ୍ରଶାନ୍ତି) |
| ପ୍ରସୂନ | ହେ ବାବୁ ଆମକୁ ଗୋଟିଏ ଏର୍ମଜେନ୍‌ସି ଲାଇଟ୍ ଦେଲ । |
| ଭୂତନାଥ | ଏଠି କୌଣସି ଅଲଗା ଲାଇଟର ବ୍ୟବସ୍ଥା ନାହିଁ । |
| ପ୍ରଶାନ୍ତି | ତା'ହେଲେ ମହମବତୀ ଗୋଟିଏ ଦିଅ । ନହେଲେ ଅନ୍ଧାରରେ ଆମେ କ'ଣ କରିବା ? |
| ପାଗଳୀ | ଆଗ ହଳିଆ ଯେଉଁ ବାଟେ ପଛ ହଳିଆ ତା' ପଛେପଛେ । |
| ଦିଲୁ-ଜନ | (ପ୍ରବେଶୀ) ଆରେ ଟର୍ଚ୍ଚ କି ମହମବତୀଟେ ଦେଲ । |
| ଭୂତନାଥ | ସେଇଥିପାଇଁ ପରା ଏଠି ଧାଡ଼ି ପଡ଼ିଛି । |
| ଜନ୍ | ତା'ହେଲେ ଆମେ କରିବା କ'ଣ ? |
| ପାଗଳୀ | ଅଖ ବୁଲୁଥିଲେ ଚକ ବୁଲୁଥାଏ, ବୁଲି ଯାଉଥାଏ ପହି । ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି । |
| ରତିକାନ୍ତ | ଭଲା ହୋଟେଲରେ ଆସି ମଣିଷ ପହଞ୍ଚିଲା ଯେ ଆଲୁଅ ଟିକିଏ ବି ମିଳିବ ନାହିଁ । |
| ପ୍ରସୂନ | ଏମିତି ଅପନ୍ତରା ଜାଗାକୁ ନ ଆସିଥିଲେ ଭଲ ହୋଇଥାନ୍ତା । |
| ପ୍ରଶାନ୍ତି | ସେଇ କଥା ତ ମୁଁ ମୂଳରୁ କହୁଥିଲି, ହେଲେ ତୁମେ କହିଲ କ'ଣ ନା ଦିଅଁ ଦର୍ଶନ କରି ମାନସିକ କରି ଦେଲେ ସବୁ ଠିକ୍ ହୋଇଯିବ । |
| ଦିଲୁ | ଆମେ ତ ଜାଣିଥିଲେ ଏଠି କେବଳ ରହିବା ବ୍ୟତୀତ ଖାଇବା ପିଇବାର ସୁବିଧା କିଛି ନାହିଁ । |
| ଜନ୍ | ଏବେ ପାଟି କରି ଲାଭ କ'ଣ ? ପାହାଡ଼ ଉପରେ ଚଟିଘର... |
| ଦିଲୁ | ଖାଇବା ମିଳିବ ପାହାଡ଼ ତଳକୁ ଗଲେ । |
| ମେନକା | ତା'ବୋଲି ମହମବତୀଟିଏ ବି ମିଳିବ ନାହିଁ ? |
| ପ୍ରଶାନ୍ତି | ରଖିଥିଲେ ତ ମିଳିବ ନା । |
| ରତିକାନ୍ତ | ମହମବତୀ ରଖିନ କାହିଁକି ? |
| ଭୂତନାଥ | ମ୍ୟାନେଜର କହିଲେ ଗରାଖତ କେହି ନାହିଁ, ତୁ କ'ଣ ଏଠି ଦୀପାବଳୀ ପାଳିବୁ । ଏଇ ଗୋଟିକ ରଖିଥା । |
| ଜନ୍ | ଆପଣମାନଙ୍କ ପାଖରେ ଟର୍ଚ୍ଚ ଅଛି ତ ଦେଉ ନାହାଁନ୍ତି ଆମେ ତଳକୁ ଯାଇ ମହମବତୀ ପ୍ୟାକେଟ୍ ନେଇ ଆସିବୁ । |
| ଦିଲୁ | ତୁ ପାଗଳ ନା କ'ଣ ? ରାତି କେତେ ହେଲାଣି । ବାଘ ଭାଲୁ ପଦାକୁ ବାହାରିବେଣି । ଏତେ ରାତିରେ ତଳକୁ ଯିବା କ'ଣ ମରିବା ପାଇଁ । |

| | |
|---|---|
| ଜନ୍ | ତା'ହେଲେ କ'ଣ କରିବା ? |
| ପାଗଳୀ | କାମ ନାହିଁ ଯଦି କରମ ଖୋଜା<br>ଯେତେ କାମ ଥିଲେ ଖଞ୍ଜଣୀ ବଜା |
| ଦିଲୁ | ଗୁଡ୍ ଆଇଡ଼ିଆ । ଆଲୁଅ ଆସିବା ପର୍ଯ୍ୟନ୍ତ ଏଇଠି ବସି ଖଞ୍ଜଣି ବାଡ଼େଇ ଗୀତ ଗାଇଲେ କେମିତି ହୁଅନ୍ତା । |
| ଭୂତନାଥ | ମୋ ପାଖରେ ଖଞ୍ଜଣୀ ନାହିଁ । |
| ଜନ୍ | ଟେବୁଲ ବାଡ଼େଇ ଚଳେଇ ଦେବା... |
| ଭୂତନାଥ | ଭାରି ଭଲ ହୁଅନ୍ତା...କାରଣ ମହମବତୀ ଥିଲେ ବି ରୁମ୍‌ରେ ଗରମ ହେବ ନା...ଆଲୁଅ ଆସିବା ପର୍ଯ୍ୟନ୍ତ ଏଇଠି ବସି ଗୀତ ବୋଲିଲେ ଚଳିବ । |
| ରତିକାନ୍ତ | ମୋତେ ଗୀତ ଫିତ ଗାଇ ଆସେନି । |
| ଦିଲୁ | ଆଣ୍ଟି ଗାଇବେ । |
| ମେନକା | ବାଥ୍ ରୁମ୍ ସଙ୍ଗ, ସେ ପୁଣି ବେସୁରା ହୋଇପାରେ । |
| ପ୍ରସୂନ | ଚଳିବ । ଆମେ କେଉଁ ମହମ୍ମଦ ରଫି ନା କିଶୋର କୁମାର ହୋଇଛୁ ଯେ । |
| ପ୍ରଶାନ୍ତି | ହିନ୍ଦୀ ଗୀତ ହେଲେ ଚଳିବ ତ ? |
| ପାଗଳୀ | ନାଇଁ ନାଇଁ ଆଜେ ବାଜେ ଗୀତ ଚଳିବ ନାହିଁ । ଛାନ୍ଦ, ଚମ୍ପୂ, ଢଗଢମାଳି କରି ବୋଲୁ ନାହାଁନ୍ତି । |
| ପ୍ରସୂନ | ସେ ଗୁଡ଼ା ଆମକୁ କାହାକୁ ଆସିବ ନାହିଁ । କେବଳ ତୋ ଛଡ଼ା । |
| ପାଗଳୀ | ତା'ହେଲେଗପ କହୁନା ଗପ । ଦେଖିଲା ଚାହିଁଲା ଗପ, ଅଙ୍ଗେଲିଭେଇଲା ଗପ । ରାଜାରାଣୀ କାହାଣୀ, ସୁନାଫୁଲ, ହୀରାଫୁଲ, ବୁଢ଼ୀ ଅସୁରୁଣୀ, ନାନା ବାୟା କାହାଣୀ (ହସିଛି) |
| ଭୂତନାଥ | ହଁ ହଁ ସେଇଟା ହେଲେ ବି ଚଳିବ । କୌଣସି ପ୍ରକାରେ ରାତିଟା କଟେଇ ଦେବା କଥା ତ ଆଉ କ'ଣ ? |
| ମେନକା | ହେଲେ ଭୂତ ପ୍ରେତ ଗପ କହିଲେ ହେବନି ଡର ଲାଗିବ । |
| ପ୍ରଶାନ୍ତି | ଡାହାଣୀ, ଅସୁରୁଣୀ ଗପ ବି ନୁହେଁ । |
| ଭୂତନାଥ | ତା'ହେଲେ ଏଠି କି କିଏ କାହିଁକି ଆସିଛନ୍ତି ସେଇକଥା କୁହନ୍ତୁ । ଆପଣମାନଙ୍କର ଏଠିକି ଆସିବା ପଛରେ ନିଶ୍ଚୟ କିଛି କାରଣ ଥିବ ନା ? |
| ପାଗଳୀ | ହଁ ହଁ, କାରଣ ବିନା କାର୍ଯ୍ୟ ନାସ୍ତି । |
| ରତିକାନ୍ତ | ଠିକ୍ ଅଛି ମୁଁ ଆଗ କହୁଛି । ଆମର ବାହାଘରକୁ ୨୫ ବର୍ଷ ଆଜି ପୂରିଲା । ତେଣୁ ସେଇ ଖୁସି ମନେଇବାକୁ ଏଠିକି ଆସିଥିଲୁ । |
| ଦିଲୁ | କିନ୍ତୁ ମ୍ୟାଡ଼ାମ୍‌ଙ୍କ ବୟସ ତ ସେମିତି କିଛି ଲାଗୁନି । |
| ପ୍ରସୂନ | ଆରେ କେହି କେହି ସେମିତି ଏଭରଗ୍ରୀନ୍ ଥାନ୍ତି । ହେମାମାଳିନୀଙ୍କ ଭଳି । |
| ପ୍ରଶାନ୍ତି | ସିଏ ତୁମକୁ ପଚାରୁ ନାହାଁନ୍ତି । |
| ପ୍ରସୂନ | ସ୍ତ୍ରୀଲୋକମାନଙ୍କୁ ବୟସ ପଚାରିବାଟା ଅଭଦ୍ରାମି ତେଣୁ କହିଦେଲି । |
| ପ୍ରସୂନ | ଆଉ ନିଜ ସ୍ତ୍ରୀ ଆଗରେ ପର ନାରୀର ରୂପ ବର୍ଣ୍ଣନା କରିବାଟା ଅସାମାଜିକ । |
| ଦିଲୁ | ତା'ହେଲେ ଆଜି ଗୋଟିଏ ପାର୍ଟି ହୋଇଯାଉ । |

| | |
|---|---|
| ଭୂତନାଥ | କିନ୍ତୁ ଫୁଙ୍କ ମାରି ମହମବତୀ ଲିଭାଇବାକୁ ଦିଆଯିବ ନାହିଁ । ଏଠି କିଛି କେକ୍ ଫେକ୍ ବି ମଳିବ ନାହିଁ । ନିଜ ପାଖରେ ଯାହା ଅଛି ସେତିକିରେ କାମ ଚଳାନ୍ତୁ । |
| ପାଗଳୀ | ପାଇକ ନାହିଁ କି ପିଆଦା ନାହିଁ, ନିଶ ମୋଡ଼ାହୁଏ ଅତର ଦେଇ । |
| ଜନ୍ | କେକ୍ ଫେକ୍ ହୋଇଥିଲେ ଜମି ଯାଇଥାନ୍ତା । |
| ପାଗଳୀ | ମହରଗ ରୁ ଆସି କାନ୍ତାରରେ ପଶେ, ଗାଈ କ୍ଷୀର ଛାଡ଼ି ବାଘ କ୍ଷୀର ଖୋଜେ । |
| ରତିକାନ୍ତ | ଆମ ପାଖରେ କିଛି ଆରିଷାପିଠା ଅଛି । ଆମେ ଖାଇବାକୁ ଆଣିଥିଲୁ ଯାଉଛି ନେଇ ଆସେ । ସେଥିରେ କାମ ଚଳେଇ ଦେବା । (ମେନକାକୁ) ତମେ ଏଇଠି ଥାଅ । |
| ମେନକା | (ବ୍ୟସ୍ତ ହୋଇ) ନା ନା ତୁମେ ପାରିବନି, ପିଠା ମୁଁ ରଖିଛି ମୁଁ ଯାଏ ସଜାଡ଼ି ବାହାର କରିଦେବି । |
| ରତିକାନ୍ତ | ତା'ହେଲେ ମହମବତୀ ନେଇ ତୁମେ ଏକା ଯାଅ । ନେଇ ଆସିବ । |
| ମେନକା | ନା ନା ଏକା ଡର ଲାଗିବ । |
| ଜନ୍/ ଦିଲୁ | ତା'ହେଲେ ଆମେ ଆପଣଙ୍କ ସାଙ୍ଗରେ ଯାଉଛୁ । |
| ରତିକାନ୍ତ | ନାଇଁ ନାଇଁ ମୁଁ ଯାଉଛି ଚାଲ । (ସେମାନେ ମହମବତୀ ନେଇ ପ୍ରସ୍ଥାନ । ଦିଲୁ ଜନ୍ ବୁଲୁଛନ୍ତି ।) (ଅଶରିରୀ ନୃତ୍ୟ କଲେ) |
| ପାଗଳୀ | ସେହି ଘଇତା କଲି, ବୟସ ଗଡ଼େଇ ଦେଲି । |
| ପ୍ରସୂନ | (ଜନ୍ ଓ ଦିଲୁକୁ) ଆପଣମାନେ ଚୁପ୍ ହୋଇ ବସୁ ନାହାଁନ୍ତି । |
| ପାଗଳୀ | ଭୂତ ଦେଖୁଛି କି ଛାଇ ଦେଖୁଛି, ପଛ କଥା ମନେ ପଡ଼ିଯାଉଛି |
| ପ୍ରଶାନ୍ତି | ଭୂତ କାହିଁ । ମୋତେ ଡର ଲାଗୁଛି । |
| ପ୍ରସୂନ | ଏତେବେଳ ଯାଏ ସେମାନେ କରୁଛନ୍ତି କ'ଣ ? |
| ଭୂତନାଥ | ସେମାନେ ଯଦି ଆଉ ନ ଆସନ୍ତି ? |
| ପାଗଳୀ | ନିଶାଗରଜଇ ସାଇଁସାଇଁ, ଦିଅଁ ଖଟୁଳିକୁ ପାଟ ପଡନି<br>ଡାହାଣୀ ଯୋଗିନୀ ମାରୁଛନ୍ତି ଡିଆଁ, କିଳି କିଳା କରି ମଶାଣିଭୂଇଁ । ଏ ଭୂତ, କିଏ ମୋ ଦେହ ଛୁଇଁ ଚାଲିଗଲା । |
| ପ୍ରଶାନ୍ତି | କାହାର ନିଃଶ୍ୱାସ ମୋ ଦେହରେ ବି ବାଜୁଛି । |
| ପ୍ରସୂନ | ମୁଁ ପରା ତୁମ ପାଖରେ ବସିଛି । ମୋରି ନିଃଶ୍ୱାସ ହୋଇଥିବ । |
| ଦିଲୁ | ଅନ୍ଧାରରେ ବେଳେବେଳେ ନିଜ ନିଃଶ୍ୱାସର ଶବ୍ଦ ବି ଭୟଙ୍କର ଶୁଣାଯାଏ । |
| ଜନ୍ | ବେଳେବେଳେ ନିଜର ଛାଇ ବି ଭୂତ ଭଳି ଲାଗେ । |
| ପ୍ରଶାନ୍ତି | ଦୟାକରି ସେ ଭୂତ ପ୍ରେତ କଥା କୁହନ୍ତୁ ନାହିଁ । ଡର ଲାଗୁଛି ।(ଝଣ୍‌ଝାଣ୍ ଶବ୍ଦ ଭିତରୁ) |
| ପାଗଳୀ | (ଚମ୍‌କି) କିଏ ? (ଭିତରୁ ବିଲେଇର ମ୍ୟାଉଁ ଶବ୍ଦ ଶୁଣାଯାଏ) |
| ଭୂତନାଥ | (ହନୁମାନ ଚାଳିଶା ପଢୁଛି) ହେ ପାଗଳୀ ! ଖଟୁଳିରୁ ଦିଆସିଲିଟା ଆଣିଲୁ । |
| ପାଗଳୀ | ଆପଣା ଗେରସ୍ତ ପଚାରେ ନାହିଁ, ଆଶରା କରିଛି ଭଉଣୀ କ୍ୱାଇଁ । ତୁ ତ ସେଇଠି ବସିଛୁ । ହାତ ବଢ଼େଇ ଆଣୁନୁ । ନା–ସେତେବେଳକୁ ନାହିଁ । କହିଲା ଭଳିଆ– କେହି ନ କହନ୍ତି ଆପଣା ଗୋହି । ସମସ୍ତେ କହନ୍ତି ଦିଅର ନେଇ । |
| ଭୂତନାଥ | ତା'ହେଲେ କ'ଣ ଅନ୍ଧାରରେ ଏମିତି ବସିଥିବା ? |

| | |
|---|---|
| ପାଗଳୀ | ଆପଣା ବସ୍ତ୍ର ଅନ୍ୟକୁ ଦେଇ, ଶିବ ଚାଲିଲେ ଲଙ୍ଗଳା ହୋଇ । ଯେମିତି କରମ ସେମିତି ଫଳ । ମୁଣ୍ଡ ବାଳ ଭିଡ଼ି ବିଦାରି ମର । ତାଙ୍କୁ ମହମବତୀ ଦେଇ ଦେଲୁ କାହିଁକି ? |
| ଭୂତନାଥ | ପିଠା ଲୋଭରେ |
| ପାଗଳୀ | ଲୋଭେ ପାପ ପାପେ ମୃତ୍ୟୁ ବୋଲି କ'ଣ ଜାଣିନୁ । (ଚିତ୍କାର କରି) ଇଲୋ ବୋଉଲୋ । ମୋ ପାଖ ଦେଇ କିଏ ଚାଲିଗଲା । (ବାହାରୁ କୁକୁର କାନ୍ଦିବାର ସ୍ୱର । ପ୍ରବେଶ କଲେ ରତି ମେନକା) |
| ରତିକାନ୍ତ | କିରେ କ'ଣ ଡର ଲାଗୁଛି ? |
| ଭୂତନାଥ | ନାଇଁ ଡରମାଡ଼ିବ କାହିଁକି ? |
| ପାଗଳୀ | ଡର କାହାକୁ ଭୟ କାହାକୁ ଠାକୁରେ ଅଛନ୍ତି ଚଉବାହାକୁ । |
| ପ୍ରଶାନ୍ତି | ମୋତେ କିନ୍ତୁ ଡର ଲାଗୁଥିଲା । |
| ଦିଲୁ | ଆମେ କିନ୍ତୁ ଡରିନୁ । |
| ପାଗଳୀ | ମୁହଁ ଇସ୍ପାତ, ପଛ ତେଣେ ଶନିପାତ । |
| ସମସ୍ତେ | (ମେନକା ସମସ୍ତଙ୍କୁ ବାଡ଼ି ଦେଲା ସମସ୍ତେ) ହାପି ଆନିର୍ଭିସରୀ ଟୁ ୟୁ (ତାଳି ମାରିଲେ) |
| ପ୍ରସୂନ | ଏ ପାଗଳି କିଛି ବୁଝୁଛୁ ? |
| ପାଗଳୀ | ବାହା ହୋଇନି ବୋଲି କ'ଣ ବରଯାତ୍ରୀ ଯାଇନି । କହିଲା ଭଳିଆ–<br>ମୋ ନିଶ କେବେ ନ ଥିଲେ ନାହିଁ<br>ମୁଁ କି କାହାର ନିଶ ଦେଖିନି ? |
| ଜନ୍ | ଏଥର ଆପଣଙ୍କ କଥା ଆରମ୍ଭ କରନ୍ତୁ । |
| ରତିକାନ୍ତ | ପିଲାଦିନ ମୋର ବେଶ୍ କଷ୍ଟରେ କଟୁଥିଲା । ଓଳିଏ ଖାଇଲେ ଦି'ଓଳି ଓପାସ ରହିବାକୁ ପଡୁଥିଲା । ବଡ଼ ହେଲା ପରେ ମୁଁ ଗାଁ ଛାଡ଼ି ସହର ପଳେଇ ଆସିଲି । ଜଣେ ବଡ଼ ଲୋକଙ୍କ ଘରେ କାମଦାମ କଲି । କୁକୁର ପାଳିବା, ଘର ସଫା କରିବା, ପରିବା ହାଟ, ବୋଲହାକ ସବୁ କଲି । ଆଉ ଇଭ୍ନିଙ୍ଗ କଲେଜରେ ପାଠ ପଢ଼ି ବି.ଏ ପାସ୍ କଲି । ପରେ ସେ ବାବୁ ଖୁସି ହୋଇ ତାଙ୍କ ଭିନ୍ନକ୍ଷମ ଝିଅକୁ ମୋତେ ବାହା କରି ସବୁ ସମ୍ପତ୍ତି ମୋତେ ଦାନ କରିଦେଲେ । |
| ପାଗଳୀ | ଅରକ୍ଷିତକୁ ଦଇବ ସାହାଲୋ କହିଛନ୍ତି ମହାଜନେ । |
| ମେନକା | ନାଇଁ ନାଇଁ ସମ୍ପତ୍ତି ସବୁତ ଅପାଙ୍କ ନାଁରେ ଥିଲା । |
| ରତିକାନ୍ତ | ସେଇ ଏକା କଥା । ୟାଙ୍କ ଅପା ମରିଗଲା ପରେ ସମ୍ପତ୍ତି ସବୁ ଆପେଆପେ ମୋ ନାମକୁ ଚାଲି ଆସିଲା । ୟା ଭିତରେ ମୁଁ ବ୍ୟବସାୟ ଆରମ୍ଭ କରି ଦେଇଥିଲି, ସେଥିରୁ ପ୍ରଚୁର ଆୟ ହେଉଥିଲା । ସତେ ଯେମିତି ମାଟି ଛୁଇଁଲେ ସୁନା ପାଲଟି ଯାଉଛି । ଆଉ ସେତିକିବେଳେ ମୋ ଖୁଡୁତାଶୁର ଝିଅ ଏଇ ମେନକା ସହିତ ମୋର ବାହାଘର ହୋଇଗଲା । |
| ପ୍ରଶାନ୍ତି | ସତେ ନା କ'ଣ ? |
| ମେନକା | ଏହା କିନ୍ତୁ ସଂପୂର୍ଣ୍ଣ ସତ୍ୟ ନୁହେଁ । ଏହାକୁ ଅର୍ଦ୍ଧ ସତ୍ୟ ବୋଲି ଧରି ନିଆଯାଇପାରେ । |
| ପାଗଳୀ | ଅଧା ସୁନା ଅଧା ପିତଳ, ସୁନାରେ ଯାଏ କି ପିତଳେ ଯାଏ କିଏ ଦେବ ତା'ର ଉତ୍ତର ? |
| ରତିକାନ୍ତ | ମେନକା ! ମେନକା ତୁମେ ଚୁପ୍ ରୁହ । ମୋ କଥା ଉପରେ କଥା କହିବା ମୁଁ ସହିପାରେନା ତୁମେ ଜାଣ । |

| | |
|---|---|
| ମେନକା | ହୁଁ...(ଉଠି ଘରଆଡ଼େ ପଳାଇଲା, ପଛେପଛେ ରତିକାନ୍ତ) |
| ପାଗଳୀ | ରହିବି ଯେବେ କହିବି ନାହିଁ । କହିବି ଯେବେ ରହିବି ନାହିଁ । |
| ରତିକାନ୍ତ | (ଘର ଭିତରେ) ପଳେଇ ଆସିଲ କାହିଁକି ? |
| ମେନକା | ସମସ୍ତଙ୍କ ଆଗରେ ଅପମାନିତ ହେବାକୁ ଚାହେଁନି । |
| ପାଗଳୀ | ଆପଣା ସୁନା ତ ଭେଣ୍ଡି । କହିଲା ଭଳିଆ, ବାଡ଼ ଯେବେ କ୍ଷେତ ଖାଇ, କହ କାହାକୁ ଦୋଷ ଦେଇ । |
| ରତିକାନ୍ତ | କ'ଣ ଅପମାନିତ କଲି ବୁଝିପାରୁନି । |
| ମେନକା | ମିଛ ପରେ ମିଛ କହି ଚାଲିଛ । ଲାଜ ଲାଗୁନି କି ସରମ ନାହିଁ । |
| ପାଗଳି | କହି ଜାଣିଥିଲେ କଥା ସୁନ୍ଦର ଲୋ, ବାନ୍ଧି ଜାଣିଥିଲେ ମଥା ।<br>କହିଲାବାଲାକୁ କୁହାଳିଆ କହି, ଶୁଣିଲାବାଲା ତ ଶ୍ରୋତା ।<br>ଦେଖିଲାବାଲା ତ ଦେଖଣା ହାରି ଏ, ବୁଝିଲାବାଲା ବୁଝେ ମରମ କଥା । |
| ରତିକାନ୍ତ | ଓହୋ ! ନିଜେ ପରା ସତୀ ସାବିତ୍ରୀ । ଆରେ ସତ କହେ କି ମିଛ କହେ । ତୁମ ସାମ୍ନାରେ କହୁଛି । ତୁମ ଭଳିଆ ଲୁଚିଲୁଚି ପଛପଟରୁ ଛୁରୀ ଭୂଷିବାର ଚେଷ୍ଟା କରୁନି । |
| ମେନକା | ସେଇଟା ତୁମର ନିଜର ଚରିତ୍ର । ଭାବିଛ ମୁଁ କିଛି ଜାଣିନି ? କିନ୍ତୁ ଜାଣିଲାବେଳକୁ ବହୁତ ଡେରି ହୋଇଗଲା । ବାହାଘର ଆଗରୁ ଜାଣିଥିଲେ କେବେ ବି ବରଦାସ୍ତ କରିନଥାନ୍ତି । |
| ପାଗଳୀ | କାଳ ତ ହେଲାଣି ବାବରା, ଅସତୀ ଖାଆନ୍ତି ବାସୁମତୀ ଭାତ, ସତୀଙ୍କି ନମିଳେ ବଗଡ଼ା । |
| ରତିକାନ୍ତ | କ'ଣ କରିଥାନ୍ତ ? ବାହା ହୋଇନଥାନ୍ତ, ଏଇଆ ତ ? ଖୁବ୍ ଭଲ ହୋଇଥାନ୍ତା । |
| ମେନକା | ମୋତେ ବି ଏମିତି ଅନୁତାପର ନର୍କରେ ସଢ଼ିସଢ଼ି ମରିବାକୁ ପଡ଼ି ନଥାନ୍ତା । |
| ରତିକାନ୍ତ | ମହାରାଣୀ ଭଳି ତ ଚଳୁଛ । ଅଭାବ କେଉଁଠି ନା ଅସୁବିଧା କେଉଁଠି ? |
| ମେନକା | କାହା ମହାରାଣୀ । ତୁମ ଭଳି ଜଣେ ଖୁନି, ନିଶା ବେପାରୀ, ମାଫିଆର ମହାରାଣୀ । ବିଶ୍ୱାସଘାତକର ମହାରାଣୀ ? |
| ରତିକାନ୍ତ | କାହାର ବିଶ୍ୱାସଘାତକ ? |
| ମେନକା | ମୋର ବଡ଼ ବାପା, ବଡ଼ ମା' ଆଉ ମୋ ଅପାର । |
| ରତିକାନ୍ତ | ସେମାନେ ଅସୁସ୍ଥ ଥିଲେ ହସ୍‌ପିଟାଲ୍‌ରେ ପଡ଼ିପଡ଼ି ମରିଗଲେ । |
| ମେନକା | ସେ କଥା ତୁମେ ପ୍ରଚାର କରିଛ । କିନ୍ତୁ ଅସଲ କଥା ହେଲା, ଡାକ୍ତରଙ୍କୁ ହାତ କରି ସ୍ଲୋ ପଏଜନ୍ ଦେଇ ତୁମେ ସେମାନଙ୍କୁ ମାରି ଦେଇଛ । |
| ରତିକାନ୍ତ | ଶାରୀରିକ ଯନ୍ତ୍ରଣାରୁ ସେମାନେ ମୁକ୍ତି ପାଇଗଲେ ଆଉ ତୁମକୁ ବାହା ହେବାର ବାଟ ବି ଖୋଲିଗଲା । |
| ମେନକା | ପ୍ରଥମେ ମୁଁ ସେଇଆ ଭାବିଥିଲି । କିନ୍ତୁ ସେମାନଙ୍କ ମୃତ୍ୟୁ ରହସ୍ୟ ଜାଣିବା ପରେ ନିଜକୁ ଧିକ୍କାର କରୁଛି । |
| ରତିକାନ୍ତ | ତୁମକୁ ସେ କଥା କିଏ କହିଲା ? ସେଇ ଡାକ୍ତର, ଯାହା ପ୍ରେମରେ ଆଜିକାଲି ତୁମେ ଉବୁଟୁବୁ ହେଉଛ ? |
| ପାଗଳୀ | ଚାଲୁଣି କହୁଛି ଛୁଞ୍ଚିକି ତୋ ପଛରେ ଗୋଟେ କଣା । |

| | |
|---|---|
| ମେନକା | ନାଲି ଚଷମା ପିନ୍ଧିଲେ ପୃଥିବୀଟା ନାଲି ଦେଖାଯାଏ । |
| ରତିକାନ୍ତ | ମୋ ଆଖି ବେଙ୍ଗ ଆଖି ଭଳି । ମୋ ସାମ୍ନାରେ ଘଟୁଥିବା ଘଟଣାକୁ ମୁଁ ଯେମିତି ଦେଖିପାରେ ମୋ ପଛରେ ଘଟୁଥିବା ଷଡ଼ଯନ୍ତ୍ର ସବୁକୁ ଠିକ୍ ସେମିତି ଦେଖିପାରେ । |
| ମେନକା | ଯେମିତି କର୍ମ ସେମିତି ଫଳ... |
| ପାଗଳୀ | ଜନମ ହେବ ଯଥାକଥା, କରମ କରିବ ଭଲା ।<br>କରମ ଯଦି ନହେବ ଭଲା, ଜୀଇଁ ଥାଉଁଥାଉଁ ମଲା । |
| ରତିକାନ୍ତ | (ତା ବେକକୁ ଧରି) ଚୁପ୍...ଚୁପ୍ ଏକଦମ୍ ଚୁପ୍ । ଚରିତ୍ରହୀନା ନାରୀ । |
| ମେନକା | ଆଃ... |
| ଜନ୍ | କ'ଣ ହେଲା ମ୍ୟାଡ଼ାମ୍ ଚିତ୍କାର କଲେ କାହିଁକି ? |
| ରତିକାନ୍ତ | (ଭିତରୁ) ତା' ଉପରେ ଝିଟିପିଟି ଟାଏ ପଡ଼ିଗଲା ତ ଡରରେ ସେ ପାଟି କରିଦେଲା । (ଭିତର ଲାଇଟ୍ ଲିଭିଗଲ ଓ ବାହାର ଲାଇଟ୍ ଆସିଲା ।) |
| ପାଗଳୀ | (ପାଖକୁ ଆସି) କହି ଜାଣିଥିଲେ କଥା ସୁନ୍ଦରଲୋ, ଗଡାକୁ ସୁନ୍ଦର ମଲ୍ଲୀ, ବଖାଣୀ ଜାଣିଲେ ରାଜାରାଣୀ ଗପ, ମିଛ ଲାଗେ ସତ ବୋଲି । (ପୂର୍ବ ଜାଗାକୁ ଫେରିଆସିଲା) |
| ଭୂତନାଥ | କ'ଣ ଦେଖିଲୁ କି ପାଗଳୀ । |
| ପାଗଳୀ | ଅତି ସୁନ୍ଦରୀଲୋ ଚହଟଗୋରୀ, ଆଗେ ତୋତେ ହେଲି ବିଭା ।<br>ଏବେ ଯହୁଁ ଧନ ବୟସ ସରିଲା, ଦାଣ୍ଡେ ବସାଉଛୁ ସଭା । |
| ଦିଲୁ | ସେମାନଙ୍କ କଥା ଛାଡ଼ନ୍ତୁ । ଏବେ ଆପଣଙ୍କ କଥା କହନ୍ତୁ । |
| ପ୍ରସୂନ | ଆଲୁଅ ଆସିଲାଣି । ରାତି ବି'ଅନେକ ହେଲାଣି । ଚାଲ ଶୋଇପଡ଼ିବା । |
| ଜନ୍ | ଅନ୍ୟର କଥା ଶୁଣିବାକୁ ଭଲ ଲାଗେ । କିନ୍ତୁ ଆପଣା ଗୁମର କହିବାକୁ ସମସ୍ତଙ୍କୁ ସରମ ଲାଗେ । |
| ପ୍ରସୂନ | (ରାଗରେ) କ'ଣ କହିଲ ? |
| ପ୍ରଶାନ୍ତି | କଥା କଥାକେ ନାକ ଅଗରେ ରାଗ ଧରି ବୁଲୁଛ । ଚାଲ ତୁମ୍ଭକୁ ଚାଲ । (ଚାଲିଗଲେ) |
| ପାଗଳୀ | ଅତି ଉତ୍ତୁକୁଳା ହୁଅନା କହୁଛି, ବଢ଼ିଗଲେ ହେବୁ ବାଉଁଶ । ଚିରିଦେଲେ ହେବୁ କୁଲା ବାଉଁଶିଆ, ପୋଡ଼ି ଦେଲେ ହେବୁ ପାଉଁଶ । |
| ଦିଲୁ | ତାଙ୍କ କଥା ଛାଡ଼ ଚାଲ ଆମ ଗପ ଆରମ୍ଭ କରିବା । |
| ପ୍ରଶାନ୍ତି | (ଫେରିଆସି ପୁଣି ଆଲୁଅ ଲିଭିଗଲା । ଅଶରିରୀମାନେ ନୃତ୍ୟ କଲେ ।) |
| ପାଗଳୀ | ବିଜୁଳୀ ନାନୀ । ଛଟକେ ଛଟକ ଦେଖାଏ ପୁଣି। ଦିଆସିଲ ମାର ଭୂତ ଡର ଲାଗୁଛି । |
| ପ୍ରଶାନ୍ତି | ପୁଣି ଆଲୁଅ ଲିଭିଗଲା । |
| ପ୍ରସୂନ | ସବୁ ଏଇ ମାନଙ୍କ ଚାଲ । |
| ଜନ୍ | ଆମେ କ'ଣ ମନ୍ତ୍ରତନ୍ତ୍ର ଜାଣିଛୁ ଯେ, ଆଲୁଅ ଲିଭେଇ ଦେଲୁ । |
| ପାଗଳୀ | ଅନ୍ଧାର କଣା ଯେଣେ ଗଲେ ତେଣେ ବଣା ।<br>କହିଲା ଭଳିଆ ତାଳ ବରଡ଼ାରେ ବସିଲା କାଉ      ଗଛରୁ ଖସିଲା ତାଳ ।<br>ସଙ୍ଗାତ କହିଲା ଦେଖଲୋ ବଉଳ      ସରୁ ଚୁକୁଳିକୁ ଚୁନା କୁଟିଥିଲି<br>କାଉ ପାରିଦେଲା ତାଳ । |

ଭୂତନାଥ — ହଉହଉ ଆପଣ ଏବେ ରାଗଛାଡ଼ି ଗପ ଆରମ୍ଭ କରନ୍ତୁ ।

ପ୍ରସୂନ — ମୋତେ ସେମିତି କିଛି ଭଲ ଭାବରେ କହି ଆସେନା

ଦିଲ୍ଲୁ — ତା'ହେଲେ ମ୍ୟାଡ଼ାମ୍ କହନ୍ତୁ ।

ପ୍ରସୂନ — ନାଇଁ ମୁଁ କହୁଛି ।

ପାଗଳୀ — ଢମଣା, ବୁଲିବୁଲି ପୁଣି ସେଇ ଅଗଣା । କହିଲା ଭଳିଆ । ନଇରେ ବାଳିଆ ଚହଟିଗଲା, ସେଇ ପୋଡ଼ା ମୁହାଁ ଲେଉଟିଲା ।

ପ୍ରସୂନ — କାହାକୁ କହୁଛୁ ?

ଭୂତନାଥ — ତା'କଥା କାହିଁକି ଶୁଣୁଛନ୍ତି । ମନକୁ ମନ ଗପିବା ତା'ର ଅଭ୍ୟାସ ।

ପ୍ରସୂନ — ଆମେ ଦୁହେଁ କଲେଜରେ ପଢ଼ିଲାବେଳେ ପରସ୍ପରକୁ ଭଲ ପାଇବସିଲେ ।

ଜନ୍ — ଆପଣ ତାଙ୍କୁ ଫସେଇ ଦେଇଥିବେ ।

ଦିଲ୍ଲୁ — ମ୍ୟାଡ଼ାମ୍‌ଙ୍କ ରୂପ ଯାହା ତୁ ହେଇଥିଲେ ବି ସେଇଆ କରିଥାନ୍ତୁ ।

ପ୍ରସୂନ — (ବେକ ଧରି) ସେଟ୍ ଅପ୍ ।

ଜନ୍ — (ପିସ୍ତଲ ବାହାର କରି) ଛାଡ଼ନ୍ତୁ ନ ହେଲେ ।

ପ୍ରଶାନ୍ତି — ଆରେ ଆରେ ଛାଡ଼ନା...(ପ୍ରସୂନ ଛାଡ଼ି ଦେଲେ)

ଜନ୍ — (ପିସ୍ତଲ ରଖିଲା ।) ହୁଁ ।

ପାଗଳୀ — ଏଣେ ବାହାଘର ତେଣେ ଚଉଠି, ବେଦୀରୁ ଯାଉଛି ବର ଲେଉଟି । ଝିମିଟି ଖେଳରୁ ମହାଭାରତ, ସାଧୁ ନ ହୁଅ ଅଣାୟତ।

ଭୂତନାଥ — ସବୁ ଗଡ଼ବଡ଼ ହୋଇଗଲା ଆଉ କ'ଣ ଗପ ଚାଲିବ ।

ପାଗଳୀ — ୟାର ଦେଖି ତା'ର ଦେଖି ଫରକିଲା ମୋର ଡାହାଣ ଆଖି । ଛାଡ଼ ସେ କଥା–ଏକା ମାଘେ ଶୀତ ସରେ ନାହିଁ । ଶାଶୁ ପାଳିପରେ ବୋହୂ ପାଳି ଆସେ, ଏକଥା କ'ଣ କିଏ ଜାଣେ ନାହିଁ ।

ଭୂତନାଥ — କୁହନ୍ତୁ ତା'ପରେ କ'ଣ ହେଲା ।

ପ୍ରସୂନ — ଆଉ କ'ଣ ବାକି ଅଛି ଯେ କହିବି ?

ଦିଲ୍ଲୁ — ସରି ସାର୍ ।

ଜନ୍ — ସରି ମ୍ୟାଡ଼ାମ୍ । ରିଏଲି ଆଇ ଆମ୍ ଭେରି ସରି ।

ପାଗଳୀ — କଇଁଆ ପତରେ ଛାଇଲି ଘର, ମେଘ ବରଷଇ ଦରଦର<br>କହିଲେ କୁଳ କୁଟୁମ୍ବକୁ ଲାଜ, ନ କହିଲେ କୂଳ ଭାସିଯାଉଛି ।

ଭୂତନାଥ — ଛାଡ଼ନ୍ତୁ ସେକଥା । ଏଥର ଆରମ୍ଭ କରନ୍ତୁ ।

ପ୍ରସୂନ — ଆମେ ସିନା ବାହା ହେବାକୁ ରାଜି ହୋଇଗଲୁ ହେଲେ ଆମ ଦୁଇ ପରିବାର ରାଜି ହେଲେନି ।

ପ୍ରଶାନ୍ତି — ଦୁଇ ପରିବାର ନୁହେଁ, କେବଳ ଆମ ପରିବାର ରାଜି ନ ଥିଲେ ।

ପ୍ରସୂନ — ତୁମେ ଚୁପ୍ ରୁହ ।

ଜନ୍ — ରାଜି ନ ହେବାର କାରଣ ।

ଦିଲ୍ଲୁ — ସିନେମାର ପୁରୁଣା କାହାଣୀ ଭଳିଆ ହୋଇଥିବ । ଧନୀ ଘର ପୁଅ ଗରିବ ଘରର ଝିଅ, ନହେଲେ ଧନୀ ଘର ଝିଅ ଗରିବ ଘରର ପୁଅ ।

ଜନ୍ ନହେଲେ ଭିନ୍ନଭିନ୍ନ ଜାତି ବା ସମ୍ପ୍ରଦାୟ ବି ହୋଇ ଥାଇପାରେ ।

ଭୂତ ସେ କଥା ଥାଉ । ତା'ପରେ କ'ଣ ହେଲା କହନ୍ତୁ ।

ପାଗଳୀ ପେରେମ ପୀରତି ଓଳିଆ ଗଜା, ଭିତରେ ରସାଳ ଉପରେ ଭଜା ।

ପ୍ରସୂନ ଆମେ କିନ୍ତୁ ବାହା ହେବାର ସିଦ୍ଧାନ୍ତ ନେଲୁ । ଇତି ମଧ୍ୟରେ ମୋର ବି ଗୋଟିଏ ବିଦେଶୀ କମ୍ପାନୀରୁ ଚାକିରି ଆସିଗଲା । (ପ୍ରଶାନ୍ତି ପ୍ରସୂନକୁ ଚାହିଁଲା) ବାସ୍ ଆମେ ଘର ଛାଡ଼ି ପଳେଇ ଆସିଲୁ । ଆଉ ବାହା ହୋଇ ସୁଖରେ ରହିଲୁ । ଆମ ଗପ ସରିଲା ।

ପାଗଳୀ ଏଇ କଥାକୁ ନାଆ ଠେଲି ଦେଲି କଲିକତାକୁ । ଅତି ଆଡ଼ମ୍ବରରେ ଲଘୁକ୍ରିୟା, ପାହାଡ଼ ଖୋଳି ପାଇଲି ଚୁହା ।

ପ୍ରଶାନ୍ତି ନା ନା ତା'ପରେ ହିଁ ଆମର ଅସଲ କାହାଣୀ ଆରମ୍ଭ ହେଲା ।

ପ୍ରସୂନ ପ୍ରଶାନ୍ତି...ଚୁପ୍‌କର...ଚାଲ ଭିତରକୁ ଚାଲ(ଟାଣିଟାଣି ନେଇଗଲା)

ପ୍ରଶାନ୍ତି (ଭିତରେ) ଜୀବନସାରା ଆଉ କେତେ ଦୌଡ଼ିବ ? ଚୋର ପୋଲିସର ଏ ଲୁଚକାଳି ଖେଳ କ'ଣ ସରିବ ନାହିଁ । ମିଛର ସାମ୍ରାଜ୍ୟ ତୁମର ସିଆଡ଼େ ଛାରଖାର ହୋଇଗଲାଣି । ଅଥଚ ତୁମେ ପାଗଳଙ୍କ ଭଳି ଏଠୁ ସେଠି କି ସେଠୁ ଏଠିକି ଧାଇଁ ବୁଲୁଛ । ତୁମେ କ'ଣ ଜାଣିନ ଦିନେ ନା ଦିନେ ମିଛ ଧରାପଡ଼ିଯିବ ।

ପାଗଳୀ ହାତୀ ମାରି କୁଲା ଘୋଡ଼େଇ ଦେଲେ ସେ କଥା କି କେବେ ଲୁଚଇ ଭଲେ ।
କଥାରେ ନାହିଁ ସପନେ ମଣୁଛି ସେ ରାଜଜେମା, ଘୋଡ଼େଇ ଶୋଇଛି ହେଁସ ମଶିଣା ।
ଅଧର୍ମ ବିତ୍ତ ବଢ଼େ ବହୁତ, ଗଲାବେଳେ ଯାଏ ମୂଳ ସହିତ ।

ପ୍ରସୂନ କ'ଣ ମୁଁ ମିଛ କହିଲି ?

ପ୍ରଶାନ୍ତି ତା'ହେଲେ ବର୍ଷେ ହେଲା ଘର ଦ୍ୱାର ଛାଡ଼ି, ଏ ସହର ସେ ସହର, ଏଗଳିରେ ସେ ଗଳି ଘୂରି ବୁଲୁଛ କାହିଁକି ? ଭାବିଛ ମୁଁ କିଛି ଜାଣିନି । ତୁମେ କେଉଁ ବିଦେଶୀ କମ୍ପାନିରେ ଚାକିରି କରିଥିଲ କୁହ ? ତୁମେ ଚାକିରି ନୁହେଁ ଚିଟ୍ ଫଣ୍ଡ ବେପାର କରୁଥିଲ । ଅଧିକ ସୁଧର ଲୋଭ ଦେଖାଇ ଲୋକଙ୍କଠାରୁ କୋଟିକୋଟି ଟଙ୍କା ମାରିନେଇ ନିଜେ କୋଟିପତି ହୋଇଗଲ । ଏବେ ସିବିଆଇ ଖୋଜିଲାବେଳକୁ ତୁମେ ଲୁଚିଲୁଚି ବୁଲୁଛ । ଭାବିଛ କେବେ ଧରାପଡ଼ିବ ନାହିଁ ନୁହେଁ ।

ପାଗଳୀ ଆଇଁଚି ମନ୍ତର, କାଇଁଚି ମନ୍ତର, କେତେ ବା ହୁନ୍ଦର କରୁଛୁ ବାବୁ
ଅଣଚାଷ ବାଆ ଥମିଗଲା ପରେ, ପାଳ ଦଉଡ଼ିରେ ବନ୍ଧା ପଡ଼ିବୁ ।

ପ୍ରସୂନ ଭଲ କରିଛି । କାହା ପାଇଁ କରିଛି ଏସବୁ ?

ପ୍ରଶାନ୍ତି କ'ଣ ମୋ ପାଇଁ ? ମୁଁ ତୁମକୁ ମାଗିଥିଲି; ଗାଡ଼ି ଘୋଡ଼ା ବଙ୍ଗଳା ?

ପ୍ରସୂନ ତୁମ ବାପା ଚାହୁଁଥିଲେ ।

ପ୍ରଶାନ୍ତି ସେ ଚାହୁଁଥିଲେ ତୁମେ ରୋଜଗାର କର । ଚୋରି କରି ରୋଜଗାର କରିବାକୁ ସେ କହିନଥିଲେ ।

ପ୍ରସୂନ ସବୁ କ'ଣ ମୋରି ଦୋଷ ? ଲୋକଙ୍କର କ'ଣ କିଛି ଦୋଷ ନାହିଁ ? ସେମାନେ ବି ତ ଅଧିକ ସୁଧର ଲୋଭରେ ଟଙ୍କା ରଖିଲେ । ସେମାନେ କ'ଣ ସମସ୍ତେ ମୂର୍ଖ ? ସେମାନେ କ'ଣ ଜାଣନ୍ତି ନାହିଁ ? ସୁଧ ଟଙ୍କା କ'ଣ ଗଛରୁ ଫଳେ ।

ପ୍ରଶାନ୍ତି ଏବେ କିନ୍ତୁ ଦୋଷୀ ତୁମେ, ଆଜି ନ ହେଲେ କାଲି ତୁମେ ଧରାପଡ଼ିବ, ଆଉ ଦଣ୍ଡ ପାଇବ ।

| | |
|---|---|
| ପାଗଳୀ | କହିଲା ଭଳିଆ, ଯେତେ କଲେ ତୁମେ ହୁନ୍ଦର, ଫିନ୍ଦର, ମରଣ କି କେବେ ଛାଡ଼ିବ ।<br>ଲଣ୍ଡଭଣ୍ଡ ହୋଇ ହେଁସରେ ହଗିଲେ<br>ଯମ ରାଜା କେବେ ଛାଡ଼ିବ ? |
| ଭୂତନାଥ | ତୁ ଟିକିଏ ଚୁପ୍ କର ଭଲା । |
| ପାଗଳୀ | ମୁଁ କ'ଣ ଭୁଲ୍ କହିଲି ? କଥାରେ ନାହିଁ । ମର୍ତ୍ତମଣ୍ଡଳେ ଦେହ ବହି, ଦେବତା ହୋଇଲେ ମରଇ । |
| ପ୍ରସୂନ | ସେତେବେଳେ ଦେଖାଯିବ । କିନ୍ତୁ ତା' ଆଗରୁ ମୁଁ ଧରାପଡ଼ି ଜେଲ୍ ଯିବାକୁ ଚାହେଁନି । |
| ପାଗଳୀ | କଞ୍ଚା ପଣସକୁ କଞ୍ଚା ବୟସ, କାଟିଦେଲେ କ୍ଷୀର ଅପରାପତ । |
| ପ୍ରଶାନ୍ତି | ସେମିତି ମିଛ ସପନ ଦେଖୁଥାଅ । ହେଲେ ମୋତେ ଏ ବନ୍ଧନରୁ ମୁକ୍ତ କରିଦିଅ । |
| ପାଗଳୀ | ସୁନା ପଞ୍ଜୁରୀ କି ରୂପା ପଞ୍ଜୁରୀ, ଶାରୀ ତ ବିଚରା ବନ୍ଧା ପଡ଼ିଛି । |
| ପ୍ରସୂନ | ସବୁ ଚୋର ପୋଲିସ୍ ଖେଳରେ ପୋଲିସ୍ ଜିତେନା । ଦେଖିବ ଏଥର ମୁଁ ନିଶ୍ଚୟ ଜିତିଯିବି । |
| ପ୍ରଶାନ୍ତି | ରାବଣ ବି ଏମିତି ଦିନେ ଭାବିଥିଲା ସ୍ୱର୍ଗକୁ ନିଶୁଣି କରିବ । ହେଲେ ପାରିନଥିଲା । |
| ପାଗଳୀ | ଗଞ୍ଜେଇଖିଆ ଯେବେ ହାତୁଡ଼ି ଧରେ ଦିଅଁ ଗଢୁଗଢୁ ବାନ୍ଦର ଗଢ଼େ । |
| ପ୍ରସୂନ | ତୁମେ ଖାଲି ମିଛଟାରେ ଛାନିଆ ହେଉଛ । |
| ପାଗଳୀ | ଆକାଶ କଇଁଆ ଚିଲିକା ମାଛ । କଡ଼େଇ ନଥାଇ ତେଲରେ ଭାଜ । |
| ପ୍ରଶାନ୍ତି | ମୋତେ ଭାରି ଡର ଲାଗୁଛି । ମୋ କଥା ମାନ ତୁମେ କୋର୍ଟରେ ସରେଣ୍ଡର କରିଦିଅ । |
| ପାଗଳୀ | ଧଣ୍ଡ ବା ପୁଡ଼ାର ମଉଜ ସରେ, ଚାଷୀ ଠେଙ୍ଗୁଣୀର ଏକା ପାହାରେ । |
| ପ୍ରସୂନ | ମୋତେ ବିଶ୍ୱାସ କର । ଶୀଘ୍ର ଏ ବିପଦ ଟଳିଯିବ । ମୋ ହାତରେ ବଡ଼ବଡ଼ ଲୋକ ସବୁ ଅଛନ୍ତି । ମୋ ପାଖରୁ ସେମାନେ କୋଟିକୋଟି ଟଙ୍କା, ଗାଡ଼ି, ଘର ସବୁ ନେଇଛନ୍ତି, ତାଙ୍କ ଚାପରେ ପୋଲିସ୍ କିଛି କରିପାରିବ ନାହିଁ । |
| ପାଗଳୀ | ନିଜ ରକ୍ଷଣେ ଅସମ୍ଭବ, ସଇ ସମୁଦୀ ସାଙ୍ଗରେ ଭାବ । |
| ପ୍ରଶାନ୍ତି | ବଡ଼ ଲୋକଙ୍କୁ ମୋର ଆଦୌ ବିଶ୍ୱାସ ନାହିଁ । |
| ପାଗଳୀ | ରାଜା ଖୋଜାଙ୍କୁ ତ ପରତେ ନାହିଁ । ଯଦି ଭଲ ଥିଲେ ମଥାରେ ଶିରପା ।<br>ନ ହେଲେ ଶୂଳୀରେ ଥୋଇବେ ନେଇ । |
| ପ୍ରସୂନ | ସେମାନେ ମୋତେ କଥା ଦେଇଛନ୍ତି । |
| ପ୍ରଶାନ୍ତି | ମଣିଷର ସବୁ କଥା– ସବୁ ବୁଦ୍ଧି, ଦଇବ ଆଗରେ ଫିକା ପଡ଼ିଯିବ । |
| ପ୍ରସୂନ | ମୁଁ ସେ ଦଇବ ଫଇବରେ ବିଶ୍ୱାସ କରେନି । |
| ପାଗଳୀ | ଗୁଣ ଦେଇଥିଲେ ଧନୁ ବଙ୍କାହୁଏ, ଚନ୍ଦ୍ର ବଙ୍କା ଦିନେ ଦିନେ ।<br>ତେନ୍ତୁଳି ଗଛର ସବୁ ଫଳ ବଙ୍କା, ମୂର୍ଖ ବଙ୍କା ସବୁଦିନେ । |
| ପ୍ରଶାନ୍ତି | ତୁମ କଥାରେ ବିଶ୍ୱାସ କରି ମୁଁ ଘରଦ୍ୱାର ସବୁ ଛାଡ଼ିଲି । ଅଥଚ ତୁମେ ମୋ ସହିତ ଏମିତି ବିଶ୍ୱାସଘାତକତା କରିବ ବୋଲି ମୁଁ କେବେ ଭାବି ନ ଥିଲି । |
| ପାଗଳୀ | କପଟ ବଚନ ପିତା ତିଅଣ ଲୋ ପାସୋରି ନ ଯାଏ ମନୁ<br>ସେ ଦିନର କଥା ମନରେ ପଡ଼ିଲେ ଘାରି ହୋଇଯାଏ ତନୁ । |
| ପ୍ରଶାନ୍ତି | ତୁମ କଥାରେ ଆଉ ମୋର ପରତେ ନାହିଁ । |

ପ୍ରସୂନ ଆଉ କିଛି ଦିନ ଧୈର୍ଯ୍ୟ ଧର ସବୁ ଠିକ୍ ହୋଇଯିବ ।
ପାଗଳୀ ଆଉ ଦିନ କାଳ ଆସିବ । ବାଉଁଶ ଗଛରେ ମଳୟ ଲାଗିଲେ ଚନ୍ଦନ ପରାଏ ବାସିବ ।
ପ୍ରଶାନ୍ତି ମୋ ରାଣ ଖାଇ କହିଲ...(ପ୍ରସୂନ ପ୍ରଶାନ୍ତିର ହାତ ଧରିଲା)
ପାଗଳୀ ଆହା ! କିଛି ନ ଜାଣଇ ଥାକୁଲି, ଦିଅଁକୁ ଖାଇଲା । ପୂଜାରୀ ଖାଇଲା, ଆହୁରି ଖାଇବ ଖଟୁଳି ।
ପ୍ରସୂନ ମୋ ଉପରେ ତୁମର ଭରସା ନାହିଁ । (କୋଳେଇ ନେଲା ଓ ଘରେ ଲାଇଟ୍ ଲିଭିଲା)
ଭୂତନାଥ (ଫେରିଆସିଲା) କ'ଣ କିରେ ପାଗଳୀ କ'ଣ ହେଲା ?
ପାଗଳୀ ପାଖକୁ ଆସି କ'ଣ ଆଉ ହେବ–କଦମ୍ବ ଉପରେ ଗାଲୁଆ ମାଧିଆ, ମାଧବ ବୋଲାଇ ହେଉଛି ।
ଭୂତନାଥ ହଉ ତାଙ୍କ କଥା ଛାଡ଼ନ୍ତୁ ଆପଣଙ୍କ ଗପ ଆରମ୍ଭ କରନ୍ତୁ ।
ପାଗଳୀ ଚୋର, ଜୁଆଡ଼ି, ମଦୁଆ, ବାଇ ଏମାନଙ୍କୁ ଜମା ପରତେ ନାହିଁ । କଖାରୁ ଚୋର, ଲାଉଚୋର, ଚୋରାଉଚୋରାଉ ମହାଚୋର ।
ଭୂତନାଥ ତୁ ଟି କିଏ ରହ...ଆପଣମାନେ ଆରମ୍ଭ କରନ୍ତୁ ।
ଦିଲୁ ଆମ କଥା, ଗୋଟିଏ ସାଧାସିଧା କାହାଣୀ । ଦୁଇ ବନ୍ଧୁ ଚାକିରି କଲୁ ଗୋଟିଏ ଜାଗାରେ । ଏବେ ଚାକିରି ଛାଡ଼ି ଘରକୁ ଫେରିଯିବାର ସିଦ୍ଧାନ୍ତ ନେଇଛୁ ।
ଭୂତନାଥ ଚାକିରି ଛାଡ଼ି ଦେବ କାହିଁକି ?
ଜନ୍ ଚାକିରି କରି ସୁଖରେ ରହିବୁ ବୋଲି ଭାବିଥିଲୁ । କିନ୍ତୁ ସେମିତି କିଛି ଘଟିଲା ନାହିଁ ।
ପାଗଳୀ ଯାବତ୍ ଜୀବେତ ସୁଖମ୍ ଜୀବେତ୍ ଋଣଂ କୃତ୍ୱା ଘୃତଂ ପିବେତ । ସେ କଥା ତ ଆଉ ଘଟିଲା ନାହିଁ । ଘୋଡ଼ା ଛ'ଟଙ୍କାକୁ ଦାନା ନ'ଟଙ୍କା ହେଲା କି ଆଉ ।
ଦିଲୁ ନା ନା ସେମିତି ନୁହେଁ ବରଂ ଜୀବନଟା ଆଶାହୀନ ହୋଇଗଲା ।
ପାଗଳୀ ବାର ମାହାଳିଆ କାକୁଡ଼ି ବାଡ଼ି, ଖାଆଲୋ ବିଲୁଆ ଲାଙ୍ଗୁଡ଼ ମୋଡ଼ି ।
ଭୂତନାଥ ଚୁପ୍ ଚୁପ୍ ସବୁ କଥାରେ ଷଣ୍ଢ ପୂରେଇବା ତୋର ଅଭ୍ୟାସ ହେଲାଣି । (ପାଗଳୀ କାନ୍ଦିଛି) କାନ୍ଦୁଥା...ଆପଣ କହନ୍ତୁ ।
ପାଗଳୀ (କାନ୍ଦି) କହିବୁନି କାହିଁକି । ଦାନ୍ତୁଡ଼ି ନାନୀ, ହସିଲେ କାନ୍ଦିଲେ କିଏ ବା ଜାଣି । ଗରିବ ମାଇପ ସବୁରୀ ଶାଳୀ ।
ଜନ୍ ଏ କ'ଣ ପ୍ରଥମରୁ ପାଗଳୀ...
ଭୂତନାଥ ନା ଦି'ବର୍ଷ ହେଲା ପାଗଳୀ ହୋଇଯାଇଛି ।
ପାଗଳୀ କିଏ ପାଗଳୀ ମୁଁ । ତୁ ପାଗଳୀ । ଆସ ଆସ କୁଆ ଶିରମେ ଚଢ଼ତା ।
ଜନ୍ ହେ– କାହାକୁ କହିଲୁ ?
ପାଗଳୀ ତୁମକୁ ନୁହେଁ ତାକୁ (ଭୂତକୁ ଦେଖେଇ) କଥାରେ ନାହିଁ ଶଙ୍କି ବିଲେଇକୁ ଆଉଁସି ଦେଲେ, ଲାଙ୍ଗୁଡ଼ ଟେକି ସେ କୋଳରେ ଚଢ଼େ ।
ଦିଲୁ କାଲି ରାତି ପାହିଲେ ଆମେ ଆଉ ଏକ ନୂଆ ଜୀବନ ଆରମ୍ଭ କରିବୁ ।
ଜନ୍ ଗାଁ କୁ ଫେରିଯାଇ । ଦୋକାନ ପତ୍ର ଖଣ୍ଡିଏ କରି ସ୍ୱାଧୀନ ଭାବରେ ଚଳିବୁ ।
ପାଗଳୀ ଏ ମନ ଖୋଜୁଥାଇ ଯାହା, କାଳେ ପ୍ରାପତ ହୁଏ ତାହା । (ଭୂତ ରାଗରେ ପାଗଳୀକୁ ଅନେଇଲା) ମୁଁ ତୋତେ କହୁନି କି ତାଙ୍କୁ କହୁନି । କାନ୍ଥକୁ ବାଡ଼କୁ ଦେଖେଇ କହେ । ତା' କଥା କି କେହି ପରତେ ଯାଏ ।

(ଏତିକି ବେଳେ ଭିତରୁ ଧଡ଼ଧାଡ଼ ଶବ୍ଦ ହେଲା ।)

ଭୂତନାଥ — ଦେଖିଲୁ ପାଗଳୀ କ'ଣ ଗୋଟିଏ ଶବ୍ଦ ହେଲା...

ପାଗଳୀ — (ଦେଖିବାକୁ ଗଲା ।) କ'ଣ ଆଉ ହେବ ଉପରେ ଉପରେ ଲାଗିଛି କଳି, କବାଟ କିଳି, ଭିତରେ ଭିତରେ ଚାଲିଛି କେଳୀ । (ପାଖକୁ ଯାଇ କାନ ଡେରି ଶୁଣିଲା, ଜନ୍ ଓ ଦିଲୁ ପିସ୍ତଲ ଧରି ଲୁଚିଗଲେ) ଇସ୍‌ମିସ୍,କଚମ ଠିସ୍ । ଠାର ଠୁର କଚମ ଚୋର । (ଫେରିଆସି) କିଛି ଶୁଭୁନି ତ...ପଚାରିଲି ମୁହିଁ ବଳେବଳେ କିଛି ନ କହିଲେ ଜଣେ, ଓଥରା ମୁହଁକୁ କୋଥରା ହେଉଛ ଅନ୍ଧାରି କବାଟ କୋଣେ ।

ଭୂତନାଥ — କ'ଣ କିଛି କହିଲେ ?

ପାଗଳୀ — ଉଧାର ମାଗିଲି ଚାଉଳ ସେରେ, କହିଲା ପହରେ ବସ । ଜାଳ ସରିଗଲା ଜଳ ମରିଗଲା, ତେବେ ନ ପୂରିଲା ଆଶ ।

ଦିଲୁ — (ବାହାରି) ଚାଲଯିବା ।

ଭୂତନାଥ — ଗପ ପରା ସରିନି । କରେଣ୍ଟ ଆସିନି ।

ଜନ୍ — ଗପ ତ ସରିଲା । ଆଉ କ'ଣ ?

ଭୂତନାଥ — ଆଉ ସେ ପିସ୍ତଲ କଥା...

ଦିଲୁ — ହେ ବେଶୀ କିଛି ଜାଣିବାକୁ ଚାହିଁଲେ ଖପୁରୀ ଉଡ଼େଇ ଦେବି । (ଦିଲୁ ଓ ଜନ୍‌ର ପ୍ରସ୍ଥାନ)

ପାଗଳୀ — କାଳର ଅଟେ ବିପରୀତ ଗତି, ଦଣ୍ଡକେ କୋରଡ଼ା, ଦଣ୍ଡକେ ଛତି । କହିଲା ଭଳିଆ – ଏଇ ମନ ଯେବେ ପ୍ରସନ୍ନ ହୁଅଇ, ଦିଅଇ ଅଭୟବର । ଏଇମନ ଯେବେ ବିମୁଖ ହୁଅଇ କରିଦିଏ ନାରଖାର ।

ଭୂତନାଥ — ପାଗଳୀ ଚାଲ ଶୋଇ ପଡ଼ିବା ।

ପାଗଳୀ — ଘୋଡ଼ କମ୍ବଳ ପଡ଼େ ରହୋ, ଉପର ଉପର ଯାନେ ଦୋ (ଶୋଇ ପଡ଼ିଲା ପରେ କମ୍ବଳ ତଳୁ ମୁହଁ ବାହାର କରି ପାଗଳୀ କହିଲା) ନା ନା ଶୋଇଲା ପୁଅର ଭାଗ ନାହିଁ । ଶୋଇଲା ସିଂହ ଓପାସେ ମରେ । ଏଇ ଚିହ୍ନା ମୁହଁ ସବୁକୁ ମୋତେ ଭଲ କରି ଚିହ୍ନିବାକୁ ପଡ଼ିବ । ହିସାବ ନିକାଶ କରିବାକୁ ପଡ଼ିବ । ଶୂନ୍ୟରୁ ଆସେ ଶୂନ୍ୟରେ ଭୂତ । ମଝିରେ ଲାଗିଛି ସଂସାର ଯାତ । ଡର କାହାକୁ ଭୟ କାହାକୁ ଠାକୁରେ ଅଛନ୍ତି ଚଉବାହାକୁ ।
(କମ୍ବଳ ଭିତରୁ ବାହାରି ସେ ସେମାନଙ୍କ ଘରଆଡ଼େ ଚାଲିଲା) ।

ଦିଲୁ — (ଭିତରେ ଲାଇଟ୍ ଜଳିଲା) ସବୁ ଠିକ୍ ଠାକ୍ ଥିଲା ତୁ ପିସ୍ତଲ କାହିଁକି କାଢ଼ିଲୁ ?

ଜନ୍ — ରାଗ ଚଢ଼ିଗଲା ।

ଦିଲୁ — ସେତେବେଳେ ଶବ୍ଦ କୁଆଡୁ ଆସିଲା ? ଆମକୁ କେହି ଫଲୋ କରୁ ନାହିଁ ତ ?

ଜନ୍ — କିଏ ପୋଲିସ ? ନା ଚାନ୍‌ସ ନାହିଁ ।

ଦିଲୁ — ତା'ହେଲେ କମ୍ରେଡ଼ମାନେ...

ଜନ୍ — କେମିତି ଜାଣିବା ? ତୋ ସେଲ୍ ଫୋନ୍ ଅନ୍ ଅଛି କି ?

ଦିଲୁ — ନା ୨ଦିନ ହେଲା ସୁଇଚ୍ ଅପ୍ ଅଛି । ଆଉ ତୋର

ଜନ୍ — ବନ୍ଦ ଅଛି । ଏବେ କ'ଣ କରିବା ? ଶୋଇପଡ଼ିବା ନା ପଳେଇବା ?

ପାଗଳୀ — (କାନ ଡେରି) ଏପଟେ ମଲି ସେପଟେ ମଲି । କିସବା କରିବି ଭାବି ମରିଲି । ନଈରେ କୁମ୍ଭୀର ଚାହିଁ ରହିଛି । କୂଳରେ ବାଘୁଣୀ ଜଗି ବସିଛି ।

ଦିଲୁ — ତୋ ପାଖରେ ଗୁଳି କେତେ ଅଛି ?

ଜନ୍ — ମୋ ପାଖରେ ଯଥେଷ୍ଟ ଗୁଳି ଅଛି ।

ଦିଲୁ — ଠିକ୍ ଅଛି ଦରକାର ପଡ଼ିଲେ ପଛପଟ ଦେଇ ଜଙ୍ଗଲ ଭିତରକୁ ପଳେଇବା । (ଆଲୁଅ ଲିଭିଗଲା)

ପାଗଳୀ — ଆକୁ ଖୋଳୁ ଖୋଳୁ ମହାଦେବ ବାହାରିଲେଣି । ପାନେ ଦେଉଛି ରହିଥା...କହିଲା ଭଳିଆ –ନଇଁ ପଡ଼ିଥିବୁ ଯେତେବେଳେ, ଦି'ବିଧା କସିବୁ ସେତିକି ବେଳେ । ଲୁଚିଛି ନା ଗୋଡ଼ ଦି'ଟା ଦିଶୁଛି । ଉପରେ ନିଆଁ ତଳେ ନିଆଁ ମଝିରେ ବସିଛି ପୋଡ଼ାମୁହାଁ । (ଫେରିଆସି) ହେ ଭୂତ ଉଠ ! ପୋଲିସକୁ ଫୋନ୍ ଲଗା ଆଜି ଫଇସଲା ହୋଇଯିବ ।

ଭୂତନାଥ — ମୋତେ ଭାରି ଡର ଲାଗୁଛି ।

ପାଗଳୀ — ଆରେ ବାବନା ଭୂତ ଭଳିଆ ଥରୁଛୁ କ'ଣ ? ଏ ଦଶାରୁ ସେ ଦଶା ବଳେ, ଦଦରା ହାଣ୍ଡିରୁ ପେଜ ନ ଗଳେ ।

ଭୂତନାଥ — ମୋତେ କିଛି ବୁଦ୍ଧି ବାଟ ଦିଶୁନି ।

ପାଗାଳୀ — ମୋତେ ଯେତେ ମାଠିବୁ ମାଠ ମୁଁ ସେଇ ଦରପୋଡ଼ା କାଠ । କହିଲା ଭଳିଆ – ଜପା, ତପା, ଭୋପା, ରେଫା ୟାଙ୍କ ଦେଇ ପାଠ ହୁଏ ନାହିଁଲୋ ବୋପା ।

ଭୂତନାଥ — ଯାହା କରିବା କଥା ତୁ କର ମୁଁ ଶୋଇଲି ।

ପାଗଳୀ — ମିଛରେ କହନ୍ତି ଝାମ୍ପୁରୀ ମୁଣ୍ଡି, ଓଲେଇ ତୁଣ୍ଡି, ଏମାନଙ୍କ ହାତେ ନ ଦେବ ହାଣ୍ଡି । (ଫୋନ୍ ଲଗାଇଲା) କେହି ଉଠାଉ ନାହାଁନ୍ତି । ମୁଁ ବି ଛାଡ଼ିବା ଲୋକ ନୁହେଁ । ସୂତା ମାଜିଲେ ସରୁ ସିନା କଥା ମାଜିଲେ ମୋଟା – ଘନ ଘନ ଲଗେଇ ତାଙ୍କ ନିଦଭାଙ୍ଗି ଦେବି । ହାଁ କ'ଣ ଏନ୍‌ଗେଜ୍ ହୋଇଗଲା । ମିଛରେ କହନ୍ତି–ଚାକିରି କରିବୁ ପୋଲିସ, ମାଛ ଖାଇବୁ ଇଲିସି । ଆମେ ଗଛରେ ଚଢ଼ିଲେ ପରା ସିଏ ପତ୍ରରେ ଚଢ଼ିବେ । ରହ ମ୍ୟାନେଜରକୁ ଲଗାଉଛି । ହେ ଭୂତ ମ୍ୟାନେଜରଙ୍କ ନମ୍ବର ଦେଲୁ ।

ଭୂତନାଥ — ସେଇଠି ଲେଖା ହୋଇଛି ।

ପାଗଳୀ — ତୁ ଶୋଇଥା...ବାଇଆର କି ବା ଯାଏ, ବାଆ ହେଲେ ବସା ଦୋହଲୁଥାଏ ।

ଭୂତନାଥ — ତୁ ବି ଶୋଇପଡ଼ ସକାଳ ହେଲେ ଦେଖିବା ।

ପାଗଳୀ — ଘର ବୁଡ଼ି ପାଣି ଆଣ୍ଠୁଏ ହେଲାଣି ୟାକୁ କୁତୁକୁତୁ ଲାଗୁଛି । ପୁଅ ଭାରିଯାତ ନଈରେ ଗଲେଣି, କହୁଛି ପହଁରା ଶିଖୁଛି । (ମ୍ୟାନେଜରକୁ ଲଗାଇଲା) ହ୍ୟାଲୋ...ହ୍ୟାଲୋ...କିଛି କ'ଣ ଶୁଭୁନି...ହ୍ୟାଲୋ ଜଲଦି ଆସ । ଆଉ କ'ଣ କହିବି ଯେ, କିଛି ମନେ ପଡୁନି । ଢଗବାର କୋଡ଼ି ଥିଲା କି ନଥିଲା, ଗୀତବାର କୋଡ଼ି ଥିଲାରେ, ଯେଉଁଦିନ ହାତ ଧରିଲି କାଳିଆ, ସବୁତ ପାଶୋର ଗଲାରେ । ସିଆଡୁ କିଛି କ'ଣ ଶୁଭୁନି ଯେ ଯେମିତି ୟା ମାଲିକ ବି ସେମିତି । ଯେମିତି ମିଆଁକୁ ସେମିତି ବିବି । ଗଙ୍ଗା କହିଲେ ଥିବି ଗାଙ୍ଗୀ କହିଲେ ଯିବି ।

ଭୂତନାଥ — କହି ଦେଉଥାଏ ପରକୁ ବୁଦ୍ଧି ନଦିଶେ ଘରକୁ ।

ପାଗଳୀ — (ଖତେଇ) ହେଁ...କ୍ଷୀରରେ ଧୋଇଲେ ଖଣ୍ଡରେ ମୋହିଲେ ନିମ୍ବକି ମଧୁର ହୋଇବ । ସାତ ଥର କରି ମଣୋଇ କହିଲେ, ପର କି ଆପଣା ହୋଇବ ।

ଭୂତନାଥ — ମ୍ୟାନେଜର କ'ଣ କହିଲେ ?

ପାଗଳୀ — ବେସର ମହୁର କଖାରୁ ବଡ଼ି, ଶିକାରେ ଥୋଇଛି ହବିଷ ବାଡ଼ି ।
ସୋର ନାହିଁ କି ଶବ୍ଦ ନାହିଁ ସିଆଡୁ କିଛି ତ ଶୁଭିଲା ନାହିଁ ।

ଭୂତନାଥ ଏଥର ଶୋଇପଡ଼ । (ପାଗଳୀ ଶୋଇଲା । ଫୋନ୍ ବାଜିଲା । ପାଗଳୀ ଉଠି ଧରିଲା । ଧାଇଁ ଆସିଲେ ଓ ଫୋନ୍ ତା'ର କାଟି ଦେଲେ ଜନ୍ ଓ ଦିଲୁ ।)

ଦିଲୁ ତୁ ହିଁ ନାଟର ଗୋବର୍ଦ୍ଧନ । ଚାଲ ଆମ ସାଙ୍ଗରେ ।

ପାଗଳୀ କୁଆଡ଼େ ?

ଜନ ଆମ ରୁମ୍‌କୁ ।

ପାଗଳୀ ଯେମିତି କରମ ସେମିତି ଫଳ, ବାଇଡଙ୍କ ଛୁଇଁ କୁଣ୍ଢେଇ ମର । (ପାଗଳୀକୁ ଧରି ନେଇଗଲେ ୧୧୧ ନମ୍ବର ରୁମ୍‌କୁ ଭୂତନାଥ କମ୍ବଳ ତଳେ ଥରୁ ଥିଲା)
(କିଛି ସମୟ ପାଇଁ ଅନ୍ଧାର ହେଲା ଚାବିରିଂ ଗୁଡ଼ିକ ଯଥାସ୍ଥାନରେ ଲାଗିଲା ଅଶରିରୀ ନୃତ୍ୟ ପରେ ଲାଇଟ୍ ଆସିଲା ଓ ବାହାରୁ ସକାଳ ହୋଇ ଆସିବାର ଦେଖାଗଲା) ।

ମ୍ୟାନେଜର (ପ୍ରବେଶ କରି) ଆରେ ଭୂତ ଏତେବେଳ ଯାଏ ଶୋଇଛୁ କ'ଣ ? କବାଟ ଖୋଲା, ପାଗଳୀ କାହିଁ ?

ଭୂତନାଥ ମଙ୍ଗଳ ଭବନ ଅମଙ୍ଗଳ ହାରୀ... (ହନୁମାନ ଚାଳିଶା)

ମ୍ୟାନେଜର ଜଲ୍‌ଦି ଉଠ୍...ବାହାରକୁ କିଏ ଯାଇଛି କି ? କବାଟ ଖୋଲା ଅଛି କାହିଁକି ?

ଭୂତନାଥ ପାଗଳୀକୁ ବଞ୍ଚାନ୍ତୁ ଆଜ୍ଞା, ସେମାନେ ତାକୁ ନେଇଗଲେ ବୋଧହୁଏ ।

ମେନେଜର କୁଆଡ଼େ ? ତୁ କାଲି ରାତିରେ କବାଟ ଭିତରୁ ଦେଇ ନଥିଲୁ କି ?

ଭୂତନାଥ ମନେ ନାହିଁ । ପାଗଳୀ ଦେଇଥିଲା । ଆଗେ ପାଗଳୀକି ବଂଚାନ୍ତୁ । ସେମାନେ ତାକୁ ୧୧୧ନମ୍ବର ରୁମ୍‌କୁ ନେଇଗଲେ ।

ପୋଲିସ (ପିସ୍ତଲ ବାହାର କରି) ସେମାନେ କେତେଜଣ ?

ଭୂତନାଥ ୨ ଜଣ...

ମ୍ୟାନେଜର କେତେବେଳେ ଆସିଥିଲେ ।

ଭୂତନାଥ ସଂଜରେ । ଆପଣ ଗଲାପରେ ହଳହଳ କରି ତିନି ହଳ ଗରାଖ ଆସିଥିଲେ ।

ପୋଲିସ୍ ଏଇନେ କହୁଛୁ ଦି'ଜଣ, ଏଇନେ କହୁଛୁ ତିନି ହଳ । ଠିକ୍ କରି କହ ।

ଭୂତନାଥ ତିନିହଳ ଆସିଥିଲେ । ଦୁଇହଳ ସ୍ୱାମୀ ସ୍ତ୍ରୀ ଆଉ ହଳେ ଯୁବକ । ସେଇମାନେ ପାଗଳୀକୁ ଉଠେଇ ନେଲେ ।

ପୋଲିସ ସେମାନେ କିଏ ?

ଭୂତନାଥ ମୁଁ କେମିତି ଜାଣିବି ? ଖାତାରେ ତାଙ୍କର ପରିଚୟ ପତ୍ର ଆଉ ଦସ୍ତଖତ ଅଛି । ଆଉ ଜଣଙ୍କ ପାଖରେ ପିସ୍ତଲ ଅଛି ।

ମ୍ୟାନେଜର ସେମାନଙ୍କୁ କେଉଁ ରୁମ୍ ଚାବି ଦେଇଛୁ ?

ଭୂତନାଥ ବୁଢ଼ା ବୁଢ଼ୀଙ୍କୁ ୧୧୪ ନମ୍ବର, ଟୋକାଟୋକିଙ୍କୁ ୧୧୨ ନମ୍ବର ଆଉ ସେଇ ଟୋକା ଦି'ଟାଙ୍କୁ ୧୧୧ ନମ୍ବର । କିନ୍ତୁ ସେମାନେ ପରା ପାଗଳୀକୁ ନେଇ ୧୧୧ ନମ୍ବର ରୁମ୍‌ରେ ପଶିଲେ ।

ମ୍ୟାନେଜର ୧୧୩ ନମ୍ବରକୁ ଛାଡ଼ି ସବୁ ଚାବି ପରା ଏଇଠି ଝୁଲୁଛି । ତୁ ଚାବି ଦେଲୁ କାହାକୁ ?

ଭୂତନାଥ ତାହେଲେ ସେମାନେ ତାକୁ ୧୧୩ ନମ୍ବର ରୁମ୍‌କୁ ନେଇଥିବେ । ମୋର ଠିକ୍ ମନେପଡୁନି ।

ପୋଲିସ କାହିଁ ଖାତା ଦେଖି (ଖାତା ଦେଖିଲେ) ଏଥିରେ କାହିଁ କାହାରି ନାମ ତ ଲେଖା ହୋଇନି କି

| | |
|---|---|
| | ପରିଚୟପତ୍ର ବି ନାହିଁ । |
| ମ୍ୟାନେଜର | ଆଉ ଟଙ୍କା ? |
| ଭୂତନାଥ | ସେଇ ଡ୍ର ରେ ତ ଥିଲା । (ମ୍ୟାନେଜର୍ ଡ୍ର ଦେଖିଲେ) |
| ମ୍ୟାନେଜର | କିଛି କୁଆଡ଼େ ନାହିଁ । |
| ପୋଲିସ୍ | ରାତିରେ କ'ଣ ଧୂଆଁ ନା ବୋତଲ ? ସେବନର ଡୋଜ୍‌ଟା ଅଧିକା ପକେଇ ଦେଇଛୁ ବୋଧହୁଏ । |
| ମ୍ୟାନେଜର | ନା ନା ସେ ନିଶା ଫିସା କିଛି ଖାଏନି । ତୁ ଆଉ ରାତି ସାରା ସପନ ଦେଖୁନୁ ତ ? |
| ଭୂତନାଥ | ଆଗେ ପାଗଳୀକୁ ବଞ୍ଚାନ୍ତୁ । (ସମସ୍ତେ ୧୧୧ ନମ୍ବର ରୁମ୍ ପାଖକୁ ଗଲେ, ଦେଖିଲେ ତାଲା ବନ୍ଦ ଅଛି । ତା'ପରେ ୧୧୩ ନମ୍ବର ରୁମ୍ ପାଖକୁ ଗଲେ ।) |
| ପୋଲିସ | କବାଟ ଭାଙ୍ଗି ଦେବା ତ ? |
| ମ୍ୟାନେଜର | ରହନ୍ତୁ...(କବାଟ୍ ବାଡ଼େଇଲେ ଭିତରୁ ଶବ୍ଦ ଶୁଭିଲା, ସମସ୍ତେ ପାଖେଇ ଗଲେ । କବାଟ ଖୋଲିଲା । ଭିତରୁ ପାଗଳୀ ସଫାସୁତରା ହୋଇ ବାହାରିଲା ।) |
| ପାଗଳୀ | ଓ ହୋ– ଏତେ ଦିନ ପରେ କାଲି ରାତିରେ ଖୁବ୍ ଶାନ୍ତିରେ ଶୋଇଛି । |
| ପୋଲିସ | କେମିତି ? |
| ପାଗଳୀ | ୧୧୩ ନମ୍ବର ରୁମ୍‌ର ଚାବିଟା ମିଳିଗଲା ତ...କହିଲା ଭଳିଆ ମନ୍ଦୁ ଖୋଜୁଥିଲା ପଇଡ଼ପାଣି, ବଇଦ କହିଲା ପିଇ ତୋରାଣି । |
| ଭୂତ ନାଥ | ସେମାନେ ପରା ତୋତେ ଜବରଦସ୍ତି ନେଇଗଲେ– |
| ପୋଲିସ | ସେମାନେ କିଏ ? କୁଆଡ଼େ ଗଲେ ? |
| ପାଗଳୀ | ମାମୁ ଘର ଗୋଠେ ଗାଈ, ରାତି ପାହିଲେ ମୋତେ ନାହିଁ । କହିଲା ଭଳିଆ – ଏଇଠି ଅଛି ଏଇଠି ନାହିଁ ଲକ୍ଷେ ଟଙ୍କା ଦେଲେ ମିଳଇ ନାହିଁ । |
| ପୋଲିସ | ହେ ପାଗଳୀ ଠିକ୍ କରି କହ । ସେମାନେ କିଏ ? |
| ପାଗଳୀ | ଅପରାଧି । ଯୁଆଡୁ ଆସିଥିଲେ ସିଆଡ଼େ ପଳେଇଲେ । ବୁଢ଼ାର ଶାଳୀ, ମାନେ ୨ୟ ସ୍ତ୍ରୀ ଡାକ୍ତରକୁ ପ୍ରେମ କରୁଥିଲା । ଆଉ ବୁଢ଼ାକୁ ମାରିବ ବୋଲି ଆରିଷା ପିଠାରେ ବିଷ ମିଶାଇ ରଖିଥିଲା । ବୁଢ଼ା ବୁଢ଼ୀର ତଣ୍ଟି ଚିପି ମାରିଦେଲେ । ଆଉ... |
| ମ୍ୟାନେଜର | ବିଷ ପିଠା ଖାଇ ବୁଢ଼ା ବି ଶେଷରେ ମରିଗଲା । |
| ପୋଲିସ | ଆପଣ କେମିତି ଜାଣିଲେ ? |
| ମ୍ୟାନେଜର | ଏଇଟା ୫ ବର୍ଷ ତଳର ଘଟଣା । ଘଟିଥିଲା ସେଇ ୧୧୩ ନମ୍ବର ରୁମ୍‌ରେ । |
| ଭୂତନାଥ | ସେ ପିଠା ତ କାଲି ରାତିରେ ଆମେ ଖାଇଛୁ । ମୋତେ ଡର ଲାଗୁଛି । |
| ପାଗଳୀ | ନିଜ ଗାଁ ମଶାଣୀ, ପର ଗାଁ ନଈ, ପାଦ ବଢ଼ାଇଲେ ଡର ଲାଗଇ । ବିନାଶ କାଳେ ବିପରୀତ ବାଣୀ, ଚାଳରୁ ମୂଷା ପଡ଼ି ମାରନ୍ତି କହୁଣୀ । |
| ମ୍ୟାନେଜର | ସେଇଟା ମିଛ ପିଠା । |
| ପାଗଳୀ | ମିଛି ମିଛିକା ଛଇ ଛତିକା, ଷଢ଼େଇରେ ରାନ୍ଧେ ଭାତ<br>ଗବପତରରେ ତିଅଣ ବାଢ଼ିଛି, ସାଇ ପଡ଼ିଶାକୁ ଡାକ । |
| ପୋଲିସ୍ | ଆଉ ଦି'ଜଣ ସ୍ୱାମୀ ସ୍ତ୍ରୀ ? ତାଙ୍କର କ'ଣ ହେଲା ? |

ପାଗଳୀ ଚିଟ୍‌ଫଣ୍ଡ୍ ବେପାର କରୁଥିଲେ। ସିବିଆଇ ଡରରେ ଏଇଠି ଆସି ଲୁଚିଥିଲେ । ସେମାନେ ବି ମଲେ ।

ପୋଲିସ କିଏ ମାଇଲା ସିବିଆଇ ? କାହିଁ ଆମକୁ ତ କିଛି ଇନ୍‌ଫର୍ମେସନ୍ ନାହିଁ ।

ମ୍ୟାନେଜର ତାଙ୍କୁ କିଏ ମାଇଲା ଜଣାନାହିଁ ତେବେ ପୋଲିସ କି ସିବିଆଇ ନୁହେଁ । ଯାହା ସନ୍ଦେହ ହୁଏ ସେଇ ବଡ଼ ବଡ଼ିଆମାନେ ତାଙ୍କୁ ସୁପାରୀ କିଲର ଲଗେଇ ମାରି ଦେଇଥିବେ ସେଇ ୧୧୩ ନମ୍ବର ରୁମ୍‌ରେ । ଆଜିକୁ ତିନିବର୍ଷ ତଳେ ।

ପାଗଳୀ ପୈସା କ୍ୟା ନକରେ କାମ । ପଇସା ପାଇଁ ଯେ ହାଇଁ ପାଇଁ । ଆଖି ନାହିଁ କି କାନ ନାହିଁ, ବାପା ମା' ସିଏ ଚିହ୍ନନ୍ତି ନାହିଁ ।

ପୋଲିସ ଆଉ ସେ ଟୋକା ଦି'ଜଣ ?

ପାଗଳୀ ସେମାନେ ମାଓବାଦୀ ଥିଲେ । ନିଜର ଭୁଲ୍ ବୁଝିପାରି ଆତ୍ମ ସମର୍ପଣ କରିବାକୁ ଆସିଥିଲେ । କିନ୍ତୁ ତା' ଆଗରୁ ତାଙ୍କରି ସାଥିମାନେ ତାଙ୍କୁ ମାରିଦେଲେ । ୧୧୩ ନମ୍ବର ରୁମ୍‌ରେ ।

ମ୍ୟାନେଜର କିନ୍ତୁ ତା' ଆଗରୁ ସେମାନେ ପାଗଳୀ ସହିତ ଦୁଷ୍କର୍ମ କରିଥିଲେ । ଏଇଟା ମଧ୍ୟ ଦୁଇ ବର୍ଷ ତଳର ଘଟଣା ।

ପୋଲିସ ସେଇଟା ଯଦି ଦୁଇ ବର୍ଷ ତଳର ଘଟଣା ତା'ହେଲେ କାଲି ରାତିରେ କିଏ ତାକୁ ଉଠେଇ ନେଇଥିଲା ?

ପାଗଳୀ ଗୁଣ ଚିହ୍ନେ ଗୁଣିଆ ସୁନା ଚିହ୍ନେ ବଣିଆ । ଚୋରକୁ ଚୋର ଚିହ୍ନେ ସିନା ପୁରୁଣା ଦାଗୀକୁ ଚଉକିଆ । ସେମାନେ ମୋ ପାଖକୁ ଆସିଥିଲେ ମୋତେ ନେଇଗଲେ ଆଉ ଅନୁତାପ କଲେ ।

ପୋଲିସ କହିଁକି ?

ପାଗଳୀ ବୁଡ଼ିଗଲା ପାଦ ତଳକୁ ତଳକୁ । କହିଲା ଭଳିଆ ଟେକାଟିଏ ପକେଇ ଥିଲେ ପଥରଟିଏ ଥୁଆ । ଅନ୍ୟପାଇଁ ଗାତ ଖୋଳିଲେ ତହିଁରେ ନିଜେ ପଡ଼ି ମରିବା ସାର ହୁଏ ସିନା । ସେମାନେ ମରିବି ମରି ପାରି ନାହାଁନ୍ତି । ଶାନ୍ତି ଖୋଜୁଛନ୍ତି । ମୁକ୍ତି ଖୋଜୁଛନ୍ତି । ମୁଁ ତାଙ୍କୁ କ୍ଷମା କରିଦେଲି । କହିଲି ଡେରି କରିଦେଲ । ପାଠଶାଠ ପଢ଼ିଛ ଏକଥା ଜାଣିନ ଯେ ଆଜ ୟୁ ସୋ, ସୋ ୟୁ ରିପ୍ । ଧାନ ବୁଣି ଗହମ କାଟିବାକୁ ଚାହିଁଲେ ମିଳିବ ନାହିଁ । ଆଉ ଲେଡ଼ିଗୁଡ଼ କହୁଣୀକୁ ଡେଇଁ ବୋହି ଗଲାପରେ ମୁଣ୍ଡ ବାଡ଼େଇ ଲାଭ କ'ଣ ? ଯେମିତି କରମ ସେମିତି ଫଳ, ଅବଶ୍ୟ ଭୋଗିବ । ସେମାନେ ଫେରିଗଲେ । ମୁଁ ବି ଯାଉଛି । ଭାବିଥିଲି ମୋତେ ହରେଇ ସେମାନେ ଜିତିଯାଇଛନ୍ତି । କିନ୍ତୁ ଏବେ ଦେଖୁଛି, ଏଠି କେହି ଜିତେ ନାହିଁ କି କେହି ହାରେ ନାହିଁ । ଯିଏ ଯାହାର କର୍ମ କରି ଚାଲନ୍ତି ଆଉ ସେହି ହିସାବରେ ଅନୁସାରେ ସମସ୍ତଙ୍କୁ ଫଳ ମିଳେ । ସେଇଥିପାଇଁ ଶ୍ରୀମଦ୍‌ଭଗବତ୍ ଗୀତାରେ କୁହାଯାଇଛି– କର୍ମଣ୍ୟେ ବାଧିକାରସ୍ତେ, ମା ଫଳେଷୁ କଦାଚନେ । କେବଳ ଫଳ ପାଇବା ଆଶାରେ କର୍ମ କଲେ ସତ୍‌କର୍ମ ହୁଏନା । ଅକର୍ମ ବା କୁକର୍ମ ହୁଏ । ଆଉ କୁକର୍ମର ଫଳ କେବେବି ସୁଖପ୍ରଦ ନୁହେଁ । ମୁଁ ବି ନୂଆ ଜୀବନ ଜୀଇଁବି, ନୂଆ ପଥ ଖୋଜିବି । ମୁଁ ମୋ ଗାଁ କୁ ଫେରିଯିବି । ମୋରି ଭଳି ଅବଳାମାନଙ୍କୁ ଏକତ୍ରିତ କରି ସବଳା କରିବି । ତା'ପରେ ଆମେ ଆଶାର କିରଣ ବାଣ୍ଟିବୁ ଗାଁରୁ ସହରକୁ । ଆମ ହସରେ ଦୁନିଆଁ ହସିବ । ଏଇ ଚାବି ନିଅ । ଆଉ ଦୁଆର ବନ୍ଧରେ ଲେଖିଦିଅ ।

ମାନବ ଜୀବନ ନୁହଁଇ କେବଳ ବର୍ଷ ମାସ ଦିନ ଦଣ୍ଡ
କର୍ମେ ଯିଏଁ ନର କର୍ମ ଏକା ତା'ର ଜୀବନର ମାନଦଣ୍ଡ ।

♦♦♦




ନବୀନ କୁମାର ପରିଡ଼ା

ଜନ୍ମ -୦୮-ମାର୍ଚ୍ଚ-୧୯୫୪, ପିତା: ୰ ହରିଶ୍ଚନ୍ଦ୍ର ପରିଡ଼ା, ମାତା: ୰ ବିଷ୍ଣୁପ୍ରିୟା ପରିଡ଼ା, ସ୍ଥାନ- ଜମାଳପୁର, ଜଳେଶ୍ୱର, ବାଲେଶ୍ୱର।


ଲେଖକ ବିଶ୍ୱନାଥ ଏକାଡ଼େମୀ ଜମାଳପୁରରୁ ମାଟ୍ରିକ ଶିକ୍ଷା ସମାପ୍ତ କରି ପରେ ରବୀନ୍ଦ୍ର ଭାରତୀ ବିଶ୍ୱବିଦ୍ୟାଳୟ, କଲିକତାରୁ ନାଟକରେ ସ୍ନାତୋକତ୍ତର ଡିଗ୍ରୀ ହାସଲ କରି ଉତ୍କଳ ସଂଗୀତ ମହାବିଦ୍ୟାଳୟର ନାଟକ ବିଭାଗରେ ୧୯୮୩ ମସିହାରେ ନାଟକ ବିଭାଗର ଅଧ୍ୟାପକ ଭାବେ ଯୋଗଦାନ କରି ସଫଳତାର ସହିତ ନାଟ୍ୟକଳାରେ ଅଧ୍ୟାପନା ଦାୟିତ୍ୱ ନିର୍ବାହ କରି ପରେ ନାଟକ ବିଭାଗର ମୁଖ୍ୟ ଭାବେ ଓ ଉତ୍କଳ ସଂଗୀତ ମହାବିଦ୍ୟାଳୟର ଅଧକ୍ଷ ଭାବେ କାର୍ଯ୍ୟକରି ୨୦୧୨ ରେ ଅବସର ଗ୍ରହଣ କରିଛନ୍ତି। ନାଟ୍ୟରଚନା ବ୍ୟତୀତ, ନାଟ୍ୟପୁସ୍ତକ ରଚନା, ନିର୍ଦ୍ଦେଶନା, ଅଭିନୟ ଏବଂ ନାଟ୍ୟକର୍ମଶାଳା ଆୟୋଜନ କରିବାରେ ସେ ସିଦ୍ଧହସ୍ତ। ତାଙ୍କର ଅଦ୍ୟାବଧି ଲିଖିତ ପୁସ୍ତକ ଗୁଡ଼ିକ ହେଲା-୧- ନାଟ୍ୟ କଥା, ୨- ମଞ୍ଚସଜ୍ଜା ଓ ଆଲୋକ ବିନ୍ୟାସ , ୩- ବିଦ୍ୟାଳୟ ନାଟ୍ୟଶିକ୍ଷା ଓ ନାଟ୍ୟତ୍ରୟୀ ୪- ନାଟୁଆ ଓ ଅନ୍ୟାନ୍ୟ ନାଟକ, ୫- ଅନ୍ଧପୁଟୁଳିର ଖେଳ ଓ ଅନ୍ୟାନ୍ୟ ନାଟକ। ୬- କଲେ ଯେତେ ହୁନ୍ଦର ଓ ଅନ୍ୟାନ ନାଟକ।

**ପ୍ରକାଶ ଅପେକ୍ଷାରେ** - ଅଭିନେତା ଓ ଅଭିନୟ


**ଯୋଗାଯୋଗ ଠିକଣା** : ବି- ୬/୧୦, ଇନ୍ଦିରାଗାନ୍ଧୀ ହାଉସିଂ କଲୋନି
ପୋ: ଶିଶୁପାଳ ଗଡ଼, ଭୁବନେଶ୍ୱର - ୭୫୧୦୦୨
ଟେଲିଫୋନ୍ - ୯୪୩୭୪୬୮୭୮୦
ଇ-ମେଲ୍ : nabinparida78@gmail.com


₹ 180 /-